# ସୁବର୍ଣ୍ଣ ଜୟନ୍ତୀ ସ୍ମରଣିକା

## ଅର୍ଦ୍ଧଶତାବ୍ଦୀର ସ୍ୱପ୍ନ ଓ ସଂକଳ୍ପର ସ୍ୱର

# ଆକାଂକ୍ଷା



## ସ୍ନାତକୋତ୍ତର ଓଡ଼ିଆ ବିଭାଗ,
## ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ

ଅର୍ଦ୍ଧଶତାବ୍ଦୀର ସ୍ୱପ୍ନ ଓ ସଂକଳ୍ପର ସ୍ୱର

# ଆକାଙ୍କ୍ଷା

ସ୍ନାତକୋତ୍ତର ଓଡ଼ିଆ ବିଭାଗ, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଆନୁକୂଲ୍ୟରେ ପ୍ରକାଶିତ

## ସୁବର୍ଣ୍ଣ ଜୟନ୍ତୀ ସ୍ମରଣିକା

(୧୯୬୮ - ୨୦୧୮)

ମାର୍ଚ୍ଚ, ୨୦୧୯

ସ୍ନାତକୋତ୍ତର ଓଡ଼ିଆ ବିଭାଗ

ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ, ବ୍ରହ୍ମପୁର, ଗଞ୍ଜାମ, ଓଡ଼ିଶା

*ଅର୍ଦ୍ଧଶତାବ୍ଦୀର ସ୍ୱପ୍ନ ଓ ସଂକଳ୍ପର ସ୍ୱର:*

ଆକାଙ୍କ୍ଷା

ସ୍ନାତକୋତ୍ତର ଓଡ଼ିଆ ବିଭାଗ, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ
ଆନୁକୂଲ୍ୟରେ ପ୍ରକାଶିତ ସୁବର୍ଣ୍ଣ ଜୟନ୍ତୀ ସ୍ମରଣିକା
(୧୯୬୮-୨୦୧୮)

ଉପଦେଷ୍ଟା:
**ପ୍ରଫେସର ରାଜେନ୍ଦ୍ର ପ୍ରସାଦ ଦାସ**
କୁଳପତି

ମୁଖ୍ୟ ସଂପାଦକ:
**ପ୍ରଫେସର ଦେବୀପ୍ରସନ୍ନ ପଟ୍ଟନାୟକ**
ଅଧକ୍ଷ, ସ୍ନାତକୋତ୍ତର ପରିଷଦ

ସଂପାଦକ:
**ପ୍ରଫେସର ପ୍ରସନ୍ନ କୁମାର ସ୍ୱାଇଁ**
ବିଭାଗ ମୁଖ୍ୟ, ସ୍ନାତକୋତ୍ତର ଓଡ଼ିଆ ବିଭାଗ

ସଂପାଦନାମଣ୍ଡଳୀ:
**ଡ. ସଦାନନ୍ଦ ନାୟକ**, ସହଯୋଗୀ ପ୍ରଫେସର
**ଡ. ଦେବୀପ୍ରସାଦ ଶତପଥୀ**, ଅଧ୍ୟାପକ
**ଡ. ସମୀର ଭୋଇ**, ଅଧ୍ୟାପକ
**ଡ. ରାଧାଗୋବିନ୍ଦ ପାଢ଼ୀ**, କ୍ୟୁରେଟର୍

ସଂପାଦନା ସହଯୋଗୀ:
**ଶ୍ରୀ ମନୋଜ କୁମାର ପଟ୍ଟନାୟକ**, କପିଷ୍ଟ

ପ୍ରକାଶକ:
ବିଭାଗ ମୁଖ୍ୟ, ସ୍ନାତକୋତ୍ତର ଓଡ଼ିଆ ବିଭାଗ
ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ, ଗଂଜାମ,
ଓଡ଼ିଶା, ପିନ୍-୭୬୦୦୦୭

ପ୍ରଥମ ପ୍ରକାଶ: **ମାର୍ଚ୍ଚ, ୨୦୧୯**

ମୁଦ୍ରଣ: **ଏଥେନା ବୁକ୍ସ, ଭୁବନେଶ୍ୱର**

**ĀKĀNKSHĀYĀ**
(The Dreams &
Pledges of Half a Century)
Golden Jubilee Souvenir
(1968-2018)

Advisor:
**Prof. Rajendra Prasad Das**
Vice Chancellor

Chief Editor:
**Prof. Devi Prasana Patnaik**
Chairman, P.G. Council

Editor:
**Prof. Prasan Kumar Swain**
Head, P.G. Dept. of Odia

Board of Editors:
**Dr. Sadananda Nayak**
**Dr. Debi Prasad Satapathy**
**Dr. Sameer Bhoi**
**Dr. Radha Govinda Padhi**

Editorial Assistant:
**Sri Manoj Kumar Patnaik**

Published by:
Head, P.G. Department of Odia,
Berhampur University,
Berhampur-760 007, Ganjam, Odisha

1st Edition: **March, 2019**

Printed at:
**Athena Books, Bhubaneswar**

**Prof. Ganeshi Lal**
Governor, Odisha
ପ୍ରଫେସର ଗଣେଶୀ ଲାଲ
ରାଜ୍ୟପାଳ, ଓଡ଼ିଶା

RAJ BHAWAN
BHUBANESWAR-751008
ରାଜଭବନ
ଭୁବନେଶ୍ୱର-୭୫୧୦୦୮

ତା.୧୧.୩.୨୦୧୯



# ବାର୍ତ୍ତା

ସ୍ନାତକୋତ୍ତର ଓଡ଼ିଆ ବିଭାଗ, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ସୁବର୍ଣ୍ଣ ଜୟନ୍ତୀ ସମାରୋହ ଆୟୋଜିତ ହେଉଥିବା ଓ ଏହି ଉପଲକ୍ଷେ ଏକ ସ୍ମରଣିକା 'ଆକାଙ୍କ୍ଷା' ପ୍ରକାଶ ପାଉଥିବା ଜାଣି ଖୁସି ହେଲି ।

ଓଡ଼ିଆ ଭାଷା ଓ ସାହିତ୍ୟର ସମୃଦ୍ଧ ଐତିହ୍ୟ ଓ ପରଂପରା ରହିଛି । ଓଡ଼ିଆ ଭାଷାକୁ ଶାସ୍ତ୍ରୀୟ ମାନ୍ୟତା ମିଳିବା ଏହାକୁ ପ୍ରମାଣିତ କରିଛି । ଓଡ଼ିଆ ଭାଷା ହିଁ ଓଡ଼ିଶାର ପ୍ରମୁଖ ପରିଚୟ । ଭାଷାର ସେବା ପରମ କର୍ତ୍ତବ୍ୟ । ସ୍ନାତକୋତ୍ତର ଓଡ଼ିଆ ବିଭାଗ ଗତ ୫୦ ବର୍ଷ ଧରି ଭାଷା ଓ ସାହିତ୍ୟର ବିକାଶ କ୍ଷେତ୍ରରେ ଉଲ୍ଲେଖନୀୟ ଭୂମିକା ଗ୍ରହଣ କରିଆସିଛି । ଆଗାମୀ ଦିନମାନଙ୍କରେ ଏହା ଆହୁରି ବ୍ୟାପକ ହେବ ବୋଲି ଆଶା କରୁଛି ।

ସୁବର୍ଣ୍ଣ ଜୟନ୍ତୀ ସମାରୋହ ଓ ସ୍ମରଣିକା ପ୍ରକାଶନର ସଫଳତା କାମନା କରୁଛି ।

ଗଣେଶୀ ଲାଲ
(ଗଣେଶୀ ଲାଲ)




← ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ, ଭଞ୍ଜବିହାର ପରିସର ତତ୍‌କାଳୀନ କୁଳପତି ଶ୍ରୀ ରଘୁନାଥପ୍ରସାଦ ପାଢ଼ୀଙ୍କ ଦ୍ୱାରା ଭିତ୍ତିପ୍ରସ୍ତର ସ୍ଥାପନ

ଭାରତର ତତ୍‌କାଳୀନ ରାଷ୍ଟ୍ରପତି ଡ.ଭି.ଭି. ଗିରିଙ୍କ ଦ୍ୱାରା ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ, ଭଞ୍ଜବିହାରର ସ୍ଥାୟୀ ପରିସର ଉଦ୍‌ଘାଟିତ →



# ସଂପାଦକୀୟ..

ସ୍ୱପ୍ନ ଓ ସଂକଳ୍ପର ଅନ୍ୟନାମ ଜୀବନ । ଜୀବନର ଅନ୍ୟନାମ ସାହିତ୍ୟ । ଓଡ଼ିଶାର ଦକ୍ଷିଣାଞ୍ଚଳରେ ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିର ବିକାଶ ନିମିତ୍ତ ତତ୍କାଳୀନ ବୁଦ୍ଧିଜୀବୀଙ୍କ ସ୍ୱପ୍ନ ଓ ସଂକଳ୍ପକୁ ପାଥେୟ କରି ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠାର ଦ୍ୱିତୀୟବର୍ଷ, ଅର୍ଥାତ୍ ୧୯୬୮ ମସିହାର ଏକ ଶୁଭଲଗ୍ନରେ ଓଡ଼ିଶାର ବିଶ୍ୱବିଦ୍ୟାଳୟ ସ୍ତରରେ ପ୍ରଥମେ ଏହି ବିଶ୍ୱବିଦ୍ୟାଳୟରେ ପ୍ରତିଷ୍ଠା ହୋଇଥିଲା ସ୍ନାତକୋତ୍ତର ଓଡ଼ିଆ ବିଭାଗ । ସେତେବେଳେ ଏହି ବିଭାଗରେ ଯେଉଁ ତରୁଣ ଛାତ୍ରମାନେ ଅଧ୍ୟୟନରତ ଥିଲେ- ସେମାନେ ଆଜି ଜୀବନର ଉତ୍ତୀର୍ଣ୍ଣ ଅପରାହ୍ନରେ ଉପନୀତ ବା କେହି କେହି ଦିବଂଗତ । ସେହିଦିନଠାରୁ ଆଜିପର୍ଯ୍ୟନ୍ତ ସ୍ନାତକୋତ୍ତର ଓଡ଼ିଆ ବିଭାଗରେ ଯୋଗଦେଇଥିବା ତରୁଣ ଯୁବଗୋଷ୍ଠୀର ସ୍ୱପ୍ନ ଓ ସମ୍ଭାବନାକୁ ସାକାର କରିବାକୁ ବିଭାଗ ଯାହା ମାଧ୍ୟମରେ ଅନବରତ ପ୍ରୟାସ କରିଆସିଛି, ତାହାର ବାଣୀରୂପ ହେଉଛି 'ଆକାଙ୍‌କ୍ଷା'; ବିଭାଗର ବାର୍ଷିକ ମୁଖପତ୍ର । ଏହିଭିତରେ ଓଡ଼ିଆ ବିଭାଗ ପଚାଶ ବର୍ଷ ଅତିକ୍ରାନ୍ତ କରିସାରିଛି । ବ୍ରହ୍ମପୁର ସହରରେ ଭଡ଼ାଘରର ଏକ କ୍ଷୁଦ୍ର ପରିସରରୁ ଆରମ୍ଭ ହୋଇଥିବା ବିଶ୍ୱବିଦ୍ୟାଳୟର ଏହି ବିଭାଗ ଭଞ୍ଜବିହାର ପରିସରରେ ସଂପ୍ରତି ନାନାଦୃଷ୍ଟିରୁ ସ୍ୱୟଂସଂପୂର୍ଣ୍ଣ । ବ୍ରହ୍ମପୁର-ଗୋପାଳପୁର ରାଜ୍ୟ ରାଜପଥର ବାମପାର୍ଶ୍ୱରେ ଦୁଇଶତ ପଚାଶ ଏକର ପରିମିତ ସବୁଜିମାମୟ ପରିସରରେ ଗଢ଼ିଉଠିଥିବା ଏହି ବିଶ୍ୱବିଦ୍ୟାଳୟର ଏକ ପ୍ରାଚୀନ ବିଭାଗ ହେଉଛି ସ୍ନାତକୋତ୍ତର ଓଡ଼ିଆ ବିଭାଗ । ଏଯାବତ୍ ଏହାର ସ୍ନାତକୋତ୍ତର ଶ୍ରେଣୀରୁ ଉତ୍ତୀର୍ଣ୍ଣ ଛାତ୍ର ଓ ଗବେଷକଙ୍କ ସଂଖ୍ୟା ପ୍ରାୟ ପାଞ୍ଚ ହଜାରରୁ ଉର୍ଦ୍ଧ୍ୱ- ସମାଜର ନାନା କ୍ଷେତ୍ରରେ ପ୍ରତିଷ୍ଠିତ । ଏଠାରେ ପ୍ରାକ୍-ଗବେଷଣା ଓ ଗବେଷଣାରତ ଛାତ୍ରଛାତ୍ରୀ ବିଭାଗର କେବଳ ପରିମାଣାତ୍ମକ ଦୃଷ୍ଟିରୁ ନୁହେଁ, ଗୁଣାତ୍ମକ ଉତ୍କର୍ଷତା ଦୃଷ୍ଟିରୁ ନାନା ଭାବରେ ଏହାର ଶ୍ରୀବୃଦ୍ଧି ସାଧନ କରିଛନ୍ତି । ଯେଉଁମାନେ ଏହି ବିଭାଗରେ ଅଧ୍ୟୟନ କରିଛନ୍ତି, ସେମାନଙ୍କମଧ୍ୟରୁ ଅନେକ ଅତୀତର 'ଆକାଙ୍‌କ୍ଷା' ପୃଷ୍ଠାରେ ନିଜର ସୃଜନୀ ପ୍ରତିଭାକୁ ପ୍ରଥମେ ପରୀକ୍ଷା ପୂର୍ବକ ତହିଁରେ ପରିଚିତ ହୋଇ ସାହିତ୍ୟର ବିଭିନ୍ନ କ୍ଷେତ୍ରରେ ପ୍ରତିଷ୍ଠିତ ହୋଇଛନ୍ତି । ବିଭାଗରୁ ଉତ୍ତୀର୍ଣ୍ଣ ହୋଇଥିବା ଏହିପରି ଛାତ୍ରଛାତ୍ରୀଙ୍କ ସଂଖ୍ୟା ଅନେକ ।

ସେଦିନର ସେହି ଯୁବମାନସ ଭଞ୍ଜବିହାରର ଚିର ବସନ୍ତମୟ ପରିବେଶରେ କାବ୍ୟ-କବିତାର ମୃଣ୍ମୟୀ ପ୍ରତିମା ଗଢୁଗଢୁ ତାହା କିପରି ବିଶ୍ୱକୁ ମଧୁମୟ କରିଦେଇଛି- ତାହାର ସୁବାସ ସେମାନେ ହୁଏତ ଅନୁଭବ କରି ପାରିନାହାନ୍ତି । କିନ୍ତୁ ଯୁବଗୋଷ୍ଠୀର ସେହି ତାରୁଣ୍ୟ ଓ ରୋମାଞ୍ଚକର ସାହିତ୍ୟିକ ମନୋଭୂମି ନିରବଧି କାଳ ଝଙ୍କୃତ କରିଚାଲିଛି ସମଗ୍ର ଭଞ୍ଜବିହାର ପରିସରକୁ, ପରୋକ୍ଷରେ ଆମ ସମାଜ ଓ ଆମ ସାହିତ୍ୟକୁ ।

ଆଜି ସ୍ନାତକୋତ୍ତର ଓଡ଼ିଆ ବିଭାଗ ପଚାଶ ବର୍ଷର ଦୀର୍ଘ ପଥ ଅତିକ୍ରମ କରିସାରିଛି । ଏହା ଶ୍ରେଣୀକକ୍ଷର ଅଧ୍ୟୟନ ଓ ଅଧ୍ୟାପନାମଧ୍ୟରେ ଆଉ ନିଜକୁ ସୀମିତ ରଖିପାରିନାହିଁ । ଇତିହାସର ଆଇନାରେ ଛାପିଦେଇଛି ଅନେକ ସ୍ମରଣୀୟ ପଦଚିହ୍ନ ଆସନ୍ତାକାଲି ପାଇଁ । ଚଲାପଥରେ ବହୁ ବାଧାବିଘ୍ନ । ଭଡ଼ାଘରୁ ଆସି ମହୀରୁହରେ ପରିଣତ ହୋଇଛି ଏହି ବିଭାଗ । ମହୀରୁହର ଶାଖା-ପ୍ରଶାଖା, ପୁଷ୍ପ-ଲତା ହେଉଛନ୍ତି ବିଭାଗର ୧୯୬୮ ମସିହାର ଛାତ୍ରଛାତ୍ରୀଙ୍କଠାରୁ ଆରମ୍ଭ କରି ଏଯାବତ୍ ବିଭାଗ ସହିତ ସଂପୃକ୍ତ ହୋଇଥିବା ପ୍ରତ୍ୟେକ ବିଦ୍ୟାର୍ଥୀ, ଗବେଷକ, ଗବେଷିକା ଏବଂ ଶିକ୍ଷକବୃନ୍ଦ । ସେମାନେ ଯେପରି ପ୍ରସ୍ଫୁଟିତ, ସେମାନଙ୍କର ସୁବାସରେ ବିଭାଗ ସେହିପରି ମହକିତ, ସୁରଭିତ ଓ ପୁଲକିତ । ସମୟ ଓ ସମାଜ ସେମାନଙ୍କର ସେହି ମହକର ଶ୍ରେଷ୍ଠ ବିଚାରକ । ମହାକାଳ ବକ୍ଷରେ ନାନା ବାଧା ଓ ବନ୍ଧନକୁ ଅତିକ୍ରମ କରି ସେହିମାନଙ୍କର ସ୍ୱପ୍ନ ଓ ସଂକଳ୍ପରେ 'ଆକାଙ୍କ୍ଷା'ର ପ୍ରତ୍ୟେକଟି ପୃଷ୍ଠା ବିଭୋର - ମହିମାମଣ୍ଡିତ । ସେହିଦିନଠାରୁ ଆଜିଯାଏ ବିଭାଗ ସହିତ ସଂପୃକ୍ତ ଛାତ୍ରଛାତ୍ରୀ, ଶିକ୍ଷକ ଏବଂ ଶୁଭେଚ୍ଛୁମାନଙ୍କର କୀର୍ତ୍ତି ଓ କୃତିକୁ ନେଇ ପରିଶୋଭିତ ହୋଇଛି 'ଆକାଙ୍କ୍ଷା'ର ପ୍ରତ୍ୟେକ ପୃଷ୍ଠାର ଶବ୍ଦବ୍ରହ୍ମ । ନାନା ଦୃଷ୍ଟିରୁ ଏହି ସୁବର୍ଣ୍ଣ ସ୍ମରଣିକାକୁ ପରିପୂର୍ଣ୍ଣ କରିବାକୁ ପ୍ରଚେଷ୍ଟା କରାଯାଇଛି, ଚଲାପଥରେ ବହୁ ଘାତ-ପ୍ରତିଘାତ, ବାଧା-ବନ୍ଧନର ସମ୍ମୁଖୀନ ହେବାକୁ ପଡ଼ିଛି । ବିଶେଷ କରି ଏମ୍.ଫିଲ୍., ପିଏଚ୍.ଡି. ଏବଂ ଡି.ଲିଟ୍. ଗବେଷକ ଗବେଷିକାମାନଙ୍କର ତାଲିକା ପ୍ରସ୍ତୁତ କାଳରେ ନିର୍ଭୁଲ ତଥ୍ୟ ସହିତ ଅନୁଭୂତିସିଦ୍ଧ ଲେଖାଟିଏ ପାଇଁ ଚାରିବର୍ଷରୁ ଊର୍ଦ୍ଧ୍ୱକାଳ ଧରି ବହୁ ପୁରାତନ ଛାତ୍ରଛାତ୍ରୀ / ଶିକ୍ଷକମାନଙ୍କୁ ବାରମ୍ବାର ଅନୁରୋଧ କରାଯାଇଛି । ଜାତୀୟ କର୍ତ୍ତବ୍ୟ ଜ୍ଞାନ କରି ପ୍ରାୟ ସମସ୍ତେ ଏଥିରେ ସହଯୋଗ କରିଛନ୍ତି ଓ ସାମିଲ ହୋଇଛନ୍ତି । ସ୍ମରଣିକାକୁ ପୂର୍ଣ୍ଣାଙ୍ଗ ରୂପ ଦେବାରେ ବିଶ୍ୱବିଦ୍ୟାଳୟର କର୍ତ୍ତୃପକ୍ଷଙ୍କ ଠାରୁ ଆରମ୍ଭ ପ୍ରୁଫ୍ ସଂଶୋଧନ କାର୍ଯ୍ୟରେ ସାହାଯ୍ୟ କରିଥିବା ବନ୍ଧୁ ଡ. କୁଳମଣି ଓଝା ଓ ଡ. ମନୋରଞ୍ଜନ ବିଷୋୟୀ, ଡିଟିପି କାର୍ଯ୍ୟରେ କମ୍ପ୍ୟୁଟର ସଲ୍ୟୁସନ୍‌ର ଶ୍ରୀ ସନ୍ତୋଷ କୁମାର ପଟ୍ଟନାୟକ, ନିର୍ଭୁଲ୍ ମୁଦ୍ରଣରେ ଏଥେନା ବୁକ୍‌ସ୍‌ର ସ୍ୱତ୍ୱାଧିକାରୀ ଶ୍ରୀ ରାଜକିଶୋର ଦାସଙ୍କ ପର୍ଯ୍ୟନ୍ତ ଯେଉଁମାନେ ସହଯୋଗର ହସ୍ତ ପ୍ରସାରିତ କରିଛନ୍ତି- ସମସ୍ତଙ୍କୁ ଏହି ଅବସରରେ ସାଧୁବାଦ ଜଣାଉଛି । ଯଦି ଏହି କାର୍ଯ୍ୟରେ କିଛି ସଫଳତା ମିଳିଥାଏ, ତାହା ବିଭାଗ ଓ ସ୍ମରଣିକା ସହିତ ସଂପୃକ୍ତ ପ୍ରତ୍ୟେକଙ୍କର ଏବଂ ବିଫଳତା ମୋର ନିଜର ।

ଆନୁଷ୍ଠାନିକ ସହଯୋଗ ନିମିତ୍ତ ଶେଷରେ ସମସ୍ତଙ୍କୁ କୃତଜ୍ଞତା ଓ ଧନ୍ୟବାଦ ।


**ପ୍ରସନ୍ନ କୁମାର ସ୍ୱାଇଁ**

ବିଭାଗ ମୁଖ୍ୟ, ସ୍ନାତକୋତ୍ତର ଓଡ଼ିଆ ବିଭାଗ,

ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ

ସଂପାଦକ, 'ଆକାଙ୍କ୍ଷା'



ବସିଥିବା ଅତିଥିମାନେ ବାମରୁ ଡାହାଣ କ୍ରମରେ
ଶ୍ରୀ ଗୋରାଚାନ୍ଦ ରଥ, କୁଳସଚିବ; ପ୍ର. ବିଧୁଭୂଷଣ ଦାସ, ଡି.ପି.ଆଇ; ଶ୍ରୀ ବିଶ୍ୱନାଥ ଦାସ, ମୁଖ୍ୟମନ୍ତ୍ରୀ; ସର୍ଦ୍ଦାର ଯୋଗେନ୍ଦ୍ର ସିଂ, ରାଜ୍ୟପାଳ; ଡ. ଭି.ଭି.ଗିରି, ରାଷ୍ଟ୍ରପତି; ଶ୍ରୀ ରଘୁନାଥପ୍ରସାଦ ପାଢ଼ୀ, କୁଳପତି; ଶ୍ରୀ ବୃନ୍ଦାବନ ନାୟକ, ମନ୍ତ୍ରୀ; ଶ୍ରୀ ହରିହର ଦାସ, ଶ୍ରୀ ସୁକୁମାର ଦାସ, ଶ୍ରୀ ନରସିଂହ ନାୟକ ପ୍ରଭୃତିଙ୍କ ସହିତ ଦଣ୍ଡାୟମାନ ଅନ୍ୟାନ୍ୟ ଅତିଥିବୃନ୍ଦ
(୪ ମାର୍ଚ୍ଚ, ୧୯୭୨ ମସିହାର ଏକ ଶୁଭ ମୁହୂର୍ତ୍ତରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ସ୍ଥାୟୀ ପରିସର ଉଦ୍‌ଘାଟନ ଅବସରରେ ଉପସ୍ଥିତ ଅତିଥିବୃନ୍ଦ)




ସ୍ନାତକୋତ୍ତର ଓଡ଼ିଆ ବିଭାଗର ପ୍ରଥମ ପ୍ରଫେସର ଡ. କୁଞ୍ଜବିହାରୀ ତ୍ରିପାଠୀ ଓ ପ୍ରଥମ ଅଧ୍ୟାପକ ଶ୍ରୀ ସୁଦର୍ଶନ ଆଚାର୍ଯ୍ୟଙ୍କ ସହିତ ପ୍ରଥମ ବର୍ଷର ଛାତ୍ରଛାତ୍ରୀ (୧୯୬୮-୧୯୭୦)



ସ୍ନାତକୋତ୍ତର ଓଡ଼ିଆ ବିଭାଗକୁ ରୂପ ଦେଇଥିବା ବିଶ୍ୱବିଦ୍ୟାଳୟର ଦ୍ୱିତୀୟ କୁଳପତି
ଶ୍ରୀ ରଘୁନାଥପ୍ରସାଦ ପାଢ଼ୀ



ସ୍ନାତକୋତ୍ତର ଓଡ଼ିଆ ବିଭାଗର ପ୍ରଥମ ପ୍ରଫେସର
ପ୍ରଫେସର କୁଞ୍ଜବିହାରୀ ତ୍ରିପାଠୀ



ପ୍ରଫେସର ରାଜେନ୍ଦ୍ର ପ୍ରସାଦ ଦାସ
କୁଳପତି



ପ୍ରଫେସର ଦେବୀପ୍ରସନ୍ନ ପଟ୍ଟନାୟକ
ବିଭାଗର ବରିଷ୍ଠ ପ୍ରଫେସର ଓ ସ୍ନାତକୋତ୍ତର ପରିଷଦର ଅଧ୍ୟକ୍ଷ



୧୯୮୨-୧୯୮୩ ଶିକ୍ଷାବର୍ଷରେ ବିଭାଗର ଛାତ୍ରଛାତ୍ରୀଙ୍କ ସହିତ ଉପସ୍ଥିତ ଶିକ୍ଷକବୃନ୍ଦ



୧୯୯୦-୧୯୯୧ ଶିକ୍ଷାବର୍ଷର ଛାତ୍ରଛାତ୍ରୀ ଓ ଗବେଷକଙ୍କ ସହିତ ଉପସ୍ଥିତ ବିଭାଗର ଶିକ୍ଷକ ଓ କର୍ମଚାରୀବୃନ୍ଦ ।

# ବିଭାଗର ପ୍ରାକ୍ତନ ଶିକ୍ଷକବୃନ୍ଦ



ଡ. ସୀତାରାମ ମହାପାତ୍ର



ଡ. କାହ୍ନୁଚରଣ ମିଶ୍ର



ଡ. ବେଣୀମାଧବ ପାଢ଼ୀ



ଡ. ଶ୍ରୀନିବାସ ମିଶ୍ର



ଡ. ଗଗନେନ୍ଦ୍ରନାଥ ଦାଶ

# ବିଭାଗର ପ୍ରାକ୍ତନ ଶିକ୍ଷକବୃନ୍ଦ



ଡ. ଦାଶରଥି ଦାସ



ଡ. ସୁଦର୍ଶନ ଆଚାର୍ଯ୍ୟ



ଡ. ପୂର୍ଣ୍ଣଚନ୍ଦ୍ର ମିଶ୍ର



ଡ.ବାଉରୀବନ୍ଧୁ କର



ଡ. ଅଶ୍ୱିନୀ କୁମାର ପଣ୍ଡା



ଡ.କୃଷ୍ଣଚନ୍ଦ୍ର ପ୍ରଧାନ

## ବିଭାଗର କର୍ମଚାରୀବୃନ୍ଦ



ଡ଼. ରାଧାଗୋବିନ୍ଦ ପାଢ଼ୀ



ଶ୍ରୀ ପ୍ରଦୀପ କୁମାର କହଁର



ଶ୍ରୀ ମନୋଜ କୁମାର ପଟ୍ଟନାୟକ



ଶ୍ରୀ ଉମାଚରଣ ଦାଶ



ଶ୍ରୀ ପ୍ରଫୁଲ୍ଲ କୁମାର ବେହେରା





ବିଭାଗ ପକ୍ଷରୁ ଆୟୋଜିତ ପଣ୍ଡିତ ନୀଳକଣ୍ଠ ବକ୍ତୃତାମାଳା ଅବସରରେ ମଞ୍ଚାସୀନ କୁଳପତି ପ୍ରଫେସର ଆଦିତ୍ୟପ୍ରସାଦ ପାଢ଼ୀ, ପ୍ରଫେସର ଶରତଚନ୍ଦ୍ର ପ୍ରଧାନ ଓ ପ୍ରଫେସର ବାସୁଦେବ ସାହୁ (ବାମରୁ ଡାହାଣ କ୍ରମରେ)





ବିଭାଗ ପକ୍ଷରୁ ୯ ଡିସେମ୍ବର, ୧୯୯୯ରେ ଆୟୋଜିତ ଏକ ସାରସ୍ୱତ କାର୍ଯ୍ୟକ୍ରମରେ ପଦ୍ମଶ୍ରୀ ଚନ୍ଦ୍ରଶେଖର ରଥଙ୍କ ବକ୍ତବ୍ୟ ପ୍ରଦାନ, ଅନ୍ୟମାନଙ୍କ ମଧ୍ୟରେ ମଞ୍ଚାସୀନ ପଦ୍ମଶ୍ରୀ ମନୋଜ ଦାସ (ବାମରୁ ଦ୍ୱିତୀୟ)




ବିଭାଗର ବାର୍ଷିକ ଉତ୍ସବ ଅବସରରେ ସମ୍ବାଦର ସମ୍ପାଦକ ଶ୍ରୀ ସୌମ୍ୟରଞ୍ଜନ ପଟ୍ଟନାୟକଙ୍କ ବକ୍ତବ୍ୟ, ଅନ୍ୟମାନଙ୍କମଧ୍ୟରେ ମଞ୍ଚାସୀନ ଭାଷାବିତ୍ ଡ. ପ୍ରଫୁଲ୍ଲ କୁମାର ତ୍ରିପାଠୀ, ଶିଶୁ ସାହିତ୍ୟିକ ଶ୍ରୀଯୁକ୍ତ ଦାଶ ବେନହୁର, ତତ୍କାଳୀନ କୁଳପତି ପ୍ରଫେସର ଆଦିତ୍ୟ ପ୍ରସାଦ ପାଢ଼ୀ ଏବଂ ପ୍ରଫେସର ବାଉରୀବନ୍ଧୁ କର



୨୦୦୩ ମସିହାରେ ବିଭାଗ ପକ୍ଷରୁ ଆୟୋଜିତ ରିଫ୍ରେସର୍ କୋର୍ସ ଉଦ୍‌ଘାଟନ ଅବସରରେ ବିଶିଷ୍ଟ କବି ପଦ୍ମଶ୍ରୀ ରମାକାନ୍ତ ରଥଙ୍କ ବକ୍ତବ୍ୟ, ଅନ୍ୟମାନଙ୍କମଧ୍ୟରେ ମଞ୍ଚାସୀନ ତତ୍କାଳୀନ କୁଳପତି ପ୍ରଫେସର ସୂର୍ଯ୍ୟନାରାୟଣ ବେହେରା, ଡ. ବେଣୀମାଧବ ପାଢ଼ୀ ଓ ପ୍ରଫେସର ଜଗନ୍ନାଥ ପଣ୍ଡା



୨୦୦୩ ମସିହାରେ ବିଭାଗ ପକ୍ଷରୁ ଆୟୋଜିତ 'ବିଂଶ ଶତକର ଓଡ଼ିଆ ସାହିତ୍ୟ' ଶୀର୍ଷକ ରିଫ୍ରେସର୍ କୋର୍ସ ଉଦ୍‌ଘାଟନ ଅବସରରେ ବିଭାଗର ପ୍ରାକ୍ତନ ଶିକ୍ଷକ ଓ ପ୍ରାଚ୍ୟଶାସ୍ତ୍ରବିତ୍ ଡ.ବେଣୀମାଧବ ପାଢ଼ୀଙ୍କ ବକ୍ତବ୍ୟ, ଅନ୍ୟମାନଙ୍କମଧ୍ୟରେ ମଞ୍ଚାସୀନ ପଦ୍ମଶ୍ରୀ ରମାକାନ୍ତ ରଥ ଓ ପ୍ରଫେସର ଅଶ୍ୱିନୀ କୁମାର ପଣ୍ଡା



୨୦୦୪ ମସିହାରେ ବିଭାଗ ପକ୍ଷରୁ ଆୟୋଜିତ 'ପ୍ରଦର୍ଶନଶୀଳ କଳା' ଶୀର୍ଷକ ରିଫ୍ରେସର କୋର୍ସ ଉଦ୍‌ଯାପନ ଅବସରରେ ଦକ୍ଷିଣାଞ୍ଚଳ ରାଜସ୍ୱ ପର୍ଷଦର ସଦସ୍ୟ ତଥା ତତ୍କାଳୀନ କୁଳପତି ଡ. ଅରୁଣ କୁମାର ପଣ୍ଡାଙ୍କ ବକ୍ତବ୍ୟ



୨୦୦୪ ମସିହାରେ ବିଭାଗ ପକ୍ଷରୁ ଆୟୋଜିତ 'ଦକ୍ଷିଣ ଓଡ଼ିଶା ସମ୍ପର୍କିତ ଅଧ୍ୟୟନ' ଶୀର୍ଷକ ରିଫ୍ରେସର କୋର୍ସ ଅବସରରେ ବିଭାଗର ପ୍ରାକ୍ତନ୍ ପ୍ରଫେସର ଦାଶରଥି ଦାସଙ୍କ ବକ୍ତବ୍ୟ, ଅନ୍ୟମାନଙ୍କମଧ୍ୟରେ ମଞ୍ଚାସୀନ ତତ୍‌କାଳୀନ କୁଳପତି ପ୍ରଫେସର ଜୟକୃଷ୍ଣ ବରାଳ ଓ ବିଶିଷ୍ଟ ଐତିହାସିକ ପ୍ରଫେସର ଅମିୟ କୁମାର ପଟ୍ଟନାୟକ




୨୦୦୫ ମସିହାରେ ବିଭାଗ ପକ୍ଷରୁ ଆୟୋଜିତ 'ଏକବିଂଶ ଶତକ ସାହିତ୍ୟର ରୂପରେଖ' ଶୀର୍ଷକ ରିଫ୍ରେସର କୋର୍ସ ଅବସରରେ ଉତ୍କଳ ସଂସ୍କୃତି ବିଶ୍ୱବିଦ୍ୟାଳୟର ପ୍ରାକ୍ତନ କୁଳପତି ପ୍ରଫେସର ଅମିୟ କୁମାର ପଟ୍ଟନାୟକଙ୍କ ବକ୍ତବ୍ୟ, ଅନ୍ୟମାନଙ୍କମଧ୍ୟରେ ମଞ୍ଚାସୀନ ବିଶ୍ୱଭାରତୀ, ଶାନ୍ତିନିକେତନର ପ୍ରଫେସର ନିରଞ୍ଜନ ମହାନ୍ତି, କୁଳପତି ପ୍ରଫେସର ଜୟକୃଷ୍ଣ ବରାଳ, ଏବଂ ରେଭେନ୍‌ସା କଲେଜର ପ୍ରାକ୍ତନ ଅଧ୍ୟକ୍ଷ ପ୍ରଫେସର ପ୍ରଫୁଲ୍ଲ କୁମାର ମହାନ୍ତି



୨୦୦୪ ମସିହାରେ ବିଶ୍ୱବିଦ୍ୟାଳୟକୁ ୟୁ.ଜି.ସି.ଟିମ୍ ପରିଦର୍ଶନ ଅବସରରେ ସଦସ୍ୟମାନଙ୍କର ବିଭାଗର ସଂଗ୍ରହାଳୟ ପରିଦର୍ଶନ ଓ ବିଭାଗର ଶିକ୍ଷକମାନଙ୍କ ସହିତ ଆଲୋଚନା



୨୦୦୪ ମସିହାରେ ବିଶ୍ୱବିଦ୍ୟାଳୟକୁ ୟୁ.ଜି.ସି.ଟିମ୍ ପରିଦର୍ଶନ ଅବସରରେ ବିଭାଗର ଶିକ୍ଷକମାନଙ୍କ ଉପସ୍ଥିତିରେ ଟିମ୍ ସଦସ୍ୟମାନଙ୍କର ବିଭାଗର ସଂଗ୍ରହାଳୟ ପରିଦର୍ଶନ




୧୩-୧୪ ଡିସେମ୍ବର, ୨୦୦୮ ମସିହାରେ କେନ୍ଦ୍ରସାହିତ୍ୟ ଏକାଡେମୀ ସହାୟତାରେ ବିଭାଗ ପକ୍ଷରୁ ଆୟୋଜିତ 'ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ ସାହିତ୍ୟ' ଶୀର୍ଷକ ଦୁଇଦିବସୀୟ ଆଲୋଚନାଚକ୍ର ଅବସରରେ ବିଶିଷ୍ଟ ଅନୁବାଦିକା ଡ. ଶକୁନ୍ତଳା ବଳିଆରସିଂହଙ୍କ ବକ୍ତବ୍ୟ, ଅନ୍ୟମାନଙ୍କମଧ୍ୟରେ ମଞ୍ଚାସୀନ ବିଶିଷ୍ଟ ଭାଷାବିତ୍ ପଦ୍ମଶ୍ରୀ ଦେବୀପ୍ରସନ୍ନ ପଟ୍ଟନାୟକ, ସାହିତ୍ୟ ଏକାଡେମୀ, ଆଞ୍ଚଳିକ କାର୍ଯ୍ୟାଳୟ, କଲିକତାର କାର୍ଯ୍ୟକ୍ରମ ଅଧିକାରୀ ଡ. ମିହିର୍ କୁମାର ସାହୁ ଓ ପ୍ରଫେସର ରାମଚନ୍ଦ୍ର ପାଣିଗ୍ରାହୀ



ବିଭାଗରେ ସ୍ୱତନ୍ତ୍ର ଅନୁଦାନ ପ୍ରକଳ୍ପ ଆନୁକୂଲ୍ୟରେ ଆୟୋଜିତ ଏକ ଜାତୀୟ ଆଲୋଚନାଚକ୍ରରେ
ତତ୍କାଳୀନ କୁଳପତି ପ୍ରଫେସର ଜୟନ୍ତ କୁମାର ମହାପାତ୍ରଙ୍କ ଉତ୍ସବ ଉଦ୍‌ଘାଟନ




ବିଭାଗର ସ୍ୱତନ୍ତ୍ର ଅନୁଦାନ ପ୍ରକଳ୍ପ ଆନୁକୂଲ୍ୟରେ ଆୟୋଜିତ ଜାତୀୟ ଆଲୋଚନାଚକ୍ରରେ ମଞ୍ଚାସୀନ ଅତିଥିଙ୍କ ଉପସ୍ଥିତିରେ ତତ୍କାଳୀନ କୁଳପତି ପ୍ରଫେସର ଜୟନ୍ତ କୁମାର ମହାପାତ୍ରଙ୍କ ବକ୍ତବ୍ୟ ପ୍ରଦାନ



୨୧ ମାର୍ଚ୍ଚ, ୨୦୧୫ ମସିହାରେ ଓଡ଼ିଶାର ତତ୍କାଳୀନ ଉଚ୍ଚଶିକ୍ଷା ମନ୍ତ୍ରୀ ଡ.ପ୍ରଦୀପ କୁମାର ପାଣିଗ୍ରାହୀଙ୍କ ଦ୍ୱାରା ଏବଂ ବିଶ୍ୱବିଦ୍ୟାଳୟର ତତ୍କାଳୀନ କୁଳପତି ପ୍ରଫେସର ଦୀପକ କୁମାର ବେହେରା ଓ ବିଭାଗ ମୁଖ୍ୟ ପ୍ରଫେସର ଅଶ୍ୱିନୀ କୁମାର ପଣ୍ଡାଙ୍କ ଉପସ୍ଥିତିରେ  ଦକ୍ଷିଣ ଓଡ଼ିଶା ସାଂସ୍କୃତିକ ଗବେଷଣା କେନ୍ଦ୍ରର ଶୁଭ ଉଦ୍‌ଘାଟନ



ୟୁ.ଜି.ସି ସହାୟତାରେ ବିଭାଗ ପକ୍ଷରୁ ଆୟୋଜିତ 'ଦକ୍ଷିଣ ଓଡ଼ିଶାର ଆଦିବାସୀ ସଂସ୍କୃତି' ଶୀର୍ଷକ ଦୁଇଦିବସୀୟ ଜାତୀୟ ଆଲୋଚନାଚକ୍ରରେ ଅତିଥି ଭାବରେ ଯୋଗଦେଇ ବିଶିଷ୍ଟ ନୃତତ୍ତ୍ୱବିତ୍ ପ୍ରଫେସର ସତ୍ୟନାରାୟଣ ରଥଙ୍କ ବକ୍ତବ୍ୟ



ବିଭାଗ ପକ୍ଷରୁ 'ଦକ୍ଷିଣ ଓଡ଼ିଶା ସାଂସ୍କୃତିକ ଗବେଷଣା କେନ୍ଦ୍ର'ର ଉଦ୍‌ଘାଟନ ଅବସରରେ ଅତିଥି ଭାବେ ଯୋଗଦେଇ ବିଶିଷ୍ଟ ଆଦିବାସୀ ଭାଷା ଓ ସଂସ୍କୃତିବିତ୍ ପ୍ରଫେସର ଖଗେଶ୍ୱର ମହାପାତ୍ରଙ୍କ ଉଦ୍‌ବୋଧନ



ବିଭାଗର ଦୁର୍ଲ୍ଲଭ ସଂଗ୍ରହାଳୟ ପରିଦର୍ଶନ ଅବସରରେ ଅତିଥି ଓ ବିଭାଗ ମୁଖ୍ୟ ପ୍ରଫେସର ଅଶ୍ୱିନୀ କୁମାର ପଣ୍ଡା ଓ କ୍ୟୁରେଟର ଡ. ରାଧାଗୋବିନ୍ଦ ପାଢ଼ୀଙ୍କ ସହିତ ଓଡ଼ିଶାର ତତ୍‌କାଳୀନ ଉଚ୍ଚଶିକ୍ଷା ମନ୍ତ୍ରୀ ଡ. ପ୍ରଦୀପ କୁମାର ପାଣିଗ୍ରାହୀ



ବିଭାଗର ସ୍ୱତନ୍ତ୍ର ଅନୁଦାନ ପ୍ରକଳ୍ପ ଆନୁକୂଲ୍ୟରେ ଆୟୋଜିତ ଏକ ଜାତୀୟ ଆଲୋଚନାଚକ୍ରରେ ମଞ୍ଚାସୀନ ଅତିଥିଙ୍କ ଉପସ୍ଥିତିରେ ତତ୍‌କାଳୀନ କୁଳପତି ପ୍ରଫେସର ଦିପକ କୁମାର ବେହେରାଙ୍କ ବକ୍ତବ୍ୟ ପ୍ରଦାନ




କେନ୍ଦ୍ର ସାହିତ୍ୟ ଏକାଡେମୀ, ନୂଆଦିଲ୍ଲୀ ସହାୟତାରେ ବିଭାଗ ପକ୍ଷରୁ
ଆୟୋଜିତ ଏକ ଜାତୀୟ ଆଲୋଚନାଚକ୍ରରେ ମୁଖ୍ୟ ଅତିଥି ଭାବେ
ଯୋଗଦେଇ ପ୍ରଖ୍ୟାତ କଥାଶିଳ୍ପୀ ପଦ୍ମଶ୍ରୀ ଡ. ପ୍ରତିଭା ରାୟଙ୍କ ଉଦ୍‌ବୋଧନ




ବିଭାଗ ପକ୍ଷରୁ ଆୟୋଜିତ ପ୍ରଫେସର ବେଣୀମାଧବ ପାଢ଼ୀ ସ୍ମାରକୀ ବକ୍ତୃତା
ପ୍ରଦାନ ଅବସରରେ ଜର୍ମାନୀର ବିଶିଷ୍ଟ ନୃତତ୍ତ୍ୱବିତ୍
ପ୍ରଫେସର ରୋଲାଣ୍ଡ୍ ହାର୍ଡେନ୍‌ବର୍ଗଙ୍କ ଉଦ୍‌ବୋଧନ




ଜାତୀୟ ପାଣ୍ଡୁଲିପି ମିଶନ୍, ନୂଆଦିଲ୍ଲୀ ଆନୁକୂଲ୍ୟରେ ବିଭାଗ ପକ୍ଷରୁ ଆୟୋଜିତ 'ତତ୍ତ୍ୱବୋଧ' ଶୀର୍ଷକ ସମ୍ମାନ ଅବସରରେ ଉପସ୍ଥିତ ବିଶିଷ୍ଟ ଶାସ୍ତ୍ରବିତ୍ ପ୍ରଫେସର ସୁରେନ୍ଦ୍ରନାଥ ଦାଶଙ୍କୁ କୁଳପତିଙ୍କ ଦ୍ୱାରା ସମ୍ବର୍ଦ୍ଧନା ପ୍ରଦାନ




ବିଭାଗ ପକ୍ଷରୁ ଆୟୋଜିତ '୧୯୮୦ ପରବର୍ତ୍ତୀ ଓଡ଼ିଆ ସାହିତ୍ୟ' ଶୀର୍ଷକ ଦୁଇଦିବସୀୟ ଜାତୀୟ ଆଲୋଚନାଚକ୍ରରେ ଅତିଥିଭାବେ ଯୋଗଦେଇ ବିଭାଗର ପ୍ରାକ୍ତନ ଛାତ୍ରୀ ତଥା କେନ୍ଦ୍ରସାହିତ୍ୟ ଏକାଡେମୀ ପୁରସ୍କାର ବିଜୟିନୀ ସୁଶ୍ରୀ ଅମିୟବାଳା ପଟ୍ଟନାୟକଙ୍କ ଉଦ୍‌ବୋଧନ



୨୭ ନଭେମ୍ବର, ୨୦୧୮ ମସିହାରେ ବିଭାଗ ପକ୍ଷରୁ ଆୟୋଜିତ 'ଏକବିଂଶ ଶତକ ଓଡ଼ିଆ ସାହିତ୍ୟ : ସୀମା ଓ ସମ୍ଭାବନା' ଶୀର୍ଷକ ଦୁଇଦିବସୀୟ ଜାତୀୟ ଆଲୋଚନାଚକ୍ରରେ ମୁଖ୍ୟ ଅତିଥି ଭାବେ ଯୋଗଦେଇ ପ୍ରଫେସର ରାମଚନ୍ଦ୍ର ବେହେରାଙ୍କ ବକ୍ତବ୍ୟ



ବିଭାଗର ପ୍ରାକ୍ତନ ପ୍ରଫେସର ଓ ମୁଖ୍ୟ ଡ.ଶ୍ରୀନିବାସ ମିଶ୍ରଙ୍କୁ କୁଳପତି ପ୍ରଫେସର ରାଜେନ୍ଦ୍ରପ୍ରସାଦ ଦାସଙ୍କ ଦ୍ୱାରା ସମ୍ବର୍ଦ୍ଧନା ପ୍ରଦାନ




ବିଭାଗର ପ୍ରାକ୍ତନ ପ୍ରଫେସର ଓ ମୁଖ୍ୟ ଡ.ସୁଦର୍ଶନ ଆଚାର୍ଯ୍ୟଙ୍କର ବିଭାଗ ପକ୍ଷରୁ ଆୟୋଜିତ ଏକ ଜାତୀୟ ଆଲୋଚନାଚକ୍ରରେ ବକ୍ତବ୍ୟ ପ୍ରଦାନ




ବିଭାଗ ପକ୍ଷରୁ ଆୟୋଜିତ ପୁରାତନ ଛାତ୍ର ସମ୍ମିଳନୀ ଅବସରରେ ମଞ୍ଚାସୀନ କୁଳପତି ପ୍ରଫେସର ରାଜେନ୍ଦ୍ରପ୍ରସାଦ ଦାସ, ପୁରାତନ ଛାତ୍ର ପ୍ରଫେସର ଦେବୀପ୍ରସନ୍ନ ପଟ୍ଟନାୟକ ଓ ପ୍ରଫେସର କୈଳାସଚନ୍ଦ୍ର ତ୍ରିପାଠୀଙ୍କ ସମେତ ବିଭାଗ ମୁଖ୍ୟ ପ୍ରଫେସର ପ୍ରସନ୍ନ କୁମାର ସ୍ୱାଇଁଙ୍କ ଉପସ୍ଥିତିରେ ବିଭାଗର ପୂର୍ବତନ ଛାତ୍ର ଡ. ଲମ୍ବୋଦର ପାଣିଗ୍ରାହୀଙ୍କ ଉଦ୍‌ବୋଧନ



ବିଭାଗ ପକ୍ଷରୁ ଆୟୋଜିତ 'ଓଡ଼ିଆ ସାହିତ୍ୟରେ ଗାନ୍ଧୀବାଦୀ ଚେତନା' ଶୀର୍ଷକ ଦୁଇଦିବସୀୟ ଆଲୋଚନାଚକ୍ରରେ ଯୋଗଦେବା ଅବସରରେ ବର୍ଷୀୟାନ ସ୍ୱାଧୀନତା ସଂଗ୍ରାମୀ ଓ ପୂର୍ବତନ ମନ୍ତ୍ରୀ ଶ୍ରୀ ଦୋଳଗୋବିନ୍ଦ ପ୍ରଧାନଙ୍କ ସମେତ ଉପସ୍ଥିତ ଅତିଥିମାନଙ୍କଦ୍ୱାରା ଏକ ଗ୍ରନ୍ଥର ଉନ୍ମୋଚନ




କେନ୍ଦ୍ରସାହିତ୍ୟ ଏକାଡେମୀ ପୁରସ୍କାର ପ୍ରାପ୍ତ ବିଶିଷ୍ଟ ସାହିତ୍ୟିକ ଓ ବିଭାଗର ପ୍ରାକ୍ତନ ପ୍ରଫେସର ଓ ମୁଖ୍ୟ ଡ. ସୁଦର୍ଶନ ଆଚାର୍ଯ୍ୟଙ୍କୁ ବିଭାଗ ପକ୍ଷରୁ କୁଳପତିଙ୍କ ଦ୍ୱାରା ସମ୍ବର୍ଦ୍ଧନା ପ୍ରଦାନ



ବିଭାଗ ପକ୍ଷରୁ ଆୟୋଜିତ 'ପୁରାତନ ଛାତ୍ର ସମ୍ମିଳନୀ' ଅବସରରେ ବିଭାଗର ପୁରାତନ ଛାତ୍ରମାନଙ୍କ ପକ୍ଷରୁ କୁଳପତି ପ୍ରଫେସର ରାଜେନ୍ଦ୍ର ପ୍ରସାଦ ଦାସଙ୍କୁ ସମ୍ବର୍ଦ୍ଧନା ପ୍ରଦାନ



ବିଭାଗ ପକ୍ଷରୁ ପ୍ରକାଶିତ ଅର୍ଦ୍ଧଶତାବ୍ଦୀର ଯୁବମାନସର ସ୍ୱପ୍ନ ଓ ସଂକଳ୍ପର ସ୍ୱର ସୁବର୍ଣ୍ଣ ଜୟନ୍ତୀ ସ୍ମରଣିକା 'ଆକାଙ୍‌କ୍ଷା' ଅତିଥିମାନଙ୍କଦ୍ୱାରା ଶୁଭ ଉନ୍ମୋଚନ




୨୦୧୮ ମସିହା ନଭେମ୍ବର ମାସରେ ଓଡ଼ିଶା ସରକାରଙ୍କ ସହାୟତାରେ ବିଭାଗ ପକ୍ଷରୁ ଆୟୋଜିତ ୨୧ ଦିନିଆ ଶିକ୍ଷକ ପ୍ରଶିକ୍ଷଣ କାର୍ଯ୍ୟକ୍ରମର ଉଦ୍‌ଘାଟନ ଅବସରରେ ମଞ୍ଚାସୀନ କୁଳପତି ପ୍ରଫେସର ରାଜେନ୍ଦ୍ରପ୍ରସାଦ ଦାସ, ସ୍ନାତକୋତ୍ତର ପରିଷଦର ଅଧ୍ୟକ୍ଷ ପ୍ରଫେସର ଦେବୀପ୍ରସନ୍ନ ପଟ୍ଟନାୟକ, କୁଳସଚିବ ଶ୍ରୀ ରଞ୍ଜନ କୁମାର ବିଶ୍ୱାଳ ପ୍ରଫେସର କିଶୋର କୁମାର ବାସା, ପ୍ରଫେସର କୃଷ୍ଣଚନ୍ଦ୍ର ପ୍ରଧାନ, ପ୍ରଫେସର ଜୟନ୍ତ ପରିଡ଼ା ପ୍ରଭୃତିଙ୍କ ଉପସ୍ଥିତିରେ ଓଡ଼ିଶା ଉଚ୍ଚଶିକ୍ଷା ପରିଷଦର ଉପାଧ୍ୟକ୍ଷ ପ୍ରଫେସର ଅଶୋକ କୁମାର ଦାସଙ୍କ ଉଦ୍‌ବୋଧନ




୨୦୧୮ ମସିହା ଡିସେମ୍ବର ମାସରେ ଓଡ଼ିଶା ସରକାରଙ୍କ ସହାୟତାରେ ବିଭାଗ ପକ୍ଷରୁ ଆୟୋଜିତ ୨୧ ଦିନିଆ ଶିକ୍ଷକ ପ୍ରଶିକ୍ଷଣ କାର୍ଯ୍ୟକ୍ରମର ଉଦ୍‌ଯାପନ ଅବସରରେ ମଞ୍ଚାସୀନ ସ୍ନାତକୋତ୍ତର ପରିଷଦର ଅଧ୍ୟକ୍ଷ ପ୍ରଫେସର ଦେବୀପ୍ରସନ୍ନ ପଟ୍ଟନାୟକଙ୍କ ସମେତ ବିଭାଗ ମୁଖ୍ୟ ତଥା କାର୍ଯ୍ୟକ୍ରମର ସଂଯୋଜକ ପ୍ରଫେସର ପ୍ରସନ୍ନ କୁମାର ସ୍ୱାଇଁ, ବିଶ୍ୱବିଦ୍ୟାଳୟ ମାନବ ସମ୍ବଳ ବିକାଶକେନ୍ଦ୍ର ନିର୍ଦ୍ଦେଶକ ପ୍ରଫେସର ମାନସ ରଞ୍ଜନ ପାତ୍ର ଏବଂ ଉତ୍କର୍ଷତା ନିମିତ୍ତ ବିଶ୍ୱବ୍ୟାଙ୍କ ପ୍ରାୟୋଜିତ ବିଶ୍ୱବିଦ୍ୟାଳୟରେ ଓଡ଼ିଶା ଉଚ୍ଚଶିକ୍ଷା କାର୍ଯ୍ୟକ୍ରମର ସଞ୍ଚାଳକ ପ୍ରଫେସର ସୁବାସଚନ୍ଦ୍ର ପରିଡ଼ା



୨୧ ଦିନିଆ ଶିକ୍ଷକ ପ୍ରଶିକ୍ଷଣ କାର୍ଯ୍ୟକ୍ରମର ଉଦ୍‌ଯାପନ ଅବସରରେ ଉପସ୍ଥିତ କୁଳପତି ପ୍ରଫେସର ରାଜେନ୍ଦ୍ରପ୍ରସାଦ ଦାସ, ବିଷୟ ବିଶେଷଜ୍ଞ ଏବଂ କର୍ମକର୍ତ୍ତାଙ୍କ ସମେତ ଏଥିରେ ଯୋଗ ଦେଇଥିବା ପ୍ରଶିକ୍ଷାର୍ଥୀ ଶିକ୍ଷକବୃନ୍ଦ




ବିଭାଗ ପରିଦର୍ଶନ ଅବସରରେ ଶାନ୍ତିନିକେତନର ଦୁଇ ବରିଷ୍ଠ ପ୍ରଫେସର ଡ. ଗିରିବାଳା ମହାନ୍ତି ଓ ଡ. କଇଳାସ ପଟ୍ଟନାୟକଙ୍କର ବିଭାଗର ଛାତ୍ରଛାତ୍ରୀମାନଙ୍କୁ ଉଦ୍‌ବୋଧନ



୨୦୧୮ ମସିହା ସେପ୍ଟେମ୍ବର ମାସରେ ବିଭାଗର ଗବେଷକ ଗବେଷିକା ବିଶ୍ୱଭାରତୀ, ଶାନ୍ତିନିକେତନକୁ ଶିକ୍ଷା ପରିଭ୍ରମଣ ଅବସରରେ ସ୍ନାତକୋତ୍ତର ଓଡ଼ିଆ ବିଭାଗ, ବିଶ୍ୱଭାରତୀ ପକ୍ଷରୁ ଆୟୋଜିତ ଏକ ସାଂସ୍କୃତିକ ଭାବ ବିନିମୟ କାର୍ଯ୍ୟକ୍ରମ



ବିଭାଗ ପକ୍ଷରୁ ଆୟୋଜିତ ଜାତୀୟ ଆଲୋଚନାଚକ୍ର ଅବସରରେ ଉପସ୍ଥିତ ନିମନ୍ତ୍ରିତ ଅତିଥିବୃନ୍ଦ



ବିଭାଗ ପକ୍ଷରୁ ଆୟୋଜିତ ଜାତୀୟ ଆଲୋଚନଚକ୍ର ଅବସରରେ
ଛାତ୍ରଛାତ୍ରୀଙ୍କ ଦ୍ୱାରା ପରିବେଷିତ ଆଦିବାସୀ ନୃତ୍ୟ ଓ ସଙ୍ଗୀତ



ବିଭାଗ ପକ୍ଷରୁ ଆୟୋଜିତ ପ୍ରଫେସର କୁଞ୍ଜବିହାରୀ ତ୍ରିପାଠୀ ସ୍ମାରକୀ ବକ୍ତୃତା ପ୍ରଦାନ
ଅବସରରେ ଅତିଥିଦ୍ୱୟ ପ୍ରଫେସର ପ୍ରକାଶଚନ୍ଦ୍ର ପଟ୍ଟନାୟକ ଓ ପ୍ରଫେସର ନାରାୟଣ
ସାହୁଙ୍କୁ କୁଳପତି ପ୍ରଫେସର ରାଜେନ୍ଦ୍ରପ୍ରସାଦ ଦାସଙ୍କ ଦ୍ୱାରା ସମ୍ବର୍ଦ୍ଧନା ପ୍ରଦାନ




ବିଭାଗ ଆନୁକୂଲ୍ୟରେ ୨୦୧୪-୧୫ ଶିକ୍ଷାବର୍ଷରେ ନୂତନ ଭାବେ ପ୍ରତିଷ୍ଠା ହୋଇଥିବା
'ଦକ୍ଷିଣ ଓଡ଼ିଶା ସାଂସ୍କୃତିକ ଗବେଷଣା କେନ୍ଦ୍ର'ର ଦ୍ୱିତଳ ପ୍ରାସାଦ ବିଶିଷ୍ଟ ଶିକ୍ଷା ସଦନ

# ବିଷୟସୂଚୀ

●

# ସୁବର୍ଣ୍ଣ ଜୟନ୍ତୀର ଅନୁଚିନ୍ତା...

ପ୍ରଫେସର ରାଜେନ୍ଦ୍ର ପ୍ରସାଦ ଦାସ

ଗୋଟିଏ ଜାତିର ଭିତ୍ତି ହେଉଛି ଏହାର ସଂସ୍କୃତି । ସଂସ୍କୃତି ଚିର ପ୍ରବହମାନ । ନଦୀର ଜଳରାଶି ପ୍ରବାହିତ ହୋଇ ସମୁଦ୍ରବକ୍ଷକୁ ସ୍ଫୀତ ଓ ପୁଲକିତ କରିବା ପରି ସଂସ୍କୃତି କେଉଁ ଆବହମାନ କାଳରୁ ପ୍ରବାହିତ ହୋଇ ଆମ ସମାଜକୁ ଉନ୍ନତ, ମାର୍ଜିତ ଏବଂ ମହିମାନ୍ୱିତ କରିଥାଏ । ଦକ୍ଷିଣ ଓଡ଼ିଶାର ସାଂସ୍କୃତିକ ରାଜଧାନୀ ବ୍ରହ୍ମପୁରଠାରେ ଏକ ମାଙ୍ଗଳିକ ମୁହୂର୍ତ୍ତରେ ୧୯୬୭ ମସିହା ଜାନୁଆରୀ ୨ ତାରିଖରେ ଓଡ଼ିଶାର ତତ୍କାଳୀନ ଶିକ୍ଷାବିତ୍, ବୁଦ୍ଧିଜୀବୀ ଏବଂ ସଂସ୍କୃତିସଂପନ୍ନ ବ୍ୟକ୍ତିତ୍ୱଙ୍କ ଅଦମ୍ୟ ପ୍ରଚେଷ୍ଟା ଫଳରେ ପ୍ରତିଷ୍ଠା ହୋଇଥିଲା ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ । ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠାର ଦ୍ୱିତୀୟ ବର୍ଷ ଅର୍ଥାତ୍ ୧୯୬୮ ମସିହାରେ ତତ୍କାଳୀନ କୁଳପତି ତଥା ବିଶିଷ୍ଟ ପ୍ରଶାସକ ଶ୍ରୀ ରଘୁନାଥପ୍ରସାଦ ପାଢ଼ୀଙ୍କ ପ୍ରଚେଷ୍ଟା ଫଳରେ ସମଗ୍ର ଓଡ଼ିଶାରେ ବିଶ୍ୱବିଦ୍ୟାଳୟ ସ୍ତରରେ ପ୍ରଥମେ ସ୍ନାତକୋତ୍ତର ଓଡ଼ିଆ ବିଭାଗ ପ୍ରତିଷ୍ଠା ହୋଇ ବିଶ୍ୱବିଦ୍ୟାଳୟ ଇତିହାସରେ ଏକ ମଧୁସ୍ରାବୀ ଧାରା ଯୋଗ କରିଛି । ଏହି ବିଭାଗର ପ୍ରଥମ ମୁଖ୍ୟ ଥିଲେ ବିଶିଷ୍ଟ ପଣ୍ଡିତ ଓ ଭାଷାବିତ୍ ପୁଣ୍ୟାତ୍ମା ପ୍ରଫେସର କୁଞ୍ଜବିହାରୀ ତ୍ରିପାଠୀ । ଉଭୟଙ୍କୁ ମୁଁ ଏହି ଅବସରରେ ଶ୍ରଦ୍ଧା ଓ ସମ୍ମାନର ସହିତ ସ୍ମରଣ କରୁଛି । ଦକ୍ଷିଣ ଓଡ଼ିଶା ସମେତ ଅନ୍ୟାନ୍ୟ ଅଞ୍ଚଳର ଶିକ୍ଷା, ସାହିତ୍ୟ, ଗବେଷଣା ଓ ସମାଜ ବ୍ୟବସ୍ଥାକୁ ସମୃଦ୍ଧ କରିଥିବା ଏହି ବିଭାଗର ଅଗଣିତ ଛାତ୍ରଛାତ୍ରୀ, ଗବେଷକ ଗବେଷିକା ଏହି ବିଭାଗ ପାଇଁ ଗୁଣ୍ଡୁଚି ମୁଷାର ଭୂମିକା ନିର୍ବାହ କଲେ ମଧ୍ୟ ସମସ୍ତଙ୍କର ସକ୍ରିୟ ସହଯୋଗରେ ସ୍ନାତକୋତ୍ତର ଓଡ଼ିଆ ବିଭାଗ ତାହାର ଘୋଷଯାତ୍ରାର ପଚାଶ ବର୍ଷ ସଫଳତାର ସହିତ ଅତିକ୍ରାନ୍ତ କରିଛି । ବିଭାଗରେ ଯେଉଁ ପୁଣ୍ୟାତ୍ମାମାନେ ଶିକ୍ଷକତା କରି ସମଗ୍ର ଭାରତବର୍ଷରେ ଏହି ବିଭାଗର ଗୌରବ ବୃଦ୍ଧି କରିଛନ୍ତି, ଏହି ଅବସରରେ ମୁଁ ସମସ୍ତଙ୍କୁ ସ୍ମରଣ କରିବା ସହିତ ଏପରି ମହତ୍କାର୍ଯ୍ୟରେ ଅଧିକ ସହଯୋଗ କରିବା ପାଇଁ ସମସ୍ତଙ୍କୁ ନିବେଦନ କରୁଛି । ବିଶେଷ କରି ଦକ୍ଷିଣ ଓଡ଼ିଶାର ଲୋକକାହାଣୀ, ଲୋକଗୀତ, କିମ୍ବଦନ୍ତୀ, ଲୋକନାଟ୍ୟ ପରମ୍ପରା ଶିଉଳି ଲଗା ତୁଠପଥର ହୋଇ ରହିଯାଇଥିବା ବେଳେ ବିଭାଗର ଶିକ୍ଷକ ଓ ଗବେଷକମାନେ ସେସବୁକୁ ଲୋକଲୋଚନକୁ ଆଣିବାକୁ ପ୍ରୟାସ ଜାରି ରଖିଛନ୍ତି । ବିଭାଗର ସମୃଦ୍ଧ ପାଠାଗାର ଏବଂ ମ୍ୟୁଜିୟମ୍ ଦେଖି ମୁଁ ଅତ୍ୟନ୍ତ ଆନନ୍ଦ ଅନୁଭବ କରୁଛି । ସମସ୍ତଙ୍କ ପ୍ରଚେଷ୍ଟାରେ ଏହି ବିଭାଗରେ ଥିବା ତାଳପତ୍ର ପୋଥିଗୁଡ଼ିକର ପାଠୋଦ୍ଧାର ସହିତ ତହିଁରୁ ଅତୀତ ଭାରତର

ଆତ୍ମାକୁ ଆବିଷ୍କାର କରିବାକୁ ମୁଁ ମୋର କାର୍ଯ୍ୟକାଳ ମଧ୍ୟରେ ଚେଷ୍ଟା ଜାରି ରଖିଛି । ତାଳପତ୍ର ପୋଥିର ରଚନାକାରମାନଙ୍କୁ ଲୋକଲୋଚନକୁ ଆଣିବାକୁ ବିଭାଗର ଶିକ୍ଷକମାନଙ୍କୁ ବିଭିନ୍ନ ସମୟରେ ପ୍ରସ୍ତାବ ଦେଇଛି ।

ଆମ ବିଶ୍ୱବିଦ୍ୟାଳୟର ଏକମାତ୍ର ସ୍ନାତକୋତ୍ତର ଓଡ଼ିଆ ବିଭାଗକୁ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ ପକ୍ଷରୁ ସ୍ୱତନ୍ତ୍ର ଅନୁଦାନ ପ୍ରକଳ୍ପ ଦ୍ୱିତୀୟ ପର୍ଯ୍ୟାୟ (**SAP-II**)ର ମାନ୍ୟତା ମିଳିଛି । ବିଭାଗର ସମସ୍ତ ଶିକ୍ଷକ, କର୍ମଚାରୀ, ଗବେଷକ, ଛାତ୍ରଛାତ୍ରୀ ତଥା ସଂସ୍କୃତପ୍ରେମୀ ଜନସାଧାରଣଙ୍କ ସକ୍ରିୟ ସହଯୋଗରେ ଏହା ସମ୍ଭବ ହୋଇପାରିଛି । ଆଜି ବିଭାଗ ପଚାଶ ବର୍ଷରେ ପଦାର୍ପଣ କରି ଏହାର ସୁବର୍ଣ୍ଣ ସମ୍ବତ୍ସର ପାଳନ କରିବା ଅବସରରେ ବିଭାଗର ସୁବର୍ଣ୍ଣ ଜୟନ୍ତୀ ସ୍ମରଣିକା 'ଆକାଙ୍‌କ୍ଷା' ପ୍ରକାଶ କରୁଥିବା ଖୁବ୍ ଆନନ୍ଦର ବିଷୟ । ଏହି ସ୍ମରଣିକାରେ ବିଭାଗର ପଚାଶ ବର୍ଷର ଇତିହାସଠାରୁ ଏଠାରେ ଅଧ୍ୟୟନରତ ଛାତ୍ରଛାତ୍ରୀ, ଗବେଷକ ଏବଂ ଗବେଷଣାର ବିଷୟ ସହିତ ଅଧ୍ୟାପନା କରୁଥିବା ଶିକ୍ଷକମାନଙ୍କ ସମ୍ପର୍କିତ ତଥ୍ୟକୁ ଏକତ୍ର ଗ୍ରନ୍ଥନ କରିବାର ବ୍ୟବସ୍ଥା କରାଯାଇଛି । ସ୍ମରଣିକାଟି ସମସ୍ତଙ୍କ ପାଇଁ ଦିଗ୍‌ବାରେଣୀର ଭୂମିକା ନିର୍ବାହ କରିବ ବୋଲି ମୁଁ ଆଶା କରୁଛି ।

ବିଭାଗ ସୁବର୍ଣ୍ଣ ଜୟନ୍ତୀ ପାଳନ କରିବା ଅବସରରେ ବିଭାଗ ସହିତ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ ସଂପୃକ୍ତ ସମସ୍ତଙ୍କର ଶୁଭକାମନା କରୁଛି ।

ଜୟ ଭଞ୍ଜବିହାର । ବନ୍ଦେ ଉତ୍କଳ ଜନନୀ ।

●

*କୁଳପତି, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ*

# ଅନନ୍ତ ଅନ୍ୱେଷାର ମୁଗ୍ଧ ଇସ୍ତାହାର : ଜୟ ମୋ ଭଂଜବିହାର

ପ୍ରଫେସର ଦେବୀପ୍ରସନ୍ନ ପଟ୍ଟନାୟକ

"ସଂସ୍କୃତିର ଲୀଳା କଳାର ମେଖଳା, ଏ ମାଟି ମହିମାମୟ
ଜ୍ଞାନବିଜ୍ଞାନର ଅନ୍ୱେଷାରେ ବ୍ରତୀ, ଲକ୍ଷ୍ୟ ତା ବିଶ୍ୱବିଜୟ ।"

ବାସ୍ତବିକ ମୋ ପାଇଁ ଭଂଜବିହାରର ଏହାହିଁ ହେଉଛି ପରିଭାଷା । ଭଂଜବିହାର କହିଲେ ଏକ ଭୂଖଣ୍ଡ ମାତ୍ର ନୁହେଁ- ଏହା ହେଇଛି ଏକ ମଣିଷଗଢ଼ା ଏନ୍ତୁଡ଼ିଶାଳ । ଏଠି ତରୁଣ, ଅବୋଧ କିଛି ମଣିଷ ଆସନ୍ତି । ସେମାନଙ୍କ ପାଇଁ ଥାଏ ଅନେକ ରାସ୍ତା ଉନ୍ମୁକ୍ତ । ଠିକ୍ ମଣିଷମାନଙ୍କୁ ଠିକ୍ ଦିଗ୍‌ଦର୍ଶନ ଦିଏ ଏ ମାଟିରେ ଗଢ଼ି ଉଠିଥିବା ବିଭିନ୍ନ ପାଠ୍ୟ ପରିସର ଓ ପରିସରରେ ଚଳପ୍ରଚଳ ହେଉଥିବା ଶିକ୍ଷାବିତ୍‌ମାନେ । 'ଶ୍ରଦ୍ଧାବାନ୍ ଲଭତେ ଜ୍ଞାନ'- ଖାଲି ନିଷ୍ଠା ଥିଲେ ହେଲା ।

ଭଂଜବିହାର ଓ ଏହାର ଏକ ପ୍ରାଚୀନତମ ଅଂଶ ସ୍ନାତକୋତ୍ତର ଓଡ଼ିଆ ବିଭାଗ- ମୋ ପାଇଁ ଏକ ମୁକ୍ତିକ୍ଷେତ୍ର କହିଲେ ଅତ୍ୟୁକ୍ତି ହେବନାହିଁ । ଏଠାରେ ମୁଁ ପାଇଛି ଅନ୍ଧାରରୁ ମୁକ୍ତି, ଅଜ୍ଞାନରୁ ମୁକ୍ତି, ଏକାକୀତ୍ୱରୁ ମୁକ୍ତି । ଗୋଟିଏ ବିନ୍ଦୁରେ ଯେମିତି ଅଟକି ଯାଇଛି ଜୀବନ । ଦୀର୍ଘ ଚାରିଦଶନ୍ଧିରୁ ଊର୍ଦ୍ଧ୍ୱ କାଳ ଧରି ତରୁଣ ପ୍ରାଣର ଉଚ୍ଛ୍ୱାସ ଭିତରେ ବଣ୍ଟା ଚାଲିଛି ଅଶ୍ରୁ ଓ ଆନନ୍ଦ ।

୧୯୭୯ ମସିହା ଅଗଷ୍ଟ ମାସର ଏକ ବିହ୍ୱଳ ଲଗ୍ନରେ ପାଦ ଥାପିଥିଲି ସ୍ନାତକୋତ୍ତର ଓଡ଼ିଆ ବିଭାଗରେ । ଭୁଲରେ ସୁଦ୍ଧା ଭାବିନଥିଲି ଜୀବନର ସମସ୍ତ ସୌଭାଗ୍ୟ ଓ ସମ୍ଭାବନା ଏଠାରେ ହିଁ ସାକାର ରୂପ ନେବ । ବାସ୍ତବିକ ସଚେତନ ଓ ଚଳଚଞ୍ଚଳ ଭାବରେ ବିତିଥିବା ଜୀବନର ନବେଭାଗ ସମୟ ଏଠାରେ ହିଁ କଟିଛି । ଛାତ୍ର, ଗବେଷକ, ପ୍ରଶାସକ, ଶିକ୍ଷାବିତ୍- ସବୁକିଛି ପରିଚୟ ପାଇଛି ଏଠାରୁ । ହଜାର ହଜାର ଛାତ୍ରଛାତ୍ରୀଙ୍କ ନିବିଡ଼ତା, ଶହଶହ ଜ୍ଞାନୀଜନଙ୍କ ସହୃଦୟତା, ଅସୁମାରୀ ଅଭିଭାବକଙ୍କ ସ୍ୱୀକୃତି-ଧନ, ଜନ, ଗୋପ, ଲକ୍ଷ୍ମୀ, ସୌଭାଗ୍ୟ, ବିପର୍ଯ୍ୟୟ, ଈର୍ଷା, କୁତ୍ସା ଅକାତରେ ଅଜାଡ଼ି ହୋଇପଡ଼ିଛି । ଏକ ବିହ୍ୱଳ ମୁଦ୍ରାରେ ନୀରବରେ ଏସବୁକୁ ଲକ୍ଷ୍ୟ କରି ଚାଲିଛି କେବଳ- କେବେ ଖୋଜିନି ମୁକ୍ତିର ମାର୍ଗ ।

ଓଡ଼ିଆ ବିଭାଗର କୋଣକାନ୍ଥରେ 'ଯୁଗରୁଚି' ପୃଷ୍ଠାରୁ କେମିତି ଓ କେବେ ଆସି 'ବିଭୋର ବୋଧିସତ୍ତ୍ୱ' ପୃଷ୍ଠାରେ ଆଂକି ହୋଇଯାଇଛି; କେବେ ପୁଣି 'ଆଧୁନିକ ଓଡ଼ିଆ କବିତାର ଦିଗ ଓ ଦିଗନ୍ତ' ପାଠଚକ୍ର ପ୍ରବନ୍ଧ ଉପସ୍ଥାପନ କରୁକରୁ 'ଓଡ଼ିଆ ଉପନ୍ୟାସରେ ଲୋକାନୁଭୂତି' ଡି.ଲିଟ୍. ଗବେଷଣା ଗ୍ରନ୍ଥ ପ୍ରସ୍ତୁତ କରିଛି; ତାହା ବୁଝାଇ

କହିବା କାଠିକର ପାଠ । ସବୁବେଳେ ଅନୁଭବ କରିଛି ଏହା ନିୟତିର ବିଧାନ । ପୂର୍ବଜନ୍ମର ସ୍ୱୀକୃତ ଏବଂ ପିତାମାତାଙ୍କ ଆଶୀର୍ବାଦ ମତେ ଆପଣାଛାଏଁ ଗଢ଼ିଛି । ସଯତ୍ନ ପ୍ରୟାସ କେବେ ବି କରିନି କିଛି- ସବୁ ଘଟିଯାଇଛି ଆପେ ଆପେ ।

ଓଡ଼ିଆ ବିଭାଗ ମତେ ଦେଇଛି ପିତୃତୁଲ୍ୟ ଶିକ୍ଷକ ଓ ମାର୍ଗଦର୍ଶକ । ଏ ବିଭାଗ ମତେ ଦେଇଛି ଖ୍ୟାତି, ଯଶ, ବଂଚିବାର ଆନନ୍ଦ । ଆଜି ଅପ୍ରାପ୍ତି ଜନିତ କ୍ଳେଶ ନାହିଁ, ନାହିଁ ମଧ ପ୍ରାପ୍ତିର ଆନନ୍ଦ । ସବୁର ମୂଳରେ ରହିଛି ଓଡ଼ିଆ ବିଭାଗର ଅବଦାନ । ୧୯୮୩ ମସିହା ଜାନୁଆରୀ ୩୧ ତାରିଖ ଠାରୁ ଅଧ୍ୟାପନା ଜୀବନର ଆରମ୍ଭ । ପ୍ରଫେସର ସୁଦର୍ଶନ ଆଚାର୍ଯ୍ୟ ଓ ପ୍ରଫେସର ଶ୍ରୀନିବାସ ମିଶ୍ର ମୋର ଦୃଷ୍ଟିକୋଣକୁ କରିଛନ୍ତି ଶାଣିତ । ପ୍ରଫେସର କାହ୍ନୁଚରଣ ମିଶ୍ର, ପ୍ରଫେସର ବେଣୀମାଧବ ପାଢ଼ୀ- ମୋର ବ୍ୟକ୍ତିତ୍ୱକୁ କରିଛନ୍ତି ମାର୍ଜିତ । ପ୍ରଫେସର ଗଗନେନ୍ଦ୍ରନାଥ ଦାସ, ପ୍ରଫେସର ସୀତାରାମ ମହାପାତ୍ର- ମୋର ବଞ୍ଚିବାର ଧାରାକୁ କରିଛନ୍ତି ପ୍ରଭାବିତ । କର୍ମମୟ ଜୀବନରେ ଅଗ୍ରଜ ଅଶ୍ୱିନୀ କୁମାର ପଣ୍ଡା ଓ ବଂଧୁ ରାଧାଗୋବିନ୍ଦ ପାଢ଼ୀ ସହୃଦୟତାର ହାତ ବଢ଼ାଇଛନ୍ତି । ଆଞ୍ଚଳିକ ଗବେଷଣା କେନ୍ଦ୍ର, ସ୍ୱତନ୍ତ୍ର ଅନୁଦାନ ପ୍ରକଳ୍ପ, ଦକ୍ଷିଣ ଓଡ଼ିଶା ସାଂସ୍କୃତିକ ଗବେଷଣା କେନ୍ଦ୍ର ମାଧ୍ୟମରେ ଅନ୍ୱେଷାର ଧାରା ପ୍ରଲମ୍ବିତ ହୋଇଛି । ବିଭାଗମୁଖ୍ୟ, ୱାର୍ଡ଼େନ୍, ଡ଼ିନ୍, ସ୍ନାତକୋତ୍ତର ପରିଷଦର ଅଧ୍ୟକ୍ଷ, ଏକାଡ଼େମିକ୍ କାଉନ୍‌ସିଲ୍ ସଭ୍ୟ, ବୋର୍ଡ଼ ଅଫ୍ ଷ୍ଟଡ଼ିଜ୍‌ର ଅଧ୍ୟକ୍ଷ, ସିଣ୍ଡିକେଟ୍‌ର ସଭ୍ୟ, ଅନୁଦାନ ପ୍ରକଳ୍ପର ସଂଯୋଜକ, ସାଂସ୍କୃତିକ ଗବେଷଣାକେନ୍ଦ୍ରର ନିର୍ଦ୍ଦେଶକ, ବିଶ୍ୱବିଦ୍ୟାଳୟ ସୁବର୍ଣ୍ଣଜୟନ୍ତୀ ସମାରୋହର ମୁଖ୍ୟ ସଂଯୋଜକ ଇତ୍ୟାଦି ଇତ୍ୟାଦି ସମସ୍ତ ଜଂଜାଳ ଭିତରେ କିନ୍ତୁ ମୁଁ ଉପଭୋଗ କରିଛି ମୋର ଅଧ୍ୟାପନାର ମହକ । ପାଠ ପଢ଼ାଇଲାବେଳେ ସୀମିତ ଶ୍ରେଣୀକକ୍ଷରେ ବିହ୍ୱଳ ଛାତ୍ର/ଛାତ୍ରୀମାନଙ୍କ ମୁଗ୍ଧ ଆଖିପତାରେ ମୁଁ ଭାସିଛି । ପିକ୍‌ନିକ୍‌ର ସମ୍ମିଳିତ କାକଳି ଭିତରେ ହଜିଛି । ପୃଷ୍ଠା ପରେ ପୃଷ୍ଠା ଗବେଷଣା ସଂଶୋଧନ, କବିତା ଆଲୋଚନା ଆତ୍ମବିସ୍ମୃତ କରିଛି । ଚାରିଦଶନ୍ଧିର ସୁଦୀର୍ଘ ପଥ ଚାରୋଟି ମୁହୂର୍ତ୍ତ ଭଳି ମନେ ହୋଇଛି ।

ମୋ ଜୀବନ କହିଲେ ତ- ଓଡ଼ିଆ ବିଭାଗ ; ମହୋଦଧି କୂଳର ପବିତ୍ର ଜ୍ଞାନମନ୍ଦିରର ମୁଖଶାଳା ଭାବରେ ମୁଁ ଓଡ଼ିଆ ବିଭାଗକୁ ବୁଝିଥାଏ । ଏହି କୂଳସଂଗୀତ ରଚନା ବୋଧହୁଏ ମୋ ଜୀବନର ସର୍ବଶ୍ରେଷ୍ଠ ଉପଲବ୍ଧି । ଆଜି ଜୀବନର ଅପରାହ୍ଣରେ ଅପେକ୍ଷା ରହିଛି ପଞ୍ଚଦିବସୀୟ ଟେଷ୍ଟମ୍ୟାଚ୍‌ରୁ ଅବ୍ୟାହତି ନେଇ ଟ୍ୱେଣ୍ଟି-ଟ୍ୱେଣ୍ଟି ଖେଳିବା ପାଇଁ । ଜାଣେନା-ଈଶ୍ୱର ଆଗାମୀ ସମୟକୁ କେମିତି ଗଢ଼ିବେ । କିନ୍ତୁ ପୁଣ୍ୟାତ୍ମା କୁଂଜବିହାରୀ ତ୍ରିପାଠୀଙ୍କ ଆଦ୍ୟ ଓଁକାର ଧ୍ୱନି ମାଧ୍ୟମରେ ଆରମ୍ଭ ହୋଇଥିବା ଏହି ଓଡ଼ିଆ ବିଭାଗର ଅନୁରଣନ ଯେ, ଆଗାମୀ ସମୟରେ ମହାଶ୍ଲୋକର ମହିମା ନେଇ ପରିବ୍ୟାପ୍ତ ଓ ମହିମାବନ୍ତ ହେବ -ଏଥିରେ ସନ୍ଦେହ ନାହିଁ ।

●

*ଅଧ୍ୟକ୍ଷ, ସ୍ନାତକୋତ୍ତର ପରିଷଦ*

*ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ*

# ଭଞ୍ଜବିହାରରେ ଦଶଟି ବର୍ଷର ସ୍ମୃତି

ପ୍ରଫେସର ଶ୍ରୀନିବାସ ମିଶ୍ର

ଉଚ୍ଚଶିକ୍ଷା କ୍ଷେତ୍ରରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ମୋର ଶ୍ରେଷ୍ଠ କର୍ମସ୍ଥଳୀ । ୧୯୭୭ ଖ୍ରୀଷ୍ଟାବ୍ଦରୁ ୧୯୮୭ ପର୍ଯ୍ୟନ୍ତ ଦଶବର୍ଷ କାଳ ଭଞ୍ଜବିହାର ସ୍ଥିତ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଶିକ୍ଷାନୁଷ୍ଠାନ ମୋର କର୍ତ୍ତବ୍ୟ ସାଧନର କ୍ଷେତ୍ର । ଏଠାରେ ପ୍ରଥମ ପାଞ୍ଚବର୍ଷ ମୁଁ ସ୍ନାତକୋତ୍ତର ଓଡ଼ିଆ ବିଭାଗରେ ପ୍ରାଧ୍ୟାପକ ଓ ଶେଷ ପାଞ୍ଚବର୍ଷ କାଳ ପ୍ରଫେସର୍ ଓ ବିଭାଗ ମୁଖ୍ୟ ଭାବେ କର୍ତ୍ତବ୍ୟ ସମ୍ପାଦନ କରିଥିଲି । ୧୯୭୭ ଖ୍ରୀଷ୍ଟାବ୍ଦର ଶେଷ ଭାଗରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ଯୋଗଦେବା ପୂର୍ବରୁ ମୁଁ ଭୁବନେଶ୍ୱର ନଗରୀର ଲକ୍ଷ୍ମୀସାଗରଠାରେ ଭାରତ ସରକାରଙ୍କ ପୂର୍ବକ୍ଷେତ୍ରୀୟ ଭାଷାକେନ୍ଦ୍ରର ଅଧ୍ୟକ୍ଷ ଥିଲି । ସେଠାରେ ଓଡ଼ିଶା, ପଶ୍ଚିମବଙ୍ଗ ଓ ଆସାମ ପ୍ରଦେଶର ବିଦ୍ୟାଳୟର ଶିକ୍ଷକମାନଙ୍କ ନିମନ୍ତେ ସେମାନଙ୍କ ମାତୃଭାଷା ଅତିରିକ୍ତ ଅନ୍ୟ ଏକ ପ୍ରାନ୍ତୀୟ ଭାରତୀୟ ଭାଷା ଶିକ୍ଷା ଦିଆଯାଉଥିଲା । ଶିକ୍ଷା ସମାପ୍ତି ପରେ ସେମାନେ ନିଜ ଅଞ୍ଚଳକୁ ପ୍ରତ୍ୟାବର୍ତ୍ତନ କରି ସେଠା ବିଦ୍ୟାଳୟର ଛାତ୍ରଛାତ୍ରୀମାନଙ୍କୁ ଶିଖିଥିବା ନୂତନ ଭାଷା ଶିକ୍ଷା ଦେଉଥିଲେ । ଦେଶରେ ଆଞ୍ଚଳିକ ମନୋଭାବ ପରିହାର ପୂର୍ବକ ଜାତୀୟ ସଂହତିର ବିକାଶ ପ୍ରତି ଆଗ୍ରହ ସଞ୍ଚାର ଲକ୍ଷ୍ୟରେ କେନ୍ଦ୍ର ସରକାର ଭାରତୀୟ ଭାଷା ସମୂହର ଏକ କେନ୍ଦ୍ରୀୟ ପ୍ରତିଷ୍ଠାନ ମହୀଶୂରଠାରେ ପ୍ରତିଷ୍ଠା କରିଥିଲେ । ଏହାର ଶିରୋନାମା ଥିଲା 'ଭାରତୀୟ ଭାଷା ସମୂହର କେନ୍ଦ୍ରୀୟ ପ୍ରତିଷ୍ଠାନ' । ଭାଷା ବିଜ୍ଞାନ କ୍ଷେତ୍ରରେ ବିଦେଶରୁ ଅଧିକ ଜ୍ଞାନ ଆହରଣ ପୂର୍ବକ ପ୍ରବୀଣ ଓଡ଼ିଶା ଭାଷାବିତ୍ ଡ. ଦେବୀପ୍ରସନ୍ନ ପଟ୍ଟନାୟକ ମହୀଶୂରଠାରେ ପ୍ରତିଷ୍ଠିତ ଭାରତୀୟ ଭାଷା ସମୂହର କେନ୍ଦ୍ରୀୟ ସଂସ୍ଥାନର ମୁଖ୍ୟ ନିର୍ଦ୍ଦେଶକ ଥିଲେ । ଏହି ସଂସ୍ଥାନ ଅଧୀନରେ ଭୁବନେଶ୍ୱର ନଗରୀର ଲକ୍ଷ୍ମୀସାଗର ଠାରେ ପ୍ରତିଷ୍ଠିତ ପୂର୍ବକ୍ଷେତ୍ରୀୟ ଭାଷା କେନ୍ଦ୍ରରେ ପଶ୍ଚିମବଙ୍ଗ, ଆସାମ ଓ ଓଡ଼ିଶାରୁ ଆସିଥିବା ବିଦ୍ୟାଳୟର ଶିକ୍ଷକମାନଙ୍କୁ ସେମାନଙ୍କ ମାତୃଭାଷା ଅତିରିକ୍ତ ଅନ୍ୟ ଏକ ଭାଷାଶିକ୍ଷା ଦିଆ ହେଉଥିଲା । ଏହି ଇଚ୍ଛାଧୀନ ଭାଷା ମଧ୍ୟରେ ଥିଲା ଓଡ଼ିଆ, ବଙ୍ଗଳା ଓ ଅସମୀୟା । ଓଡ଼ିଆ ଭାଷାର ଶିକ୍ଷକମାନେ ଅସମୀୟା ଅଥବା ବଙ୍ଗଳା ଭାଷା ମଧ୍ୟରୁ ଗୋଟିକରେ ବ୍ୟୁତ୍ପତ୍ତି ଲାଭ ପ୍ରୟାସୀ ହେଉଥିଲେ । ଏହା ବ୍ୟତୀତ ଭାରତୀୟ ଭାଷାର ସମୁଚିତ ବିକାଶ ନିମନ୍ତେ କେନ୍ଦ୍ରୀୟ ଭାଷା ସଂସ୍ଥାନ ମହୀଶୂର

ଠାରେ ମଧ୍ୟ ପ୍ରତିଷ୍ଠିତ ହୋଇଥିଲା । ପୂର୍ବାଞ୍ଚଳ ଭାଷାକେନ୍ଦ୍ର ଭୁବନେଶ୍ୱର ଠାରେ ମୁଁ ପ୍ରାୟ ଦୁଇବର୍ଷରୁ ଅଧିକ କାଳ ଅଧ୍ୟକ୍ଷ ଭାବେ ପ୍ରାଶାସନିକ ଦାୟିତ୍ୱ ସମ୍ପାଦନ କରୁଥିଲି । ଏହା ପରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ଓଡ଼ିଆ ବିଭାଗରେ ପ୍ରାଧ୍ୟାପକ ପଦରେ ଯୋଗ ଦେଲି ।

ପୂର୍ବାଞ୍ଚଳ ଭାଷାକେନ୍ଦ୍ର ଭୁବନେଶ୍ୱର ଠାରେ ମୁଁ ଅଧ୍ୟକ୍ଷ ଥିଲାବେଳେ ସେଠାରେ ଓଡ଼ିଆ ଭାଷାର ପ୍ରଶିକ୍ଷକ ଥିଲେ ଡ. ଉମାଚରଣ ପୂଜାରୀ ଓ ଡ. ଅରବିନ୍ଦ ପଟ୍ଟନାୟକ । ସେମାନଙ୍କ ସମେତ ବଙ୍ଗଳା ଓ ଅସମୀୟା ଭାଷାର ଶିକ୍ଷକ, ଅଫିସର, କର୍ମଚାରୀ ଓ ଶିକ୍ଷାର୍ଥୀମାନଙ୍କ ବ୍ୟବହାର ଅତ୍ୟନ୍ତ ସୌଜନ୍ୟସୂଚକ ଥିଲା । ଏଠାରେ କର୍ମ କ୍ଷେତ୍ରର ଆବଶ୍ୟକତା ସ୍ୱରୂପ ରାଜଧାନୀ ନୂଆଦିଲ୍ଲୀ ଓ କେନ୍ଦ୍ରୀୟ ଅନୁଷ୍ଠାନର କର୍ମସ୍ଥଳୀ ମହୀଶୂରଠାରେ ମଧ୍ୟ ସମ୍ମେଳନରେ ମୋତେ ଯୋଗ ଦେବାକୁ ପଡୁଥିଲା । ଆସାମର ପାନବଜାର ମହିଳା ବିଦ୍ୟାଳୟ ପରିସରରେ ଏକ ପ୍ରଶିକ୍ଷଣ ଶିବିର ଓ ଜାତୀୟ ସଂହତି ସମ୍ମେଳନରେ ମଧ୍ୟ ମୋତେ ଯୋଗଦେବାକୁ ପଡ଼ିଥିଲା, ସେଠାରେ ଓଡ଼ିଆ ଓ ଅସମୀୟା ଛାତ୍ରମାନଙ୍କମଧ୍ୟରେ ଭାବ ବିନିମୟ ଓ ସୌହାର୍ଦ୍ଦ୍ୟ ବୃଦ୍ଧି ପାଇବାର ଅବକାଶ ମିଳିଥିଲା ।

ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ପ୍ରାଧ୍ୟାପକ ଭାବେ ମୁଁ ଯୋଗ ଦେବା କାଳରେ ଓଡ଼ିଆ ବିଭାଗର ପ୍ରଫେସର୍ ଓ ବିଭାଗ ମୁଖ୍ୟ ଥିଲେ ଡ. କାହ୍ନୁଚରଣ ମିଶ୍ର । ପୂର୍ବରୁ ରେଭେନ୍ସା କଲେଜରେ ମୁଁ ତାଙ୍କର ସହକର୍ମୀ ଥିଲି । ତାଙ୍କ ସଙ୍ଗକୁ ପ୍ରାଧ୍ୟାପକ ଥିଲେ ଡ. ବେଣୀମାଧବ ପାଢ଼ୀ । ସେ ଜଣେ ସଂସ୍କୃତିପ୍ରେମୀ ବିଜ୍ଞ ବ୍ୟକ୍ତି ଥିଲେ । ଏହା ଛଡ଼ା ଡ. ସୀତାରାମ ମହାପାତ୍ର ଓ ଡ. ସୁଦର୍ଶନ ଆଚାର୍ଯ୍ୟ ମଧ୍ୟ ବିଭାଗର ଅଧ୍ୟାପକ ଥିଲେ । ଏମାନେ ସମସ୍ତେ ଗବେଷକ, ସାହିତ୍ୟସେବୀ, ଜ୍ଞାନାନ୍ୱେଷୀ ଓ ଉତ୍ତମ ସ୍ୱଭାବ ସମ୍ପନ୍ନ ବ୍ୟକ୍ତି ଥିଲେ । ଡ. ସୁଦର୍ଶନ ଆଚାର୍ଯ୍ୟ ରେଭେନ୍ସା କଲେଜରେ ଏମ୍.ଏ. ଶ୍ରେଣୀରେ ମୋର ଛାତ୍ର ଥିଲେ । ତେଣୁ ଓଡ଼ିଆ ବିଭାଗରେ ପରିଚାଳନାଗତ ଶୃଙ୍ଖଳା ଓ ଶିକ୍ଷାଗତ ଗୌରବ ଆହରଣ ସହଜସାଧ୍ୟ ଥିଲା । ରେଭେନ୍ସା କଲେଜ ଓ ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟ ସ୍ନାତକୋତ୍ତର ଓଡ଼ିଆ ବିଭାଗରେ କର୍ମସାଧନ ହେତୁ ଦୀର୍ଘ କାଳରୁ ଶିକ୍ଷାଦାନ ଅଭିଜ୍ଞତା ମୋର ଥିଲା । ଡ. କାହ୍ନୁଚରଣ ମିଶ୍ରଙ୍କ ଅବସର ଗ୍ରହଣ ପରେ ମନୋନୟନ ସମିତି ଦ୍ୱାରା ପ୍ରଫେସର୍ ଓ ବିଭାଗ ମୁଖ୍ୟ ଭାବେ ମୁଁ ବିଭାଗର ଦାୟିତ୍ୱ ଗ୍ରହଣ କଲି । ବିଶ୍ୱବିଦ୍ୟାଳୟରେ ବିଭାଗ ମୁଖ୍ୟ ଏକ ଦାୟିତ୍ୱ ସମ୍ପନ୍ନ ପଦ । ଅଧ୍ୟାପନା ସାଙ୍ଗକୁ ଛାତ୍ରଛାତ୍ରୀମାନଙ୍କ ମଧ୍ୟରେ ଶୃଙ୍ଖଳା ରକ୍ଷା, ଅଧିକ ଜ୍ଞାନଲାଭ ନିମନ୍ତେ ଅଧ୍ୟୟନ ସ୍ପୃହାର ଅଭିବୃଦ୍ଧି ସାଧନ ଶିକ୍ଷକମାନଙ୍କର

ମୁଖ୍ୟ ଦାୟିତ୍ୱ । ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଅଧ୍ୟାପକ ଥିଲା ବେଳେ ମୁଁ କେନ୍ଦ୍ର ସାହିତ୍ୟ ଏକାଡ଼େମୀ, ପୂର୍ବାଞ୍ଚଳ ଭାଷାକେନ୍ଦ୍ରର ଓଡ଼ିଆ ଭାଷା ସମିତିର ପାଞ୍ଚ ବର୍ଷ ନିମନ୍ତେ ସଦସ୍ୟ ଥିଲି । ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ଅଧ୍ୟାପକ ଥିଲା ବେଳେ ମୁଁ କଲିକତାଠାରେ ଅବସ୍ଥିତ କେନ୍ଦ୍ର ସାହିତ୍ୟ ଏକାଡ଼େମୀର ଶାଖା ପୂର୍ବାଞ୍ଚଳ ଭାଷାକେନ୍ଦ୍ରରେ ପାଞ୍ଚବର୍ଷ ନିମନ୍ତେ ଭାଷା ସମିତିରେ ସଦସ୍ୟ ଥିଲି । ଉତ୍କଳ ବିଶ୍ୱବିଦ୍ୟାଳୟର ଇଂରାଜୀ ବିଭାଗର ପ୍ରଫେସର୍ ଯତୀନ୍ଦ୍ର ମୋହନ ମହାନ୍ତି ପାଞ୍ଚବର୍ଷ ନିମନ୍ତେ ଓଡ଼ିଆ ଭାଷା ସମିତିର ପରାମର୍ଶଦାତା କମିଟିର ଆବାହକ ଥିଲେ । ପାଞ୍ଚ ବର୍ଷ କାଳର ସକଳ ଅଧିବେଶନରେ ମୁଁ ଯୋଗ ଦେଇଥିଲି । କଲିକତାର ସଲ୍ଟଲେକ୍ ସିଟି ଠାରେ ସାହିତ୍ୟ ଏକାଡ଼େମୀର ସକଳ ଅଧିବେଶନ ଅନୁଷ୍ଠିତ ହୁଏ । ସେଠାରେ ଖଣ୍ଡେ ଦୁଇ ଖଣ୍ଡ ଓଡ଼ିଆ ବହିର ପାଣ୍ଡୁଲିପିର ସମୀକ୍ଷା ଦାୟିତ୍ୱ ମୋତେ ମଧ୍ୟ ଦିଆଯାଇଥିଲା । ମୁଁ ତାହା ଆଗ୍ରହ ସହ ସମ୍ପନ୍ନ କରିଥିଲି ।

ଭଞ୍ଜବିହାରରେ ନିଜ ବିଭାଗର ନିୟମିତ ଅଧ୍ୟାପନା ଓ ଏକାଡ଼େମିକ୍ ଦାୟିତ୍ୱ ନିର୍ବାହ ସାଙ୍ଗକୁ ଦେଶର ରାଜଧାନୀ ନୂଆଦିଲ୍ଲୀରେ ଅବସ୍ଥିତ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ, ସଂଘୀୟ ଲୋକସେବା ଆୟୋଗ, ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣର ରାଷ୍ଟ୍ରୀୟ ପ୍ରତିଷ୍ଠାନ ପ୍ରଭୃତିର ଏକାଡ଼େମିକ ଦାୟିତ୍ୱ । ପରୀକ୍ଷା ଖାତାଗୁଡ଼ିକର ମୂଲ୍ୟାଙ୍କନ, ଆବଶ୍ୟକ ପଦରେ ନିଯୁକ୍ତି ନିମନ୍ତେ ସାକ୍ଷାତ୍କାରରେ ଭାଗ ଗ୍ରହଣ ଓ ପରିଚାଳନା ପ୍ରଭୃତି ରାଷ୍ଟ୍ରୀୟ ଦାୟିତ୍ୱ ନିରପେକ୍ଷ ଭାବେ ସମ୍ପାଦନ ନିମନ୍ତେ ବର୍ଷରେ ଥରେ ଲେଖା ଉକ୍ତ ଗୁରୁତ୍ୱପୂର୍ଣ୍ଣ ଅନୁଷ୍ଠାନରେ ଯୋଗଦେବାକୁ ପଡୁଥିଲା । ଏହା ସାଙ୍ଗକୁ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗରେ ଓଡ଼ିଆ ଭାଷାର ଗବେଷକମାନଙ୍କ ନିଯୁକ୍ତି ନିମନ୍ତେ ସଂଘଟିତ ଉତ୍ତର ଖାତାଗୁଡ଼ିକର ମୂଲ୍ୟାଙ୍କନ ଦ୍ୱାରା ଯୋଗ୍ୟତାର ମାନ ନିର୍ଦ୍ଧାରଣ ନିମନ୍ତେ ପୁନା ବିଶ୍ୱବିଦ୍ୟାଳୟ ତୁଲ୍ୟ ପରୀକ୍ଷା କେନ୍ଦ୍ରରେ ମଧ୍ୟ ପରୀକ୍ଷା ଖାତାଗୁଡ଼ିକରେ ମୂଲ୍ୟାୟନ ନିମନ୍ତେ ଯୋଗ ଦେବାକୁ ପଡୁଥିଲା । ଏ ସକଳ କାର୍ଯ୍ୟ କେନ୍ଦ୍ର ସରକାରଙ୍କ ଅତ୍ୟନ୍ତ ଗୋପନୀୟ ଓ ଦାୟିତ୍ୱ ସମ୍ପନ୍ନ ପଦରେ ନିଯୁକ୍ତି ନିମନ୍ତେ ଅଭିପ୍ରେତ ଥିବାରୁ ଏହାକୁ ଗୁରୁତ୍ୱପୂର୍ଣ୍ଣ ନିଯୁକ୍ତି ରୂପେ ସାବଧାନତା ଓ ନ୍ୟାୟସମ୍ମତ ଭାବେ ସମ୍ପାଦନ କରିବାକୁ ପଡୁଥିଲା । ତେଣୁ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ, ସଂଘୀୟ ଲୋକସେବା ଆୟୋଗ, ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣର ସଂଘୀୟ ପରିଷଦ ଭଳି କେନ୍ଦ୍ରୀୟ ଅନୁଷ୍ଠାନ ସମୂହର ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ନିମନ୍ତେ ନିଯୁକ୍ତ ହୋଇଥିବାରୁ ଏହା ଯଥାବିଧି ସମ୍ପାଦନ କରିବାକୁ ହେଉଥିଲା ।

କର୍ମକ୍ଷେତ୍ରରୁ ଅବସର ଗ୍ରହଣ କଲା ପରେ କଲିକତାର ସଲ୍ଟଲେକ ସିଟିର ବିଧାନନଗର ଷ୍ଟାଡ଼ିୟମ ଠାରେ ପୂର୍ବାଞ୍ଚଳର ଓଡ଼ିଆ, ବଙ୍ଗଳା, ଅସମୀୟା, ମୈଥିଳୀ, ନେପାଳୀ ଭଳି ପ୍ରାୟ ସାତଗୋଟି ଆଞ୍ଚଳିକ ଭାଷାର ଏକ ଅନୁବାଦ କର୍ମଶାଳା ଅନୁଷ୍ଠିତ ହୋଇଥିଲା । ସାହିତ୍ୟ ଏକାଡ଼େମୀ ସଦାଶୟ ଭାବେ କର୍ମଶାଳାରେ ଯୋଗ ଦେଇ ଅଂଶଗ୍ରହଣ କରୁଥିବା ସାହିତ୍ୟିକମାନଙ୍କ ଅବସ୍ଥାନ, ଭୋଜନ, ଅନୁବାଦ କର୍ମକ୍ଷେତ୍ରକୁ ଗମନ ପ୍ରଭୃତିର ସୁବ୍ୟବସ୍ଥା କରିଥିଲେ । ଏହା ଥିଲା ଏକ ଉତ୍ତମ ଆତିଥେୟତା ତୁଲ୍ୟ । ଏହି କର୍ମଶାଳା ଅତ୍ୟନ୍ତ ଆକର୍ଷକ, ବିଭିନ୍ନ ଅଞ୍ଚଳର ଅନୁବାଦକମାନଙ୍କ ମଧ୍ୟରେ ପାରସ୍ପରିକ ଭାବ ବିନିମୟ ସହଜସାଧ୍ୟ ହୋଇଥିଲା । ଓଡ଼ିଆ ଭାଷାର ଏକମାତ୍ର ପ୍ରତିନିଧି ଭାବେ ମୁଁ ଏହି ସମ୍ମେଳନରେ ଭାଗ ଗ୍ରହଣ କରି ଅତ୍ୟନ୍ତ ଆନନ୍ଦିତ ଓ ଉପକୃତ ହୋଇଥିଲି ।

ସର୍ବଶେଷରେ ବିଶ୍ୱବିଦ୍ୟାଳୟର ଆଉ କେତେକ ଉଲ୍ଲେଖଯୋଗ୍ୟ ଘଟଣା ମନକୁ ଆସୁଛି । ମୁଁ ବିଶ୍ୱବିଦ୍ୟାଳୟର ସର୍ବୋଚ୍ଚ ପରିଚାଳନା ଅଧିଷ୍ଠାନ ସିଣ୍ଡିକେଟ୍‌ର ସଦସ୍ୟ ରୂପେ ମଧ୍ୟ ମନୋନୀତ ହୋଇଥିଲି । ଥରେ ବିଶ୍ୱବିଦ୍ୟାଳୟ କୁଳାଧିପତି ମହାମାନ୍ୟ ରାଜ୍ୟପାଳ ବିଶ୍ୱମ୍ଭରନାଥ ପାଣ୍ଡେ ବିଶ୍ୱବିଦ୍ୟାଳୟର ଏକ ଗୁରୁତ୍ୱପୂର୍ଣ୍ଣ ସମିତିରେ ଯୋଗଦେବାକୁ ଆସିଥିଲେ । ସେଠାରେ କାର୍ଯ୍ୟସମାପ୍ତି ପରେ ବିଶ୍ୱବିଦ୍ୟାଳୟ ଅତିଥି ନିବାସକୁ ଯିବା ପଥରେ ବିଶ୍ୱବିଦ୍ୟାଳୟର ଛାତ୍ରୀନିବାସର ଅନ୍ତେବାସିନୀମାନେ ତାଙ୍କୁ ଛାତ୍ରୀ ନିବାସକୁ ସାଦର ନିମନ୍ତ୍ରଣ କଲେ । ଛାତ୍ରୀନିବାସ ପ୍ରବେଶ ପଥ ଓ ପରିସରର ଏକ ମୁକ୍ତ ସ୍ଥାନରେ ତାଙ୍କ ସମ୍ବର୍ଦ୍ଧନା ନିମନ୍ତେ ପ୍ରସ୍ତୁତି ହୋଇଥିଲା । ସେଠାରେ ଆମ ସଂସ୍କୃତି ସମର୍ଥିତ ସୁସମ୍ମାନ ପ୍ରଦର୍ଶନ, ପୁଷ୍ପମାଲ୍ୟ ଅର୍ପଣ, ଧୂପଦୀପ ଦ୍ୱାରା ସମ୍ବର୍ଦ୍ଧନା ଜ୍ଞାପନର ବ୍ୟବସ୍ଥା ହୋଇଥିଲା । ଏଥିରେ ମହାମାନ୍ୟ ରାଜ୍ୟପାଳ ମୁଗ୍ଧ ହୋଇ ପ୍ରକାଶ କଲେ "କନ୍ୟାମାନଙ୍କ ଅତିଥି ଅଭିନନ୍ଦନ ଦ୍ୱାରା ମୁଁ ସମ୍ମୋହିତ । ଏହା ପରେ କିଛି ଖାଦ୍ୟ ବ୍ୟବସ୍ଥା ଅଛି କି ?" ଏହା ଏକ ବିସ୍ମୟକର ଇଚ୍ଛା ଓ ରାଜ୍ୟପାଳଙ୍କ ମୁଗ୍ଧ ମହାନୁଭବତାର ଅଭିବ୍ୟକ୍ତି । କିନ୍ତୁ ଏଭଳି ଇଚ୍ଛାର ପୂରଣ ଏକ ଅସମ୍ଭବ ବ୍ୟାପାର । କାରଣ ଯେ କୌଣସି ସ୍ଥାନରେ ରାଜ୍ୟପାଳଙ୍କ ଭୋଜନ ଏକ ନିଷିଦ୍ଧ ପରମ୍ପରା । ରାଜ୍ୟପାଳ ଅଭିନନ୍ଦନରେ ମୁଗ୍ଧ ହୋଇ ଅତିଥି ନିବାସକୁ ଆସିଲେ । ଏହା ପୂର୍ବରୁ ବିଶିଷ୍ଟ ମହିଳା ନେତ୍ରୀ ଓ ସମାଜସେବାରେ ନିପୁଣା ଶ୍ରୀମତୀ ରମାଦେବୀଙ୍କୁ ମଧ୍ୟ ଛାତ୍ରୀ ନିବାସରେ ସମାନ ସ୍ଥାନରେ ସମ୍ବର୍ଦ୍ଧନା ଦିଆଯାଇଥିଲା । ଏଗୁଡ଼ିକ ଲୌକିକ ପରମ୍ପରା ହେଲେ ମଧ୍ୟ ବିଧି ସମ୍ମତ ସମ୍ମାନ ପ୍ରଦର୍ଶନର ପରମ୍ପରା ଭାବେ ସ୍ୱୀକୃତ । ଏହା ଛାତ୍ରୀମାନଙ୍କୁ ଯଥେଷ୍ଟ ଆନନ୍ଦ ଓ ପ୍ରେରଣା ଦେଇଥିଲା ।

ଏହି ଭାବରେ ବିଶ୍ୱବିଦ୍ୟାଳୟରେ ବିଭିନ୍ନ ଦାୟିତ୍ୱ ମତେ ସମ୍ପାଦନ କରିବାକୁ ପଡିଥିଲା । ସନ୍ଧ୍ୟା କାଳରେ ପରିଚାଳିତ ଉଚ୍ଚ ସରକାରୀ ପ୍ରାଶାସନିକ ପଦ ନିମନ୍ତେ ପ୍ରସ୍ତୁତି ପାଇଁ ଏକ ସାନ୍ଧ୍ୟକାଳୀନ ଶିକ୍ଷାପ୍ରଦ ଅନୁଷ୍ଠାନରେ ମୁଁ ମଧ୍ୟ ପରିଚାଳକ ଥିଲି । ଏଠାରେ ଛାତ୍ରମାନଙ୍କୁ ପ୍ରାଶାସନିକ ପଦ ନିମନ୍ତେ ଯୋଗ୍ୟ ହେବାକୁ ପ୍ରଶିକ୍ଷଣ ଦିଆଯାଉଥିଲା ।

ଏ ପରିଣତ ବୟସରେ ଶେଷ ଶିକ୍ଷାଦାନୀ ପ୍ରତିଷ୍ଠାନ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ପ୍ରତି ମୋର ଯଥୋଚିତ ସମ୍ମାନ ଓ ଗଭୀର କୃତଜ୍ଞତା ଜ୍ଞାପନ କରୁଅଛି । ବିଶ୍ୱବିଦ୍ୟାଳୟ କର୍ମକର୍ତ୍ତାଙ୍କ ଉଦାର ଦୃଷ୍ଟି ବିଶ୍ୱବିଦ୍ୟାଳୟର କୃତିତ୍ୱ ଓ ସୁନାମ ବର୍ଦ୍ଧନରେ ସହାୟକ ହେଉ, ଏହା ମୋର କାମନା ।

●

*ପ୍ଲଟ୍ ନଂ-୨୧୨, ସହିଦନଗର*

*ଭୁବନେଶ୍ୱର-୭*

# ସ୍ମୃତିର ଭଞ୍ଜବିହାର

ପ୍ରଫେସର ଦାଶରଥି ଦାସ

ସ୍ମୃତି ଅତୀତର କଥା । ଅତୀତର କଥାକୁ ସରସ ସୁନ୍ଦର ଭାବରେ ଉପସ୍ଥାପନ କରିବାର ସାମର୍ଥ୍ୟ ଲେଖକର ନାହିଁ । ତେବେ ସ୍ମୃତିର ନିଜସ୍ୱ ସରସତା ଅଛି, ତାହା ଘଟନା ଦେହରୁ ଧୂଳିମଳି ଝାଡ଼ିନିଏ, ଚାରି ପାଖରେ ମୃତ ଜୀବିତ ବ୍ୟକ୍ତିଙ୍କ ସରସ ଭାବମୂର୍ତ୍ତି ଗଢ଼ିଦିଏ, ସ୍ମୃତିଲୋକରେ ଦେଶ କାଳ ପାତ୍ର ସବୁ ଉଜ୍ଜ୍ୱଳ ଓ ସୁନ୍ଦର ଦିଶନ୍ତି । ଝାଉଁ ବନାକୀର୍ଣ୍ଣ ଭଞ୍ଜବିହାର ସ୍ୱୟଂ ଏକ ସୁନ୍ଦର ସ୍ଥାନ । ପାଖରେ ଗୋପାଳପୁର ବେଳାଭୂମିରେ ସଦା ସମୁଦ୍ର ଉଦ୍‌ବେଳ, କ୍ୟାମ୍ପସ୍ ସୁସୃଷ୍ଟ ହର୍ମ୍ୟ ସମାକୁଳ । ସେଠାରେ ପହଞ୍ଚିଥିଲି ୧୯୮୭ ଖ୍ରୀଷ୍ଟାବ୍ଦ ଡିସେମ୍ବର ମାସରେ । ରହିଥିଲି ୮ବର୍ଷ ୭ମାସରୁ ଊର୍ଦ୍ଧ୍ୱ କାଳ । ସ୍କୁଲ୍, କଲେଜ୍ ଜୀବନରେ ଉପେନ୍ଦ୍ର ଭଞ୍ଜ, କବିସୂର୍ଯ୍ୟ ଓ ଗୋପାଳକୃଷ୍ଣ ଥିଲେ ମୋର ପ୍ରିୟ କବି । ସେମାନଙ୍କ ସମ୍ବନ୍ଧରେ ଲେଖିଥିଲି ବହି ଓ ପ୍ରବନ୍ଧ । ଗୋପୀନାଥ ନନ୍ଦଙ୍କ ପ୍ରତି ବି ଥିଲା ଗଭୀର ଭକ୍ତି ଓ ଅନୁରାଗ । ହୁଏତ ସେହିମାନଙ୍କ ଆଶୀର୍ବାଦରୁ ମୋତେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗର ପ୍ରଫେସର୍ ପଦବୀଟି ମିଳିଥିଲା ଶେଷ ପର୍ଯ୍ୟନ୍ତ । ଜୀବନ ବଡ଼ ବିଚିତ୍ର ନିଶ୍ଚୟ । ଲେଖକ ଯାହା ଚାହେଁ ତାହା ପ୍ରାୟ ପାଏ ନାହିଁ, ଯାହାକୁ ତାହାର ଆଶା ପାଏନି ତାହା ପାଇଥାଏ । ପ୍ରଫେସର୍ ସାକ୍ଷାତ୍‌କାର ସରିଥାଏ କେବେଠାରୁ । ସେକଥା ପ୍ରାୟ ସେ ଭୁଲି ସାରିଥାଏ । ଦିନେ ରେଭେନ୍ସା କଲେଜର ଓଡ଼ିଆ ବିଭାଗରେ ଉପସ୍ଥିତ ହେଲେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଡେପୁଟି ରେଜିଷ୍ଟ୍ରାର ଓ ଫାଇନାନ୍ସ ଅଫିସର ପ୍ରଫେସର୍ ନିଯୁକ୍ତି ପତ୍ରଟିଏ ଧରି । ଆଡ଼ମିନିଷ୍ଟ୍ରେଟର୍ ଏମ୍. ଯଶୋବନ୍ତ ରାଓଙ୍କର ନିର୍ଦ୍ଦେଶ - ଯଥାଶୀଘ୍ର ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗରେ ଯୋଗଦେବାକୁ ହେବ । ଯିବି କି ନଯିବି ଦ୍ୱନ୍ଦ୍ୱରେ ପଡ଼ିଥିଲି । ରେଭେନ୍ସା ପ୍ରିୟତମ କଲେଜ । ଲେଖକ ଜୀବନରେ ଯେବେ କିଛି ହୋଇଥାଏ, ତାହା ରେଭେନ୍ସାର ଶୁଭାଶୀର୍ବାଦ ନିଶ୍ଚୟ । ସେଠାରେ କିନ୍ତୁ ସଦା ବଦଳି ଭୟ । ଚାକିରି ଜୀବନର ଅବଶିଷ୍ଟ କାଳ ନିର୍ଦ୍ୱନ୍ଦ୍ୱରେ ଗୋଟିଏ ସ୍ଥାନରେ ରହି ହେବ । ପୁଣି ପ୍ରଫେସର୍ ପଦବୀରେ । ଯଥାଶୀଘ୍ର ଭଞ୍ଜବିହାରରେ ଉପସ୍ଥିତ ହେଲି, ପଦବୀଟି ଅଳଙ୍କୃତ କଲି । ଯାହା ଯେଉଁଠି ଯେତେବେଳେ ଘଟିବାର ଥାଏ, ତାହା ଅବଶ୍ୟ ଘଟେ ବୋଧହୁଏ । ଅଯାଚିତ ଆମନ୍ତ୍ରଣଟିକୁ ସସମ୍ମାନ ସ୍ୱୀକାର କରିବାକୁ ହେଲା ।

ଭଞ୍ଜଭୂମି ଓଡ଼ିଶାର ସାରସ୍ୱତ କେଳିସ୍ଥାନ । ଭଞ୍ଜବିହାର ଓଡ଼ିଆ ବିଭାଗର ତେଣୁ ସ୍ୱତନ୍ତ୍ର ସୌଭାଗ୍ୟ ବର୍ତ୍ତମାନ । ତାହାର ସେମିନାର୍ ଲାଇବ୍ରେରୀ ଓ ପୋଥିବିଭାଗ ବହୁ ଅମୂଲ୍ୟ ଦୁଷ୍ପ୍ରାପ୍ୟ ସମ୍ପଦରେ ଭରପୂର ଥାଏ, ସଂରକ୍ଷିତ ଥାଏ ନାନା ଦୁର୍ଲଭ ପତ୍ରପତ୍ରିକା ଓ ଦୁର୍ଲଭ ପୋଥିପତ୍ର । ଲେଖକ ପାଇଁ ଅପେକ୍ଷା କରିଥାଏ ବି ଉଷ୍ମ ଏକ ଆମନ୍ତ୍ରଣ । ମୁଖ୍ୟ ଥା'ନ୍ତି ଅନୁଜ ସ୍ଥାନୀୟ ଏକଦା ରେଭେନ୍ସାର ସତୀର୍ଥ ପ୍ରଫେସର୍ ଡକ୍ଟର୍ ସୁଦର୍ଶନ ଆଚାର୍ଯ୍ୟ । ଉଭୟ ସଂସ୍କୃତ ଓ ପ୍ରାଚୀନ ଓଡ଼ିଆ ସାହିତ୍ୟରେ ତାଙ୍କର ଅବଗାହନ ଥିଲା ବେଶ୍ ଗଭୀର । ମଣ୍ଡିଥା'ନ୍ତି ଭଞ୍ଜ ଚେୟାର୍ । ବିଭାଗରେ ଥା'ନ୍ତି ମିସ୍‌ନେରୀ ସାହିତ୍ୟ-ବିଶେଷଜ୍ଞ ରସାଳାପ ଦକ୍ଷ ପ୍ରାଧ୍ୟାପକ ଡକ୍ଟର୍ ସୀତାରାମ ମହାପାତ୍ର । ତାଙ୍କର ଉପସ୍ଥିତି ଯେ କୌଣସି ପରିସ୍ଥିତିକୁ ସରସ କରିଦେଇଥାଏ । ଆହୁରି ଥା'ନ୍ତି ତିନିଜଣ ଯୁବ-ଅଧ୍ୟାପକ ଡକ୍ଟର୍ ପୂର୍ଣ୍ଣଚନ୍ଦ୍ର ମିଶ୍ର, ଡକ୍ଟର୍ ଅଶ୍ୱିନୀ କୁମାର ପଣ୍ଡା ଓ ଡକ୍ଟର୍ ଦେବୀପ୍ରସନ୍ନ ପଟ୍ଟନାୟକ । ପୂର୍ଣ୍ଣବାବୁଙ୍କର ଉଭୟ ଭଞ୍ଜ ସାହିତ୍ୟ ଓ ଜଗନ୍ନାଥ-ସାହିତ୍ୟ ପ୍ରତି ସମାନୁରାଗ- ବହି ସଂଗ୍ରହ, ସଂରକ୍ଷଣ ଓ ସମ୍ପାଦନାରେ ରୁଚି ବ୍ୟସ୍ତ । ଡକ୍ଟର୍ ପଣ୍ଡା ଲୋକ ସାହିତ୍ୟ -ବିଶାରଦ ଓ ଡ. ପଟ୍ଟନାୟକ ଆଧୁନିକ ଉପନ୍ୟାସ ସାହିତ୍ୟ-ବିଚକ୍ଷଣ- ଉପନ୍ୟାସରେ ଫିମେଲ୍-ହିରୋ ସନ୍ଧାନ ତତ୍ପର । ଅଳ୍ପଦିନ ପରେ ବିଭାଗରେ ଉପସ୍ଥିତ ହୁଅନ୍ତି ଡ. ବାଉରୀବନ୍ଧୁ କର- ରେଭେନ୍ସାର ସହକର୍ମୀ ଓ ବନ୍ଧୁ । ବ୍ୟକ୍ତିଟି ଅସାମାନ୍ୟ ସ୍ମୃତିଶକ୍ତିଧର ଓ ଭାବାବେଗ ପ୍ରବଣ । ପ୍ରବନ୍ଧ ସାହିତ୍ୟ ତାଙ୍କର ପ୍ରଥମ ପ୍ରେମ । ମୁଖସ୍ଥ ଥାଏ ତାଙ୍କର ବିଶିଷ୍ଟ ପ୍ରାବନ୍ଧିକଙ୍କ ପ୍ରବନ୍ଧର ଅନେକାଂଶ । ଲେଖକର କାର୍ଯ୍ୟ କାଳ ଶେଷ ପରେ ବିଭାଗରେ ଯୋଗ ଦିଅନ୍ତି ଆଧୁନିକ ସାହିତ୍ୟ ଅଧ୍ୟାପନା ଦକ୍ଷ ଦୁଇ ଜଣ ଯୁବ ଅଧ୍ୟାପକ ଡ. ପ୍ରସନ୍ନ କୁମାର ସ୍ୱାଇଁ ଓ ଡ. କୃଷ୍ଣଚନ୍ଦ୍ର ପ୍ରଧାନ । ପରବର୍ତ୍ତୀ କାଳରେ ଯୋଗ ଦିଅନ୍ତି ଡ. ସଦାନନ୍ଦ ନାୟକ, ଡ. ଦେବୀପ୍ରସାଦ ଶତପଥୀ ଓ ଡ. ସମୀର ଭୋଇ । ସମସ୍ତେ ଉଦୀୟମାନ ଓ ପ୍ରତିଶ୍ରୁତି ସମ୍ପନ୍ନ । ବିଭାଗଟି ସହିତ ଆତ୍ମୀୟତା ସୂତ୍ରେ ଚିହ୍ନାଅଚିହ୍ନା ଏହି ସବୁ ନୂଆ ଅଧ୍ୟାପକମାନେ ଲେଖକର ଆତ୍ମୀୟ ହୋଇ ଉଠିଛନ୍ତି । ବିଭାଗର ଆଉ ତିନି ଜଣଙ୍କ ନାମୋଲ୍ଲେଖ ନକଲେ ଅଧ୍ୟାୟଟି ଅସମ୍ପୂର୍ଣ୍ଣ ରହିଯିବ- ସେମାନେ ହେଲେ କ୍ୟୁରେଟର୍ ଡ. ରାଧାଗୋବିନ୍ଦ ପାତ୍ରୀ, ବିଭାଗର ଦାୟିତ୍ୱରେ ଥିବା ଅଫିସର୍ ସୀମାଞ୍ଚଳ ପଣ୍ଡା ଓ ପୋଥି ବିଭାଗ ଦାୟିତ୍ୱରେ ଥିବା କର୍ମଚାରୀ ମନୋଜ ବାବୁ । ସମସ୍ତଙ୍କର ଶ୍ରେୟ ଓ ସୌହାର୍ଦ୍ଦ୍ୟ ପାଇଛି । ଶ୍ରଦ୍ଧା ଓ ସମ୍ମାନ ପାଇଛି । ଆଜି ପର୍ଯ୍ୟନ୍ତ ବି କାହାରି ସହିତ ସମ୍ପର୍କ ଛିନ୍ନ ହୋଇ ନାହିଁ । ଏକା ଡକ୍ଟର୍ ମହାପାତ୍ର ଆଜି ନାହାନ୍ତି । ସ୍ମୃତି ଜଗତରେ କିନ୍ତୁ ଏବେ ବି ବିଚରଣ କରିଥା'ନ୍ତି ସେ ପୂର୍ବ ପରି ।

ବିଭାଗରେ ଥିଲା ଏମ୍.ଫିଲ୍. ଓ ଏମ୍.ଏ. । ତିନୋଟି ଶ୍ରେଣୀ । ପ୍ରତିବର୍ଷ ନୂଆ ଛାତ୍ର ଆସି କଳ କୋଳାହଳରେ ବିଭାଗକୁ ପରିପୂର୍ଣ୍ଣ କରି ବିଦାୟ ଘେନନ୍ତି । ଅଧ୍ୟାପକ ଜଣା ପଡ଼ିଥା'ନ୍ତି କ୍ଲାସ୍‌ରେ । ସେମାନେ ଲେଖକକୁ କେମିତି ଗ୍ରହଣ କରିଥିଲେ, ସେ ତାହା ଜାଣେ ନାହିଁ । ସମ୍ପର୍କ କିନ୍ତୁ ଥିଲା ଘନିଷ୍ଠ ଓ ପ୍ରୀତିପୂର୍ଣ୍ଣ । ଛାତ୍ରଛାତ୍ରୀଙ୍କ ଭୟଭକ୍ତି, ଶ୍ରଦ୍ଧା ସମ୍ମାନ ଓ ସ୍ନେହସୌହାର୍ଦ୍ଦ୍ୟ ସବୁ ସୁଲଭ ଥିଲା । ବିଭାଗଟିର ସମୟନିଷ୍ଠା, ନିୟମନିଷ୍ଠା ଓ ନୈତିକତା ଅକ୍ଷୁଣ୍ଣ ଥିଲା । ଲେଖକ ଠାରୁ ଦୂରତ୍ୱ ଜଗି ଚଳୁଥିଲେ ଅନେକ । ଏମ୍.ଫିଲ୍. ଉପଲକ୍ଷେ ଡିସର୍ଟେସନ୍‌ର ତତ୍ତ୍ୱାବଧାନ ଉଦ୍ଦେଶ୍ୟରେ ଲେଖକ ପାଖକୁ ଆସିଥା'ନ୍ତି କ୍ୱଚିତ୍ କେହି, ପିଏଚ୍.ଡି ଡିଗ୍ରୀ ଉପଲକ୍ଷେ ଆସିବାର ପ୍ରଶ୍ନ ଉଠୁ ନଥିଲା । ତେବେ ଅସଦ୍ଭାବ ନଥିଲା କାହା ସହିତ କେଉଁ ଦିନ । ଯେଉଁଦିନ ଭଞ୍ଜବିହାର ଛାଡ଼ିଲି, ସେଦିନ ଅନେକ ଛାତ୍ର କ୍ୱାର୍ଟସକୁ ଆସି ବିଦାୟ ଦେଇଥିଲେ । କେତେଜଣ ବି ଆସି ଯାଇଥିଲେ କଟକ ଘର ପର୍ଯ୍ୟନ୍ତ । ଜିନିଷପତ୍ର ସହ । ନାମ ଭୁଲିଗଲିଣି ଅନେକଙ୍କର, କିନ୍ତୁ ମୁହଁ ନାଚୁଛି ସ୍ମୃତିରେ । ଦେଖାଦେଖି ହେଲେ କେବେ କେଉଁଠି ଆଭୂମ ପ୍ରଣାମଟି ମିଳେ ଅବଶ୍ୟ । ଏବେ ନିକଟରେ ଦିନେ ଭଞ୍ଜଭାରତୀ ସମ୍ମାନ ପ୍ରାପ୍ତି ଉପଲକ୍ଷେ ବ୍ରହ୍ମପୁର ଯାଇଥିଲି । ଗଞ୍ଜାମ କଳା ପରିଷଦରେ ଲେଖକକୁ ନୈତିକ ସମର୍ଥନ ଜଣାଇବାକୁ ଉପସ୍ଥିତ ଥିଲେ ତାହାର ଅର୍ଦ୍ଧ ଶତାଧିକ ପ୍ରିୟ ଛାତ୍ରଛାତ୍ରୀ । ସେମାନଙ୍କୁ ଦେଖି ଅତିଶୟ ପ୍ରୀତ ହୋଇଥିଲି । ଭଞ୍ଜଭାରତୀ ସମ୍ମାନ ଏକ ବିରଳ ପ୍ରାପ୍ତି । କଳିଙ୍ଗ ସାହିତ୍ୟ ସମାଜର ଅକୃପଣ ଆତିଥେୟତା ଓ ଅକୃତ୍ରିମ ଅଭ୍ୟର୍ଥନା ଜୀବନରେ ଭୁଲିବାର କଥା ନୁହେଁ; ଦୁଃଖର କଥା ଏଇଆ ଯେ, ମନେ ରଖିବା ପାଇଁ ଲେଖକ ହାତରେ ଆଉ ବେଶି ସମୟ ନାହିଁ ।

ବିଭାଗର ବିଦ୍ୟୋତ୍ସାହ ଓ କର୍ମୋତ୍ସାହ ପ୍ରଶଂସାର୍ହ ନିଶ୍ଚୟ । ସେମିନାର ଅନୁଷ୍ଠାନ ଓ ପ୍ରବନ୍ଧ ପାଠ ଥିଲା ସାପ୍ତାହିକ କାର୍ଯ୍ୟ । ବାର୍ଷିକ ସେମିନାର ମହାସମାରୋହରେ ଅନୁଷ୍ଠିତ ହୁଏ । ତାହାକୁ ପରିପୂର୍ଣ୍ଣ ବିଦ୍‌ବତ୍ତାରେ ଉଜ୍ଜ୍ୱଳ କରିଥା'ନ୍ତି ଆସି ଡ. ବେଣୀମାଧବ ପାଢ଼ୀ ଓ ସଚ୍ଚିଦାନନ୍ଦ ମିଶ୍ର । କେନ୍ଦ୍ର ସାହିତ୍ୟ ଏକାଡ଼େମୀ ଓ ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ୍ ଆନୁକୂଲ୍ୟରେ ଅନେକ ସେମିନାର ଅନୁଷ୍ଠିତ ହୋଇଛି । ଏକଦା ନୂଆ କବିଙ୍କ ସମ୍ମିଳନଟିଏ ଅନୁଷ୍ଠିତ ହୋଇଥିଲା କେନ୍ଦ୍ର ସାହିତ୍ୟ ଏକାଡ଼େମୀ ଓ ଓଡ଼ିଆ ବିଭାଗର ସମ୍ମିଳିତ ଉଦ୍ୟମରେ । ଓଡ଼ିଶାର ପ୍ରମୁଖ କବିଙ୍କ ସହିତ ସମ୍ମିଳିତ ହୋଇଥିଲେ ସାରା ଓଡ଼ିଶାର ପ୍ରତିଶ୍ରୁତି ସମ୍ପନ୍ନ ତରୁଣ କବିଏ । ସେମାନଙ୍କ ମଧ୍ୟରୁ ଏବେ ଅନେକ ଖ୍ୟାତକୀର୍ତ୍ତି ।

ଓଡ଼ିଆ ବିଭାଗ ସେଦିନ ଯେଉଁ ନିଚ୍ଛିଦ୍ର ଅକୃପଣ ସାହାଯ୍ୟ ଓ ସହଯୋଗ କରିଥିଲା, ତାହା ଅସାଧାରଣ । ବିଭାଗର ଅଭ୍ୟର୍ଥନା ଓ ଆତିଥେୟତା ଅନେକେ

ଭୁଲି ନାହାନ୍ତି । ଫକୀର ମୋହନ ସେନାପତିଙ୍କ ୧୫୦ତମ ଜନ୍ମବାର୍ଷିକୀ ଉପଲକ୍ଷେ ଅନୁଷ୍ଠିତ ସେମିନାର୍‌ର ଆଭିଜାତ୍ୟ ଏବେ ବି 'ସାରସ୍ୱତ ପରିକ୍ରମା' ପୃଷ୍ଠାରେ ଅଙ୍କିତ ରହିଛି । ବିଭାଗ ଆନୁକୂଲ୍ୟରେ ପ୍ରକାଶିତ ହୋଇଥିଲା 'ଅଭିନବ ଭଞ୍ଜ ଭାରତୀ'ର ଦୁଇଟି ସଂଖ୍ୟା । ଗୋଟିଏ ଶ୍ୟାମସୁନ୍ଦର ରାଜଗୁରୁ ବିଶେଷାଙ୍କ ଓ ଅନ୍ୟଟି ଗୋପୀନାଥ ନନ୍ଦ ବିଶେଷାଙ୍କ । ପ୍ରତିବର୍ଷ ଦୁଇଟି ସଂଖ୍ୟା ପ୍ରକାଶିତ ହୋଇଥା'ନ୍ତା- ଭଞ୍ଜଭୂମିର ବିଶିଷ୍ଟ ସାହିତ୍ୟିକଙ୍କ ବିଶେଷାଙ୍କ ଭାବରେ । ଭଞ୍ଜଭୂମିରେ ଏତେ ବିଶିଷ୍ଟ ସାହିତ୍ୟିକ ଭୂମିଷ୍ଠ ହୋଇଛନ୍ତି ଯେ, ଅନେକ ବର୍ଷ ଧରି ଭଞ୍ଜଭାରତୀର ବିଶେଷାଙ୍କ ସଚଳ ରହିପାରିଥା'ନ୍ତା । ତାହା ପୁନର୍ଜୀବିତ ହେବାର ଆଶା ହରାଇ ନାହିଁ ଲେଖକ । ପୂର୍ବୋକ୍ତ ଦୁଇଟି ବିଶେଷାଙ୍କକୁ ଅନେକ ସାହିତ୍ୟିକ ସାଇତି ରଖିଛନ୍ତି । ସେଥିପାଇଁ ଓଡ଼ିଆର ବହୁ ବିଶିଷ୍ଟ ସାହିତ୍ୟ ସମାଲୋଚକ ଲେଖା ଦେଇ ଓଡ଼ିଆ ବିଭାଗକୁ କୃତାର୍ଥ କରିଥିଲେ । ବିଭାଗର ବାର୍ଷିକ ପିକ୍‌ନିକ୍ କଥା ଲେଖକ ଭୁଲି ନାହିଁ । ଦକ୍ଷିଣାଞ୍ଚଳର ଗଣ୍ଡାହାତୀ, ତପ୍ତପାଣି, ପର୍ଶୁରାମ କୁଣ୍ଡ, ଘୋଡ଼ାହାଡ଼ ଉଦ୍ୟାନଖଣ୍ଡ ଓ ସୀମାଚଳ ଯାତ୍ରାର ଆନନ୍ଦ ଉତ୍ସାହ ମନେ ପଡ଼ିଲେ ଏବେ ବି ଭଲ ଲାଗେ । ଆହୁରି ଅଛି ବି ବିଭାଗର ମଧୁର ଭୋଜିଭାତ କଥା ।

ବିଶ୍ୱବିଦ୍ୟାଳୟର କୁଳପତି (ଭିସି)ଙ୍କ ପ୍ରତିଷ୍ଠା ଓ ପ୍ରତିପତ୍ତି ଗୋଟାଏ ନୂଆ ଅଭିଜ୍ଞତା । କଲେଜରେ ପ୍ରିନ୍ସିପାଲ, ବିଶ୍ୱବିଦ୍ୟାଳୟରେ କୁଳପତି । କୁଳପତି ମାତ୍ରେ ସୀମିତ ପରିସରରେ ଜଣେ ଜଣେ ଗଭର୍ଣ୍ଣର । ପ୍ରତିପତ୍ତି ଅଶେଷ । ଏମ୍. ଯଶୋବନ୍ତ ରାଓଙ୍କ ଅମଳରେ ଯାଇଥିଲି, ତାଙ୍କ ଅଖଣ୍ଡ ପ୍ରତିଷ୍ଠା ପ୍ରତିପତ୍ତି ଦେଖିଛି । ପରିବେଶ ଥିଲା ନିୟମନିଷ୍ଠ ଓ ଯଥାସମ୍ଭବ ଶାନ୍ତ ସମାହିତ । ତାଙ୍କର ଶେଷ ଦିନ କିନ୍ତୁ ସୁବିଧାଜନକ ନଥିଲା । ଲେଖକ ସମୟରେ ୩ ଜଣ ବିଶିଷ୍ଟ ବିଦ୍ୱାନ୍ ଗୋଟିକ ପରେ ଗୋଟିଏ କୁଳପତି ହୋଇ ଆସିଛନ୍ତି, ଡ. ବିଭୂତିଭୂଷଣ ଦେଓ, ଡ. ରେବତୀଚରଣ ଦାସ ଓ ଡ. ଏମ୍.କ୍ୟୁ.ଖାନ୍ । ଭିସି ଖୁସି ରହନ୍ତି କ୍ୱଚିତ୍ ବୋଧହୁଏ । ଆସିଲେ କେମିତି ୩ ବର୍ଷ  କଟାଇବେ, ସେହି ଚିନ୍ତାରେ ପ୍ରାୟ ମୁହ୍ୟମାନ ଥା'ନ୍ତି । ଶ୍ରଦ୍ଧା ସମ୍ମାନ ବିଶେଷ ମିଳେ ନାହିଁ ବୋଧହୁଏ । କାହାକୁ ପ୍ରାୟ ବିଦାୟ ସମ୍ବର୍ଦ୍ଧନା ମିଳେ ନାହିଁ । ଶକ୍ତି ଅଶେଷ, କାର୍ଯ୍ୟକ୍ଷମତା  କିନ୍ତୁ ବଡ଼ ସୀମିତ । କେହି ପ୍ରାୟ ସୁସ୍ଥ ବ୍ୟବସ୍ଥିତ ନଥା'ନ୍ତି । ମନେ ହେଲା ଭଦ୍ର, ସ୍ୱାଭିମାନୀ ନିରପେକ୍ଷ କେହି ବିଦ୍ୱାନ୍‌ଙ୍କୁ କୁଳପତି ପଦ ସାଜେ ନାହିଁ । କୁଳପତିଙ୍କ ସହିତ୍ ଦେଖା ହୁଏ କ୍ୱଚିତ୍ । ଡ. ବିଭୂତି ଭୂଷଣ ଦେଓ ଲେଖକ ପ୍ରତି ଥିଲେ ବଡ଼ ଅପ୍ରସନ୍ନ । ଡ. କୃଷ୍ଣଚରଣ ସାହୁ ଓଡ଼ିଆ ବିଭାଗରେ ଯୋଗ ଦେଇଥାନ୍ତି ଭିଜିଟିଙ୍ଗ୍ ପ୍ରଫେସର୍ ଭାବରେ । ଦୁର୍ଭାଗ୍ୟବଶତଃ ସେଦିନ ଲେଖକ ଥାଏ ମୁଖ୍ୟ ଦାୟିତ୍ୱରେ । ତାଙ୍କୁ ଭବ୍ୟ ଆଦର ଅଭ୍ୟର୍ଥନା ପରେ କ୍ଲାସ୍ ନେବେ

କି ନାହିଁ ବୋଲି ପଚାରି ଦେଇଥିଲା ଆନନ୍ଦରେ । ଅଧ୍ୟାପକର କ୍ଲାସ୍‌ରେ ଆନନ୍ଦ ଓ ଉତ୍ସାହ । ସେ ତାହାକୁ ଭୁଲ୍ ବୁଝିଲେ ଓ ତାଙ୍କ ଘନିଷ୍ଠ ବନ୍ଧୁ କୁଳପତିଙ୍କୁ କହିଦେଲେ । ଦୁହେଁ ମୋର ପ୍ରଣମ୍ୟ, ଅଥଚ ଭୁଲ ବୁଝାମଣା ହୋଇଗଲା ହଠାତ୍ । ତେଣୁ ପ୍ରଫେସର୍ ବିଭୂତି ଭୂଷଣ ଦେଓଙ୍କ ସହିତ ୩ ବର୍ଷରେ ୩ ଥର ଦେଖା ହୋଇଥିବ କି ନାହିଁ ସନ୍ଦେହ । ଦୁହେଁ ଚାଲିଗଲେଣି । ଦୁହିଁଙ୍କ କ୍ଷେତ୍ରରେ ଦୁହେଁ ଥିଲେ ଅସାମାନ୍ୟ ଅବଶ୍ୟ । ଅନ୍ୟମାନଙ୍କ ସହିତ ସଦ୍ଭାବ ଥିଲା । ମଝିରେ ଡକ୍ଟର୍ ହରିହର ଦାସ କୁଳପତି ପଦ ମଣ୍ଡନ କରିଥିଲେ । ଅଚିରେ, କିନ୍ତୁ ସ୍ୱଇଚ୍ଛାରେ ପଦତ୍ୟାଗ କରି ଚାଲିଗଲେ । ଡ. ଦାସ ସ୍ୱନାମଧନ୍ୟ ପ୍ରଫେସର୍ ଥିଲେ, ଥିଲେ ବି ଖ୍ୟାତନାମା ସାହିତ୍ୟିକ । ମହୋଦୟ ଲେଖକର ସାରସ୍ୱତ ବନ୍ଧୁ ।

ବିଶ୍ୱବିଦ୍ୟାଳୟରେ ପ୍ରାୟ ବିଦ୍ୱାନ୍‌ଙ୍କ ମେଳା ଦେଖାଯାଏ । ସବୁ ବିଭାଗରେ ଥା'ନ୍ତି କୃତବିଦ୍ୟ ବ୍ୟକ୍ତି । ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ଯୋଗ୍ୟ ଓ ଦକ୍ଷ ପ୍ରଫେସର୍‌ଙ୍କର ଅଭାବ ନଥିଲା । ଓଡ଼ିଆ ବିଭାଗ ପାଖରେ ଥିଲା ଇତିହାସ ବିଭାଗ, ଇଂରେଜି ବିଭାଗ, ରାଜନୀତି ବିଜ୍ଞାନ ବିଭାଗ, ଭାଷାବିଜ୍ଞାନ ବିଭାଗ ଓ ସାମ୍ବାଦିକତା ବିଭାଗ । ତେଣୁ ବହୁ ପ୍ରବୀଣ ଅଧ୍ୟାପକଙ୍କ ସହିତ ଦେଖା ସାକ୍ଷାତ ହେଉଥିଲା ପ୍ରତିଦିନ । ବିଦ୍ୱାନ୍ ସଙ୍ଗ କିଛି କମ୍ ସୌଭାଗ୍ୟର କଥା ନୁହେଁ । ବିଭିନ୍ନ ବିଭାଗର ବହୁ ବିଦ୍ୱାନ୍‌ଙ୍କ ସହିତ ଲେଖକର ସଂପ୍ରୀତି ଥିଲା । ତନ୍ମଧ୍ୟରୁ କେହି କେହି ଥିଲେ ଉଲ୍ଲେଖଯୋଗ୍ୟ । ଡ. ଗୋପାଳଚନ୍ଦ୍ର ରଥ, ଡ. ହରିହର ଦାସ, ଡ.ଦାଶରଥି ମିଶ୍ର, ଡ.ନିରଞ୍ଜନ ମହାନ୍ତି, ଡ. ଗଗନେନ୍ଦ୍ରନାଥ ଦାଶ, ଡ. ଧରଣୀଧର ସାହୁ, ଡ. ଏମ୍.ଏମ୍ ବେଗ୍, ଡ.ସୁରେନ୍ଦ୍ରନାଥ ମିଶ୍ର, ଡ. ସାରଦା ପ୍ରସାଦ ମହାନ୍ତି ଓ ଡ. ନାରାୟଣ ଚନ୍ଦ୍ର ଦାସଙ୍କ ସହିତ ଘନିଷ୍ଠତା ଥିଲା । ଅକାଳ ବିୟୋଗ ଘଟିଛି ଚାରି ଅନ୍ତରଙ୍ଗ ବନ୍ଧୁଙ୍କର । ସେମାନେ ହେଲେ-ନିରଞ୍ଜନ ମହାନ୍ତି, ଦାଶରଥି ମିଶ୍ର, ଏମ୍.ଏମ୍.ବେଗ୍ ଓ ସାରଦା ପ୍ରସାଦ ମହାନ୍ତି । ଭଲ ଲୋକଙ୍କୁ ଈଶ୍ୱର ଯଥାଶୀଘ୍ର ପାଖକୁ ନେଇଯା'ନ୍ତି ବୋଧହୁଏ । କାହାରି ସହିତ ଆତ୍ମୀୟତା ଭଙ୍ଗ ହୋଇ ନାହିଁ । ଆହୁରି ଅନେକ ଥିଲେ ବନ୍ଧୁ ଓ ପରାମର୍ଶଦାତା । ଭଞ୍ଜବିହାର ବାସ ପ୍ରୀତିକର ଥିଲା । ଶେଷ ପର୍ଯ୍ୟନ୍ତ ହରିଣପାର୍କର ସମ୍ମୁଖସ୍ଥ ପ୍ରଫେସର୍‌ଙ୍କ ଘରଟି ମୋତେ ମିଳିଥିଲା । ବେଳେବେଳେ ନାଗ, ଚିତି, ଝାଡ଼ଁ ଚିତି ଓ ରଣା ସାପ ତଥା ବଡ଼ ବଡ଼ କଙ୍କଡ଼ା ବିଛାଙ୍କ ସହିତ ପ୍ରାୟ ଭେଟ ହେଉଥିଲା ନିଶ୍ଚୟ । ତେବେ କେହି କେବେ କାହାକୁ ଆଘାତ କରନ୍ତି ନାହିଁ । ହରିଣ ଓ ସାପ ସମାନ ଦୂରତ୍ୱ ଜଗି ଚଳନ୍ତି । ପ୍ରେମ ଜଣାପଡ଼େ ବିରହରୁ । ବିରହରେ ପଡ଼ି ଝୁରିଲେ ବୁଝାଯାଏ ପ୍ରେମ ଥିଲା । ପ୍ରକୃତରେ ଭଞ୍ଜବିହାରକୁ ଝୁରିବାକୁ ପଡ଼େ । ତାହାକୁ ଭଲ ପାଇଥିଲା ସେଦିନ । ସେଠାରେ ଥିବା ବେଳେ ଉପେନ୍ଦ୍ର ଭଞ୍ଜଙ୍କ ସମ୍ବନ୍ଧରେ ବହିଟିଏ

ଲେଖିବାର ଯୋଜନା କରିଥିଲି, ଉଦ୍ୟମ ସଫଳ ହେଲା ନାହିଁ । ତେବେ ବ୍ୟର୍ଥ ହୋଇ ନାହିଁ, ଏବେ ଉପେନ୍ଦ୍ରଙ୍କର ଭଲ ଛାନ୍ଦ ଚଉପଦୀର ସଙ୍କଳନଟିଏ ପ୍ରସ୍ତୁତ କରିଛି ଓ ଦୀର୍ଘ ମୁଖବନ୍ଧଟିଏ ବି ଲେଖିଛି । ଯେବେ ତାହା ଭଞ୍ଜପ୍ରେମୀଙ୍କ ଶୁଭଦୃଷ୍ଟିରେ ପଡ଼େ, ତେବେ ଭଞ୍ଜବିହାର ବାସ ସାର୍ଥକ ହେବ । ଭଞ୍ଜବିହାରକୁ ଏବେ ଦିନେ ଯାଇଥିଲି, ଓଡ଼ିଆ ବିଭାଗର ପୂର୍ବ ସ୍ନେହ ଶ୍ରଦ୍ଧା ସମ୍ମାନ ଅତୁଟ ଅଛି ବୋଲି ଦେଖି ଅଭିଭୂତ ହେଲି । ଲିପିତତ୍ତ୍ୱ ସମ୍ବନ୍ଧରେ କ୍ଲାସ୍ ନେବାକୁ ହେଲା । କାମଟି ଥିଲା ବେଶ୍ ପରିଶ୍ରମ ସାଧ । ତେବେ ଶ୍ରମ ସାର୍ଥକ ହେଲା ନବନିର୍ମିତ ଦକ୍ଷିଣ ଓଡ଼ିଶାର ସାଂସ୍କୃତିକ ଗବେଷଣା କେନ୍ଦ୍ର ଦେଖି । ବେଣୀମାଧବ ପାଢ଼ୀ ସ୍ମୃତିକକ୍ଷ, ସତ୍ୟନାରାୟଣ ରାଜଗୁରୁ ସ୍ମୃତିକକ୍ଷ, ପଦ୍ମଶ୍ରୀ ଭଗବାନ ସାହୁ ସ୍ମୃତିକକ୍ଷ ଦର୍ଶନୀୟ କକ୍ଷ, ଓଡ଼ିଆ ବିଭାଗ ଝଲସୁଥିଲା ନୂଆ ରଙ୍ଗରାଗରେ ଓ ବିପୁଳ ଉତ୍ସାହ ଆନନ୍ଦରେ । ନିଜ ବିଭାଗର ଐଶ୍ୱର୍ଯ୍ୟ ଦେଖି କିଏ ପୁଣି କୃତାର୍ଥ ନ ହୁଏ ? ଭଲ ଲାଗିଥିଲା ସବୁ । ବିଭାଗଟିର ଉତ୍ତରୋତ୍ତର ଉନ୍ନତି କାମନା କରୁଛି, ଛାତ୍ର, ଅଧ୍ୟାପକ ଓ କର୍ମଚାରୀଙ୍କର କଲ୍ୟାଣ କାମନା କରୁଛି ମଧ୍ୟ । ୨୨ ବର୍ଷ ତଳେ ବିଭାଗରୁ ବିଦାୟ ଘେନିଥିଲି, ବିଦାୟ ସମ୍ବର୍ଦ୍ଧନାର ସମାରୋହ କଥା ମନେ ଅଛି । ଛାତ୍ର ଓ ଅଧ୍ୟାପକଙ୍କ ସମ୍ମିଳିତ ଉଦ୍ୟମରେ 'ଅଭିନନ୍ଦନ ଗ୍ରନ୍ଥ'ଟିଏ ପ୍ରକାଶ କରାଯାଇଥିଲା । ଅଙ୍ଗବସ୍ତ୍ର, ଉପହାର ଓ ଉପଢ଼ୌକନ ଦିଆଯାଇଥିଲା । ଏବେ ବି ସେହି ଅଭିନନ୍ଦନ ଗ୍ରନ୍ଥ, ଅଙ୍ଗବସ୍ତ୍ର ଓ ଉପଢ଼ୌକନ ସେମିତି ଅକ୍ଷୁଣ୍ଣ ଅଛି, ସ୍ମୃତି ବି ସେମିତି ଅକ୍ଷତ ଅଛି । ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗ ଜୀବନର ଏକ ଅବିଚ୍ଛେଦ୍ୟ ଅଙ୍ଗ ହୋଇ ଉଠିଛି, ଯାହା ବିସ୍ମୃତ ହେବାର ନୁହେଁ । ଓଡ଼ିଆ ବିଭାଗ ଭଲ ଥିଲେ, ଲେଖକ ଭଲରେ ରହିବ ।

•

*ଗୋଧୂଳି ଲେନ୍, ଦେଉଳସାହି,*

*ତୁଳସୀପୁର, କଟକ-୮*

# ତିରିଶି ବର୍ଷର ତିରିଶିଟି ବସନ୍ତ

ପ୍ରଫେସର ସୁଦର୍ଶନ ଆଚାର୍ଯ୍ୟ

୧୯୬୭ ମସିହା ଜାନୁଆରୀ ୨ ତାରିଖ । ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠା ଦିବସ । ଛାତ୍ର ସମାଜର ଆନ୍ଦୋଳନ ଏବଂ ଜନସାଧାରଣଙ୍କ ସମର୍ଥନ ଆଗରେ ମୁଣ୍ଡ ନୂଆଇଁ ସରକାର ସମ୍ବଲପୁର ସହିତ ଏଠାରେ ମଧ୍ୟ ଏକ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କରିବା ପାଇଁ ବାଧ୍ୟ ହୋଇଥିଲେ । ପ୍ରତିଷ୍ଠା ଦିବସ ଠାରୁ ମୁଁ ବିଶ୍ୱବିଦ୍ୟାଳୟ ସହିତ ଜଡ଼ିତ ହୋଇ ପଡ଼ିଥିଲି । ସେତେବେଳେ ମୁଁ ଖଲ୍ଲିକୋଟ ମହାବିଦ୍ୟାଳୟର ଜଣେ ଅଧ୍ୟାପକ । ଉତ୍କଳ ବିଶ୍ୱବିଦ୍ୟାଳୟର ଏକ ସମାବର୍ତ୍ତନ ଉତ୍ସବରେ ମୁଖ୍ୟ ଅତିଥି ରୂପେ ଯୋଗଦେଇଥିବା ମାନ୍ୟବର ରାଷ୍ଟ୍ରପତି ଓଡ଼ିଶାର ବିଶ୍ୱବିଦ୍ୟାଳୟରେ ଓଡ଼ିଆ ବିଭାଗ ନଥିବା ଯୋଗୁଁ କ୍ଷୋଭ ପ୍ରକାଶ କରିଥିଲେ । ବିଶେଷକରି ଉତ୍କଳ ବିଶ୍ୱବିଦ୍ୟାଳୟରେ । ପ୍ରକାଶଥାଉ କି, ସେତେବେଳେ କେବଳ ରେଭେନ୍‌ସା ମହାବିଦ୍ୟାଳୟରେ ସ୍ନାତକୋତ୍ତର ସ୍ତରରେ ଓଡ଼ିଆ ଭାଷା ଓ ସାହିତ୍ୟ ଅଧ୍ୟାପନାର ବ୍ୟବସ୍ଥା ଥିଲା । ଏହାର ପ୍ରତିକ୍ରିୟା ସ୍ୱରୂପ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ଆରମ୍ଭ ହେଲା ଓଡ଼ିଆ ବିଭାଗ । ୧୯୬୮ ମସିହାରେ ତତ୍କାଳୀନ ଦ୍ୱିତୀୟ କୁଳପତି ସ୍ୱର୍ଗତ ରଘୁନାଥ ପ୍ରସାଦ ପାଢ଼ୀ ଏହି ବିଭାଗର ଶୁଭ ଉଦ୍‌ଘାଟନ କଲେ । ଖଲ୍ଲିକୋଟ କଲେଜର ଦୁଇ ଜଣ ବରିଷ୍ଠ ଅଧ୍ୟାପକଙ୍କ ସହାୟତାରେ ଅଧ୍ୟାପନା ଚାଲିଲା । ଓଡ଼ିଆ ବିଭାଗରେ ମୋର ଯୋଗଦାନ ଅତ୍ୟନ୍ତ ଆକସ୍ମିକ । ସେ ସ୍ମୃତି ନିଶ୍ଚିତ ଭାବେ ଅଭୁଲା ।

ଓଡ଼ିଆ ବିଭାଗର ଜଣେ ପ୍ରଫେସର୍, ଜଣେ ରିଡ଼ର୍ ଏବଂ ଜଣେ ଅଧ୍ୟାପକ ପାଇଁ ବିଜ୍ଞାପନ ବାହାରିଥାଏ । ସେତେବେଳେ ବିଶ୍ୱବିଦ୍ୟାଳୟ କହିଲେ ସାଧାରଣ ଅଧ୍ୟାପକମାନଙ୍କ ପାଇଁ ଅପହଞ୍ଚ ମନେ ହେଉଥିଲା । ସେଥିପାଇଁ ଆବଦେନ କରିବାର ଚିନ୍ତା ହିଁ ମୋ ମନରେ ଜାଗ୍ରତ ହୋଇ ନଥିଲା । ଆବେଦନ କରିବାର ଶେଷ ତାରିଖର ଠିକ୍ ପୂର୍ବ ଦିନ ରାତିରେ ଆମେ କେତେ ଜଣ ବନ୍ଧୁ ହାତୀବନ୍ଧସାହିସ୍ଥିତ ମୋ ବସାରେ ରାତ୍ରି ଭୋଜନ ପାଇଁ ଏକତ୍ର ହୋଇଥାଉ । ଆମମାନଙ୍କ ଭିତରେ ଥିଲେ ଶ୍ରୀଯୁକ୍ତ ସୂର୍ଯ୍ୟନାରାୟଣ ଦାଶ, ଶ୍ରୀଯୁକ୍ତ ସୂର୍ଯ୍ୟନାରାୟଣ ମହାପାତ୍ର (ପରେ ଆଇ.ଏ.ଏସ୍.), ଶ୍ରୀଯୁକ୍ତ ପ୍ରଶାନ୍ତ ଚୌଧୁରୀ (ଚାର୍ଜ ଅଫିସର୍), ଡାକ୍ତର ରଘୁନାଥ ପ୍ରସାଦ ପାଢ଼ୀ, ବିଜୟ ବୁକ୍‌ଷ୍ଟୋର୍‌ର ମାଲିକ ଶ୍ରୀଯୁକ୍ତ ଭାସ୍କର ପାତ୍ର ଏବଂ ମୋର ମାଉସୀ ପୁଅ ଭାଇ ଉମେଶ ଚରଣ ପାଢ଼ୀ । ଖାଇବା ପର୍ବ ଶେଷ ହେଲା । ସୂର୍ଯ୍ୟବାବୁ କହିଲେ, ଉମା ଭାଇନା ଏବେ ଜ୍ୟୋତିଷ

ଚର୍ଚ୍ଚା କରୁଛନ୍ତି । ଭାଇନା ବୃତ୍ତିରେ ଜଣେ ଇଂଜିନିୟର୍ ହେଲେ ସୁଦ୍ଧା ବହୁ ବିଦ୍ୟାରେ ସେ ଧୂରୀଣ । ଉଭୟ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଜ୍ୟୋତିଷ ଶାସ୍ତ୍ର ଅଧ୍ୟୟନ ଓ ଗବେଷଣାରେ ସେ ଲାଗିଥାଏ । ଆଉ କାହାର ଜାତକ ନଥିବାରୁ ମୋ କୋଷ୍ଠି ଗଣନା ଆରମ୍ଭ ହେଲା । କ'ଣ ସବୁ ଗଣନା କରି ସେ କହିଲେ ଯେ ଅତି ନିକଟରେ ମୋର ପ୍ରମୋଶନ୍ ହେବ । ମୋତେ ହସ ମାଡ଼ିଲା । କହିଲି, "ଭାଇନା ତତେ ନିଦ ମାଡ଼ିଲାଣି । ଥାଉ ଆଉ କେତେବେଳେ ଦେଖିବା । ଖଲ୍ଲିକୋଟ କଲେଜରେ ପ୍ରମୋଶନ୍ କୁଆଡୁ ଆସିବ ? ଆମେ ତ ଅଧ୍ୟାପକ ଚାକିରି ଆରମ୍ଭ କରିଛୁ, ସେଇଥିରେ ହିଁ ଅବସର ନେବୁ ।" ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ କଥା ଉଠିଲା । ମୁଁ କହିଲି ଯେ, ବିଶ୍ୱବିଦ୍ୟାଳୟର ଦରମା ଅବଶ୍ୟ ଚାରିଶହ ଟଙ୍କା, ଖଲ୍ଲିକୋଟ କଲେଜରେ ଆମେ ପାଉଛୁ ଦୁଇଶହ ପଞ୍ଚଚାଳିଶ ଟଙ୍କା । ଭାଇନାର ମୁହଁ ଉଜ୍ଜ୍ୱଳ ଦିଶିଲା । ସେ କହିଲା, "ଏଇଟା ତ ଗୋଟେ ପ୍ରକାର ପ୍ରମୋଶନ, ତୁ ଏପ୍ଲାଏ କରିଛୁ । ମୁଁ ହସି ହସି କହିଲି, ବିଶ୍ୱବିଦ୍ୟାଳୟ କିଏ ମୁଁ କିଏ । ମୋ ଅପେକ୍ଷା ବହୁ ସିନିୟର୍ ଅଧ୍ୟାପକ ସେଥିପାଇଁ ଆବେଦନ କରିଥିବେ । କାଲି ତ ପୁଣି ଶେଷ ତାରିଖ, ସାତ କିତା ଆବେଦନ ପୁଣି ଦେବାକୁ ପଡ଼ିବ ।" ଭାଇନା ହାତ ବାଡ଼େଇ ଦୃଢ଼ ସ୍ୱରରେ କହିଲା, "କିଏ ସବୁ ଏପ୍ଲାଏ କରିଥିବେ ମୁଁ ଜାଣିନି, କିନ୍ତୁ ଦୁଇ ମାସ ଭିତରେ ଯଦି ଇଣ୍ଟରଭ୍ୟୁ ହୁଏ, ତେବେ ନିଜେ ବୃହସ୍ପତି ଆସିଲେ ବି ତୋତେ ହିଁ ସଫଳତା ମିଳିବ ।" ସମସ୍ତେ ମୋର ଚାକିରି ପାଇଁ ଯେତିକି ନୁହେଁ, ଭାଇନାକୁ ପରୀକ୍ଷା କରିବା ପାଇଁ ମୋତେ ଆବେଦନ କରିବା ପାଇଁ ବାଧ୍ୟ କଲେ । ପ୍ରଥମ ଚାରି ଜଣ ତ ପଦସ୍ଥ ସରକାରୀ କର୍ମଚାରୀ । ସମସ୍ତେ ଏକ ସ୍ୱରରେ କହିଲେ, "ତୁମ ସାର୍ଟିଫିକେଟ୍‌ଗୁଡ଼ାକ ବାହାର କର । ଆଉ ସକାଳୁ ଆପ୍ଲିକେଶନ୍ ଫର୍ମର ଗୋଟେ କପି ଆଣି ଆମକୁ ଦିଅ । ସଂଧ୍ୟା ଚାରିଟା ସୁଦ୍ଧା ଟାଇପ୍ ଏଟେଷ୍ଟେସନ୍ ସବୁ କାମ ସରିଯିବ ।" ପରଦିନ ସବୁ ଲାଗି ପଡ଼ିଲେ । ବିଶ୍ୱବିଦ୍ୟାଳୟର କର୍ମଚାରୀ ଶ୍ରୀଯୁକ୍ତ ପ୍ରଫୁଲ୍ଲ ରାଉତ ଆବେଦନପତ୍ର ଗ୍ରହଣ କରିବାର ଦାୟିତ୍ୱରେ ଥାଆନ୍ତି । ପୂର୍ବରୁ ବିଶ୍ୱବିଦ୍ୟାଳୟ ପାଠାଗାର ପାଇଁ ଆମେ କାମ କରୁଥିଲୁ । ତାଙ୍କୁ ଯାଇ ଅନୁରୋଧ କଲି, ମୁଁ ନ ଆସିବା ଯାଏ ସେ ଅଫିସ୍ ଛାଡ଼ି ଯିବେ ନାହିଁ । ମୁଁ ତାଙ୍କ ନିକଟରେ କୃତଜ୍ଞ । ସେ ମୋତେ ଅପେକ୍ଷା କରିଥା'ନ୍ତି । ବୋଧହୁଏ ମୁଁ ସନ୍ଧ୍ୟା ବେଳେ ନେଇ ଆବେଦନ ପତ୍ରଗୁଡ଼ିକ ଦେଇଥିଲି । ଏ ତ ଗଲା ବିଶ୍ୱବିଦ୍ୟାଳୟକୁ ଯିବାର ପ୍ରଥମ ପର୍ବ । ଦ୍ୱିତୀୟ ପର୍ବ ସାକ୍ଷାତ୍‌କାର ।

୧୯୬୮ ମସିହା ଡିସେମ୍ବର ମାସର ମଧ୍ୟ ଭାଗରେ ତିନୋଟି ଯାକ ପଦବୀ ପାଇଁ ସାକ୍ଷାତକାର ନିଆଗଲା । ପ୍ରଫେସର୍ ପାଇଁ ଥିଲେ ଦୁଇ ଜଣ ପ୍ରତିଯୋଗୀ, ଡକ୍ଟର୍

କୁଞ୍ଜବିହାରୀ ତ୍ରିପାଠୀ ଓ ଡକ୍ଟର୍ କୁଞ୍ଜବିହାରୀ ଦାଶ । ରିଡ଼ର ପାଇଁ ବୋଧହୁଏ ପାଞ୍ଚ ଜଣ ଏବଂ ଅଧ୍ୟାପକ ପାଇଁ ଏକୋଇଶି ଜଣ । ଦୁଇଜଣ ଯାକ ବରିଷ୍ଠ ଅଧ୍ୟାପକ ପ୍ରଫେସର୍ ପଦବୀ ପାଇଁ ଆବେଦନ କରିଥିବା ଯୋଗୁଁ ସେମାନଙ୍କ ସାକ୍ଷାତ୍କାର ନେବା ପାଇଁ ଓଡ଼ିଆ ବିଭାଗରେ ଆଉ କିଏ ନଥିଲେ । ତେଣୁ ସାକ୍ଷାତ୍କାର ନେବା ପାଇଁ ଆସିଥା'ନ୍ତି ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରଥମ କୁଳପତି ପ୍ରବୀଣ ବୈଜ୍ଞାନିକ ଡକ୍ଟର୍ ପ୍ରାଣକୃଷ୍ଣ ପରିଜା, ପାଲି-ପ୍ରାକୃତ ଓ ସଂସ୍କୃତ ସାହିତ୍ୟର ସ୍ୱନାମଧନ୍ୟ ପ୍ରଫେସର୍ ଶ୍ରୀଯୁକ୍ତ ପ୍ରହ୍ଲାଦ ପ୍ରଧାନ ଏବଂ ଅନ୍ୟ ଜଣେ ସ୍ୱନାମଧନ୍ୟ ବହୁଶାସ୍ତ୍ରଦର୍ଶୀ ପଣ୍ଡିତ ଅନନ୍ତ ତ୍ରିପାଠୀ ଶର୍ମା । ଏମାନଙ୍କ ସହିତ ବସିଥା'ନ୍ତି କୁଳପତି ଶ୍ରୀଯୁକ୍ତ ରଘୁନାଥ ପ୍ରସାଦ ପାଢ଼ୀ, ରେଜିଷ୍ଟ୍ରାର୍ ଶ୍ରୀଯୁକ୍ତ ଗୋରାଚାନ୍ଦ ରଥ, ଶିକ୍ଷା ନିର୍ଦ୍ଦେଶକ ଶ୍ରୀଯୁକ୍ତ ବିଧୁଭୂଷଣ ଦାସ ଏବଂ ସିଣ୍ଡିକେଟ୍ ସଭ୍ୟ ଶ୍ରୀଯୁକ୍ତ ଦେବରାଜ ପାଣିଗ୍ରାହୀ । ସକାଳବେଳା ପ୍ରଫେସର୍ ପାଇଁ ଦୁଇ ଜଣଙ୍କର ସାକ୍ଷାତ୍କାର ନିଆଗଲା । ପ୍ରତ୍ୟେକଙ୍କ ପାଇଁ ଘଣ୍ଟାଏରୁ ଦେଢ଼ ଘଣ୍ଟା । ଉପରବେଳା ପାଞ୍ଚଜଣ ରିଡ଼ର ପ୍ରତ୍ୟେକଙ୍କ ପାଇଁ ଘଣ୍ଟାଏ । ସନ୍ଧ୍ୟାବେଳକୁ ଆମର ପାଳି । ପ୍ରତ୍ୟେକଙ୍କ ପାଇଁ ଅଧଘଣ୍ଟାଏରୁ ପଇଁଚାଳିଶ ମିନଟ୍ । ମୋ ନାଁର ପ୍ରଥମ ଅକ୍ଷର 'ଏସ୍' ଥିବା ଯୋଗୁଁ ମୋ ପାଳି ପଡ଼ିଲା ରାତି ପ୍ରାୟ ସାଢ଼େ ଏଗାର କି ବାର ବେଳେ । ମାନ୍ୟବର କୁଳପତିଙ୍କୁ ଅଶେଷ ଧନ୍ୟବାଦ ! ପ୍ରାୟ ପ୍ରତି ଘଣ୍ଟାରେ ପ୍ରତ୍ୟେକ ପ୍ରତିଯୋଗୀଙ୍କୁ କପେ ଗରମ କଫି ଓ ଦୁଇଖଣ୍ଡ ବିସ୍କୁଟ୍ ଦିଆଯାଉଥାଏ । ଡିସେମ୍ବର୍ ମାସର ଶୀତ ରାତି । ରାତି ନଅଟା ପରେ ବ୍ରହ୍ମପୁରର ରାସ୍ତାଘାଟ ଶୂନ୍‌ଶାନ୍ । ତେଣୁ ନଅଟା ପରେ ଯେଉଁମାନଙ୍କର ସାକ୍ଷାତକାର ସରେ, ସେମାନଙ୍କୁ ବିଶ୍ୱବିଦ୍ୟାଳୟର ଗାଡ଼ି ସେମାନଙ୍କ ରହିବା ଜାଗାରେ ନେଇ ଛାଡ଼ି ଦେଇ ଆସେ । ସାକ୍ଷାତ୍କାରଟି ଜୀବନର ଏକ ସ୍ମରଣୀୟ ଓ ଶିକ୍ଷାପ୍ରଦ ଅନୁଭୂତି । ପୂର୍ବରୁ ନା ଶ୍ରୀକାକୁଲମ୍ ମହାବିଦ୍ୟାଳୟରେ ନା ଖଲ୍ଲିକୋଟ ମହାବିଦ୍ୟାଳୟରେ ପ୍ରବେଶ କଲା ବେଳେ ସାକ୍ଷାତ୍କାର ଦେବାକୁ ପଡ଼ିଥିଲା ।

ମୁଁ ଯାଇ ମନୋନୟନ କମିଟି ସମ୍ମୁଖରେ ପହଞ୍ଚିଲି । ଡ. ପରିଜା ଓ ବିଧୁଭୂଷଣ ଦାସଙ୍କ ବ୍ୟତୀତ ଅନ୍ୟ ସମସ୍ତେ ତ ପରିଚିତ । ତେଣୁ ଅସହଜ ଲାଗିଲା ନାହିଁ । ରେଜିଷ୍ଟ୍ରାର୍‌ଙ୍କ କେତୋଟି ଔପଚାରିକ ପ୍ରଶ୍ନ ପରେ କୁଳପତି ମହୋଦୟ ମୋ "କଥାସରିତ ସାଗର" ପୁସ୍ତକର ଆଦ୍ୟରେ ଥିବା ଶ୍ଳୋକଟିର ଓଡ଼ିଆ ଅର୍ଥ କହିବା ପାଇଁ ଚାହିଁଲେ । ମୁଁ ତାର ଅର୍ଥ କଲା ବେଳେ ରେଜିଷ୍ଟ୍ରାର୍ ତାଙ୍କୁ ଜଣାଇଲେ ଯେ ମୋ ନନା ଜଣେ ସଂସ୍କୃତ ପଣ୍ଡିତ । କୁଳପତି ହସି ହସି କହିଲେ, "ସେଥିପାଇଁ ତ କହିଲି; ଅନୁବାଦ ସେ କରିଛନ୍ତି ନା ନନା କରିଛନ୍ତି ।" ସେତେବେଳକୁ କପେ ଗରମ କଫି ଆସି ଯାଇଥାଏ ।

ମୋତେ କଫି ପିଇବା ପାଇଁ କହି ଡକ୍ଟର୍ ପରିଜା ଆରମ୍ଭ କଲେ, "ତମେ ତ ସଂସ୍କୃତ ଜାଣିଛ । ଏଇ ଯାହା ଗୋପାଳଚନ୍ଦ୍ର ପ୍ରହରାଜ ଲେଖିଛନ୍ତି, "ପଣ୍ଡା ପିଣ୍ଡା ତଳକୁ ବସିଲେ" ଏ ଶ୍ଳୋକଟା କ'ଣ ? ମୋର ମନେପଡ଼ିଲା, ପୂର୍ବରୁ ବି' ତିନି ଜଣ ପ୍ରତିଯୋଗୀଙ୍କୁ ସେ ସେହି ଶ୍ଳୋକଟି ହିଁ ପଚାରୁଥିଲେ । ମୁଁ ଶ୍ଳୋକଟି ଆବୃତ୍ତି କରିବା ସହିତ କହିଲି, "ସାର୍, ଶ୍ଳୋକଟି ଗୋପାଳଚନ୍ଦ୍ର ପ୍ରହରାଜଙ୍କର ନୁହେଁ । ପ୍ରହ୍ଲାଦବାବୁ କହିଲେ, ନାଁ ଏଇଟା ଗୋପୀନାଥ ନନ୍ଦଙ୍କର । ମୁଁ ପୁଣି ଜଣାଇଲି, "ସାର୍ ଏଇଟା ଗୋପୀନାଥ ନନ୍ଦଙ୍କର ନୁହେଁ, ରଘୁନାଥ ପରିଛାଙ୍କର । ଡକ୍ଟର୍ ପରିଜା ସେ ସଂପର୍କରେ ଆଉ କିଛି ନ ପଚାରି ସାରଳା ଦାସଙ୍କୁ ଶୂଦ୍ରମୁନି ବୋଲି କାହିଁକି କୁହାଯାଏ ? ସେ ସଂପର୍କରେ ପ୍ରଶ୍ନ କଲେ । କିଛି ଦିନ ପୂର୍ବରୁ ଶ୍ରୀଯୁକ୍ତ ସଚ୍ଚିଦାନନ୍ଦ ମିଶ୍ରଙ୍କ ଏ ସଂପର୍କରେ ଗୋଟିଏ ପ୍ରବନ୍ଧ ପ୍ରକାଶ ପାଇଥାଏ । ସେ ଏହାର ଛଅଟି କାରଣ ଦେଇଥା'ନ୍ତି । ମୁଁ ସେଗୁଡ଼ିକ ଗୋଟି ଗୋଟି କରି କହିବା ଆରମ୍ଭ କଲି । ତା'ପରେ ଆମର ପ୍ରଶ୍ନୋତ୍ତର ଥିଲା ଏହିପରି-

-ତମେ ବୋଧହୁଏ ସେ ପ୍ରବନ୍ଧଟି ପଢ଼ିଛ ?

- ସାର୍ !

- କୋଉ ପ୍ରବନ୍ଧ କହିଲ ?

- 'ଝଙ୍କାର'ରେ ପ୍ରକାଶ ପାଇଥିବା 'ଶୂଦ୍ରମୁନି ସାରଳା ଦାସ କାହିଁକି' ?

- ପ୍ରବନ୍ଧଟିର ଲେଖକଙ୍କୁ ଜାଣିଛ ?

- ନାଁ ସାର୍ !

- ଲେଖକ ହେଉଛନ୍ତି ସଚ୍ଚିଦାନନ୍ଦ ମିଶ୍ର । ସେ କୋଉଠିକା ଲୋକ ?

- ନାଁ ସାର୍ ! ମୁଁ ଜାଣିନି (ସେତେବେଳକୁ ମୁଁ ସ୍ୱର୍ଗତ ମିଶ୍ରଙ୍କୁ ଜାଣିନଥିଲି)

- ତାଙ୍କ ଘର ଛତ୍ରପୁର । ଆଉ ମୁଁ ହେଉଛି ସାରଳା ଦାସଙ୍କ ବଂଶଧର । ତେଣୁ ମୁଁ ଯାହା କହିବି ସେଇଟା ହିଁ ସତ ।

- ନା ସାର୍ ! ସାରଳା ଦାସଙ୍କ ସମୟରେ ସେ ନଥିଲେ କି ଆପଣ ବି ନଥିଲେ । ତାଙ୍କ ପରି ଆପଣଙ୍କ ପାଖରେ ବି କୌଣସି ପ୍ରତ୍ୟକ୍ଷ ପ୍ରମାଣ ନାହିଁ । ତେଣୁ ଆପଣଙ୍କ ମତକୁ ଆମେ ସପ୍ତମ ମତ ବୋଲି ଗ୍ରହଣ କରିବୁ ।

- (କୁଳପତି ଆଡ଼କୁ ଚାହିଁ) ଦେଖନ୍ତୁ ଏ ଟୋକା ମୋତେ ମାନିବା ପାଇଁ ପ୍ରସ୍ତୁତ ନୁହେଁ । ପୁଣି ମୋ ପାଇଁ ପ୍ରଶ୍ନ ଥିଲା ତା'ହେଲେ ଶୁଣାକଥାକୁ ତମେ ବିଶ୍ୱାସ କରିବ ନାହିଁ ।

- ସାର୍ ! କିମ୍ବଦନ୍ତୀ ସବୁବେଳେ ସତ୍ୟ ନୁହେଁ ।

– ତା' ହେଲେ ଶ୍ରୀଚୈତନ୍ୟ ଓ ଜଗନ୍ନାଥ ଦାସ ଜଗନ୍ନାଥ ମନ୍ଦିରରେ ତିନି ଦିନ ଧରି କୋଳାକୋଳି ହୋଇ ରହିଥିବା ଘଟଣାଟି କ'ଣ ମିଛ ?

– ସାର୍ ! ଜଣେ ବିଶିଷ୍ଟ ବୈଜ୍ଞାନିକ ଭାବେ ଆପଣ ତା'ର ସତ୍ୟାସତ୍ୟ ବିଚାର କରିପାରିବେ । କିନ୍ତୁ ଦୁଇଟି ଲୋକ କୋଳାକୋଳି ହୋଇ ତିନି ଦିନ ଧରି ନ ଖାଇ ନ ପିଇ ଗୋଟିଏ ସ୍ଥାନରେ ଠିଆ ହୋଇ ରହିବାଟାକୁ ମୁଁ ବିଶ୍ୱାସ କରିପାରୁ ନାହିଁ ।

ମୁଁ ଟିକିଏ ହସିଦେଲି ।

– ତମେ ବୋଧହୁଏ ଗୌଡ଼ୀୟ ବୈଷ୍ଣବ ନୁହଁ ?

– ନାଁ ସାର୍ ।

– ସେଥିପାଇଁ ତମେ ବୋଧହୁଏ ବିଶ୍ୱାସ କରିପାରୁ ନାହଁ ।

ଏଇ ପ୍ରଶ୍ନୋତ୍ତର ଭିତରେ ଆରମ୍ଭରୁ ଡି.ପି.ଆଇ. ବାରମ୍ବାର ଗୋଟିଏ ପ୍ରଶ୍ନ ପଚାରୁଥା'ନ୍ତି ଯେ 'ମୁଁ ଯିବା ପରେ ତମେ ଆସିବ' ଏବଂ 'ମୁଁ ଗଲା ପରେ ତମେ ଆସିବ' ଭିତରେ ପାର୍ଥକ୍ୟ କ'ଣ ? ମୁଁ କହୁଥାଏ, 'କଥିତ ଓଡ଼ିଆରେ ଆମେ ସମାନ ଅର୍ଥରେ ଉଭୟକୁ ବ୍ୟବହାର କରୁ' । ତାଙ୍କର ଯୁକ୍ତି ଥାଏ 'After I go' ଏବଂ 'After I had gone' ଭିତରେ କିଛି ପାର୍ଥକ୍ୟ ନାହିଁ ? ମୁଁ ବାରମ୍ବାର ଗୋଟିଏ ଉତ୍ତର ଦେଇ ଚାଲିଥାଏ । ଡକ୍ଟର୍ ପରିଜାଙ୍କ ପ୍ରଶ୍ନ ପରେ ବିଧୁବାବୁ ସପ୍ତମ ଥର ପାଇଁ ପୁଣି ସେହି ପ୍ରଶ୍ନଟିକୁ ଦୋହରାଇଲେ, କିନ୍ତୁ ମୋ ଉତ୍ତରରେ ଆଉ କିଛି ପାର୍ଥକ୍ୟ ନଥିଲା । ଶେଷରେ ସେ କହିଲେ ତମେ ବ୍ୟାକରଣ ଜାଣି ନାହଁ ? ମୁଁ ଜଣାଇଲି ସାର୍, 'ଓଡ଼ିଆରେ ତ ବ୍ୟାକରଣ ନାହିଁ' । ଡକ୍ଟର୍ ପରିଜା ମୋ କଥାର ସତ୍ୟତା ପରୀକ୍ଷା ପାଇଁ ପ୍ରଫେସର୍ ପ୍ରଧାନଙ୍କୁ ପଚାରିଲେ, "ଏ ଟୋକା କ'ଣ କହୁଛି, ତା' କ'ଣ ସତ' ? ପ୍ରଫେସର୍ ପ୍ରଧାନ ମୋ କଥାକୁ ସମର୍ଥନ କଲେ । ପଣ୍ଡିତ ଅନନ୍ତ ତ୍ରିପାଠୀ ଶର୍ମାଙ୍କ ଅଳଂକାର ସମ୍ବନ୍ଧୀୟ ପ୍ରଶ୍ନ ପରେ ସାକ୍ଷାତ୍‌କାର ଶେଷ ହେଲା । ଉଠି ଆସିଲା ବେଳେ ସିଣ୍ଡିକେଟ୍ ସଦସ୍ୟ ଶ୍ରୀଯୁକ୍ତ ଦେବରାଜ ପାଣିଗ୍ରାହୀ (ଖଲ୍ଲିକୋଟ ମହାବିଦ୍ୟାଳୟରେ ମୁଁ ତାଙ୍କର ଚାରିବର୍ଷ ଛାତ୍ର ଥିଲି) କହିଲେ "ସୁଦର୍ଶନ ତମେ କଣ ତାଳପତ୍ର ପୋଥି ସବୁ ସଂଗ୍ରହ କରିଛ ? ତାକୁ ସବୁ ବିଶ୍ୱବିଦ୍ୟାଳୟକୁ ଦେଇଦେଉନ ?' ମୁଁ ତ କିଛି କହିପାରିଲି ନାହିଁ, କିନ୍ତୁ ପରିଜା ସାର୍ କହିଲେ, 'ତମେ ତାଙ୍କୁ ଚାକିରିଟା ଦିଅ, ସେ ପୋଥିଗୁଡ଼ିକ ତମକୁ ଦେଇଦେବେ' । ମୁଁ ଧନ୍ୟବାଦ ଜଣାଇ ଫେରି ଆସିଲି । ନିଶ୍ଚିତ ଏବଂ ନିଶ୍ଚିନ୍ତ ଥାଏ ଯେ ଏ ଚାକିରି ମୋର ହେବାର ନୁହେଁ । ଉଭୟ ବିଜ୍ଞ ବିଚାରକଙ୍କ ମତକୁ ମୁଁ ସମର୍ଥନ କରି ନାହିଁ ।

ଯା ହେଉ, ହାତରେ ତ ଚାକିରିଟିଏ ଅଛି, ଚିନ୍ତା କ'ଣ ?

ପରଦିନ କଲେଜରେ ପହଞ୍ଚି ଶୁଣିଲି ବିଚାରକମାନେ ମୋତେ ମନୋନୀତ କରିଛନ୍ତି । ଭାଇନାଙ୍କୁ କୃତଜ୍ଞତା ଜଣାଇଲି ଏବଂ ଭାଇନାର ଜ୍ୟୋତିଷ ଜ୍ଞାନ ଉପରେ ବନ୍ଧୁମାନଙ୍କର ବିଶ୍ୱାସ ଆସିଲା । ଡକ୍ଟର୍ ପରିଜାଙ୍କ ପାଖରୁ ନିର୍ବାଚକ ଭାବେ ସାକ୍ଷାତ୍‌କାର ନେବାର କୌଶଳଟି ଶିଖିଲି ।

୧୯୬୯ ମସିହା ଜାନୁଆରୀ ୧ ତାରିଖରେ ମୁଁ ବିଶ୍ୱବିଦ୍ୟାଳୟରେ ଯୋଗଦେଲି; ତା' ମଧ୍ୟ ଏକ ନାଟକୀୟ ପରିବେଶରେ । ମୁଁ ଖଲ୍ଲିକୋଟ କଲେଜ୍‌ରୁ ରିଲିଭ୍ ସାର୍ଟିଫିକେଟ୍ ଆଣିବା ପାଇଁ ଯାଉଥାଏ । ରାସ୍ତାରେ ରେଜିଷ୍ଟ୍ରାର ଶ୍ରୀଯୁକ୍ତ ଗୋରାଚାନ୍ଦ ରଥଙ୍କ ସହିତ ଦେଖାହେଲା । ସେ ଗାଡ଼ି ଅଟକାଇ ମୋର ଯୋଗଦେବା କଥା ପଚାରିଲେ । ସେଦିନ ବିଶ୍ୱବିଦ୍ୟାଳୟ ବନ୍ଦ ଥିବା ଯୋଗୁଁ ମୁଁ ତାଙ୍କ ନିକଟକୁ ହିଁ ଯାଉଥିବା କଥା ଜଣାଇଲି । ସେ ଆଶୀର୍ବାଦ ଦେଇ କହିଲେ, 'ହଉ ହେଲା, ମୋତେ ଜଏନିଙ୍ଗ୍ ରିପୋର୍ଟଟା ଦିଅ । ପ୍ରାଇଭେଟ୍ କଲେଜରୁ ରିଲିଭ୍ ସାର୍ଟିଫିକେଟ୍ ଆଣିବାର କୌଣସି ଆବଶ୍ୟକତା ନାହିଁ । ମୁଁ କୁଳପତିଙ୍କ ପାଖକୁ ନବବର୍ଷର ଅଭିନନ୍ଦନ ଜଣାଇବା ପାଇଁ ଯାଉଛି । ଆସ ଗାଡ଼ିରେ ବସ ସାଙ୍ଗ ହୋଇ ଯିବା ।' (ଅବଶ୍ୟ ରିଲିଭ୍ ସାର୍ଟିଫିକେଟ୍ ନ ଆଣିଥିବା ଯୋଗୁଁ ଟିକିଏ ଅସୁବିଧା ହେଲା) ଦୁଇ ତାରିଖ ତ ପ୍ରତିଷ୍ଠା ଦିବସ । ତିନି ତାରିଖରେ ମୁଁ ଯାଇ ବିଭାଗରେ ପହଞ୍ଚିଲି । ସେତେବେଳେ ସେଲ୍‌ଟାକ୍ସ ଛକରୁ ବାଁ ଆଡ଼କୁ ଯାଇଥିବା ରାସ୍ତାକଡ଼ରେ ଥିବା ଡାକ୍ତର ବିଶ୍ୱମ୍ଭର ରାଜଗୁରୁଙ୍କ ଦୁଇମହଲା କୋଠାର ତଳ ମହଲାରେ ଇତିହାସ ଏବଂ ଉପର ମହଲାରେ ଓଡ଼ିଆ ବିଭାଗ ଚାଲିଥାଏ । ମୁଁ ପହଞ୍ଚିଲା ବେଳକୁ ଡ. ତ୍ରିପାଠୀ ଆସିଯାଇଥା'ନ୍ତି । ରେଭେନ୍‌ସାରେ ମୁଁ ତାଙ୍କ ଛାତ୍ର ଥିଲି । ତାଙ୍କର ଆଶୀର୍ବାଦ ଗ୍ରହଣ କରି ସମ୍ମୁଖରେ ବସିଲି । ଉଭୟେ ବିଭାଗ ପାଇଁ ସଂପୂର୍ଣ୍ଣ ନୂଆ । ରିଡ଼ର୍ ଭାବେ ମନୋନୀତ ହୋଇଥିବା ଡ. ଗୋପାଳଚନ୍ଦ୍ର ମିଶ୍ର ଆସି ନଥା'ନ୍ତି । ସେ ତ ବିଭିନ୍ନ ଆଳ ଦେଖାଇ ଗୋଟିଏ ବର୍ଷ ଗଡ଼ାଇ ନେଲେ । ଶେଷରେ ତାଙ୍କ ନିଯୁକ୍ତି ବାତିଲ୍ ହେଲା । ବିଭାଗରେ ଆମେ ମାତ୍ର ଦୁଇ ଜଣ । ପାଠ୍ୟଖସଡ଼ା ଅତ୍ୟନ୍ତ ଦୀର୍ଘ । ଗୋଟିଏ ଗୋଟିଏ ସଂପୂର୍ଣ୍ଣ କାବ୍ୟ କିମ୍ବା ଦୀର୍ଘ କାବ୍ୟର ବହୁ ଛାନ୍ଦ । ସାର୍ ଆରମ୍ଭରୁ କହିଦେଲେ ଯେ ସେ କେବଳ ପାଲି, ପ୍ରାକୃତ ଓ ସଂସ୍କୃତ ପତ୍ରଟି ପଢ଼ାଇବେ । ଆଉ ମୁଁ ଚାହିଁଲେ 'ସମରତରଙ୍ଗଟି' ପଢାଇ ଦେଇପାରନ୍ତି । ଧୀରେ ଧୀରେ ଛାତ୍ରମାନେ ଆସି ପହଞ୍ଚିଲେ । ଖଲ୍ଲିକୋଟ କଲେଜରୁ ଆସିଥିବା ଛାତ୍ରମାନଙ୍କୁ ମୁଁ ଜାଣିଥାଏ । ଅନ୍ୟମାନେ ଅନ୍ୟାନ୍ୟ ମହାବିଦ୍ୟାଳୟରୁ ଆସିଥା'ନ୍ତି । ପରିଚୟ ହେଲା । ଛାତ୍ର ସଂଖ୍ୟା ମାତ୍ର ୧୪ । ଝିଅ ୪ ଜଣ ଏବଂ ପୁଅ ୧୦ଜଣ ।

କୈଳାସ ଚନ୍ଦ୍ର ତ୍ରିପାଠୀ, ନିକୁଞ୍ଜ କିଶୋର ଛୋଟରାୟ, ଶରତଚନ୍ଦ୍ର ବିଷୋୟୀ, ଲକ୍ଷ୍ମୀଚରଣ ସାମନ୍ତରାୟ, ଜଗନ୍ନାଥ ପାଣିଗ୍ରାହୀ, ଉପେନ୍ଦ୍ର ନାୟକ, ଶ୍ରୀନିବାସ ମହାନ୍ତି, ରାମନାରାୟଣ ସାହୁ, ବିପିନ୍ ବିହାରୀ ବିଶ୍ୱାଳ, ସତ୍ୟନାରାୟଣ ଆଚାରୀ, ମାଳବିକା ରାୟ, ସ୍ୱରାଜ୍ୟଲକ୍ଷ୍ମୀ ବକ୍ସି, ମୃଦୁଳା ରାୟ ଏବଂ ଲିଲି ତ୍ରିପାଠୀ । କୈଳାସ ସେମିନାର୍ ସମ୍ପାଦକ ଭାବେ ନିଯୁକ୍ତ ହୋଇଥା'ନ୍ତି । ସମସ୍ତେ ପଢ଼ିବା ପାଇଁ ଆଗ୍ରହୀ । ନିର୍ଦ୍ଦିଷ୍ଟ କୋଠାଟିରେ ସକାଳେ ହୁଏ ଇତିହାସ ବିଭାଗର କ୍ଲାସ୍ ଏବଂ ଉପରବେଳା ଓଡ଼ିଆ । ଆମ ବିଭାଗର କିରାଣୀ ଥା'ନ୍ତି ଶ୍ରୀଯୁକ୍ତ ଦଣ୍ଡପାଣି ପାତ୍ର ଏବଂ ପିଅନ୍ ରଘୁନାଥ ପାଳ । ଉଭୟେ ଯେପରି କର୍ତ୍ତବ୍ୟନିଷ୍ଠ, ସେହିପରି ବିଶ୍ୱସ୍ତ । ପାଳ ତ ସାର୍ ବିଶ୍ୱବିଦ୍ୟାଳୟରେ ଥିବା ପର୍ଯ୍ୟନ୍ତ ତାଙ୍କୁ ରୋଷେଇ କରି ଦେଉଥା'ନ୍ତି ।

ସେହିଦିନ ହିଁ ପାଠ୍ୟ ନିର୍ଘଣ୍ଟ ପ୍ରସ୍ତୁତ ହେଲା । କହି ରଖେ ଡ. ତ୍ରିପାଠୀ ଓଡ଼ିଶାରେ ହିଁ ପ୍ରଥମ ବିଶ୍ୱବିଦ୍ୟାଳୟ ଓଡ଼ିଆ ପ୍ରଫେସର । ସାର୍ ତ ବର୍ଷ ବର୍ଷ ଧରି ପାଲି, ପ୍ରାକୃତ, ସଂସ୍କୃତ ଓ ଭାଷାବିଜ୍ଞାନ ପଢ଼ାଇ ଆସୁଥିଲେ । କିନ୍ତୁ ମୋ ପାଇଁ ଉପାଧ୍ୟୁତ୍ତର ଶ୍ରେଣୀରେ ପଢ଼ାଇବା ନୂଆ । ସେଥିପାଇଁ ବିଶ୍ୱବିଦ୍ୟାଳୟରେ ମୋର ଅଧ୍ୟାପନା ଆରମ୍ଭ ହେଲା ନାହିଁ ଯେ, ଆରମ୍ଭ ହେଲା ମୋର ପରୀକ୍ଷା । ଦୀର୍ଘ ୩୦ବର୍ଷ ଧରି ମୁଁ ଏହି ପରୀକ୍ଷାର ସମ୍ମୁଖୀନ ହୋଇଥିଲି । ପରୀକ୍ଷକ ଥିଲେ ପ୍ରତିବର୍ଷ ବିଦାୟ ନେଉଥିବା ଛାତ୍ରମାନେ । ପ୍ରତିବର୍ଷ ଏପରି କିଛି ଛାତ୍ର ଥା'ନ୍ତି, ଯେଉଁମାନଙ୍କର ଜିଜ୍ଞାସା ପ୍ରଚୁର । ମୋର ଅଭ୍ୟାସ ଥିଲା, ମୁଁ ଯେଉଁ ବିଷୟ ପଢ଼ାଇବା ପାଇଁ ନେଉଥିଲି, ସେ ସଂପର୍କରେ ପୂର୍ବରୁ ପ୍ରକାଶ ପାଇଥିବା ଆଲୋଚନାଗୁଡ଼ିକର ଏକ ତାଲିକା ଦେଇ ସେସବୁକୁ ପଢ଼ି ଆସିବା ପାଇଁ ପିଲାମାନଙ୍କୁ ନିର୍ଦ୍ଦେଶ ଦେଉଥିଲି । ବହୁ ଛାତ୍ର ତା' ଅପେକ୍ଷା ଅଧିକ ପଢ଼ି ଆସୁଥିଲେ । ତେଣୁ ସେମାନଙ୍କୁ ଅଧିକ କିଛି କହିବା ଏବଂ ସେମାନଙ୍କ ପ୍ରଶ୍ନର ସମାଧାନ କରିବା ପାଇଁ ମୋତେ ପ୍ରସ୍ତୁତ ହେବାକୁ ପଡୁଥିଲା । ପରବର୍ତ୍ତୀ ବର୍ଷମାନଙ୍କରେ ଏ ପ୍ରସ୍ତୁତି ଆହୁରି ବଢ଼ିଗଲା । ମୋ ବକ୍ତବ୍ୟକୁ ଛାତ୍ରମାନେ ପୂରାପୂରି ଟିପି ନେଉଥା'ନ୍ତି । ଜଣେ ଛାତ୍ର ତ ସେସବୁକୁ ଗୋଟିଏ ବହି ଆକାରରେ ପ୍ରକାଶ କରି ଦେଇଛନ୍ତି । ପୁଣି ଗୋଟିଏ ବର୍ଷର ଛାତ୍ରଙ୍କ ନୋଟ୍‌ଖାତା ପରବର୍ତ୍ତୀ ବର୍ଷର ଛାତ୍ର ସଂଗ୍ରହ କରି ନେଉଥା'ନ୍ତି । ତେଣୁ ମୋତେ ଆଉ କିଛି କିଛି କହିବା ପାଇଁ ଅଧିକ ପ୍ରସ୍ତୁତ କରିବାକୁ ପଡୁଥିଲା । ମୋତେ ପ୍ରାଚୀନ କାବ୍ୟକବିତା ଠାରୁ ଆରମ୍ଭ କରି ଗଳ୍ପ, ଉପନ୍ୟାସ, କାବ୍ୟ, କବିତା, ପ୍ରବନ୍ଧ ଓ ନାଟକ ପଢ଼ାଇବାକୁ ପଡୁଥାଏ । ପରବର୍ଷ ତ ପୁଣି ଆଳଂକାରିକ ମତବାଦ (ପ୍ରାଚ୍ୟ ଓ ପାଶ୍ଚାତ୍ୟ) । ସେ ପ୍ରସ୍ତୁତି ପରବର୍ତ୍ତୀ

ସମୟରେ ମୋର କମ୍ ସହାୟକ ହୋଇ ନାହିଁ । କେବଳ ସେତିକି ନୁହେଁ, ଛାତ୍ରମାନଙ୍କ ଠାରୁ ମୁଁ ବି କିଛି ଶିଖିବାର ସୁଯୋଗ ପାଇଛି ।

ବିଭାଗ ତ କେବଳ ଅଧ୍ୟାପକ, ଛାତ୍ର ଓ କର୍ମଚାରୀଙ୍କୁ ନେଇ ଗଠିତ ନୁହେଁ । ସବୁଠାରୁ ବଡ଼ କଥା ହେଉଛି, ବିଭାଗର ଗ୍ରନ୍ଥାଳୟ । ସେଥିପାଇଁ ଆରମ୍ଭ ହେଲା ପୁସ୍ତକ ସଂଗ୍ରହ । ଗ୍ରନ୍ଥାଗାର ସମୃଦ୍ଧି ପାଇଁ ଅର୍ଥ ବ୍ୟବସ୍ଥା କରିବାରେ କୁଳପତି ଶ୍ରୀଯୁକ୍ତ ପାଢ଼ୀଙ୍କ ଆଗ୍ରହର ପଟାନ୍ତର ନାହିଁ । ସେ ଆମ ଉଭୟଙ୍କୁ ଏ ସଂପର୍କରେ ପୂର୍ଣ୍ଣ ସ୍ୱାଧୀନତା ଦେଇଥା'ନ୍ତି । ଅର୍ଥର ଅଭାବ ନଥିଲା କିମ୍ବା ପୂର୍ବରୁ ପୁସ୍ତକ ତାଲିକା ଅନୁମୋଦିତ ହେବାର ଆବଶ୍ୟକତା ନଥିଲା । ତେଣୁ ଆମେ ଯେଉଁଆଡ଼େ ଯାଉଥିଲୁ, ପୁସ୍ତକ ସଂଗ୍ରହ କରିବା ପାଇଁ ଚେଷ୍ଟା କରୁଥିଲୁ - ଓଡ଼ିଆ, ଇଂରାଜୀ, ହିନ୍ଦୀ, ବଙ୍ଗଳା, ସଂସ୍କୃତ, ପ୍ରାକୃତ ଇତ୍ୟାଦି ବିଭିନ୍ନ ଭାଷାର ପୁସ୍ତକ, ଯାହା ଆମ ବିଭାଗର ଛାତ୍ରଛାତ୍ରୀ, ଅଧ୍ୟାପକ ଓ ଗବେଷକଙ୍କ ପାଇଁ ସହାୟକ ହେବ । ପୁସ୍ତକ ସବୁ ଆସୁଥିଲା ଟ୍ରେନ୍ ଆଉ ବସ୍‌ରେ । ତାକୁ ଆଣିବା ଦାୟିତ୍ୱ ସଂପାଦକ କୈଳାସଙ୍କର । ରାତିରେ ବସି ଆମେ ଦୁହେଁ ପୁସ୍ତକ ତାଲିକା କରୁଥିଲୁ । ଡକ୍ଟର୍ ତ୍ରିପାଠୀ ପୁରାତନ ପତ୍ରପତ୍ରିକା ସଂଗ୍ରହ କରିବାର ଯୋଜନା କଲେ । ଦୂର ଦୂରାନ୍ତରୁ ଆମ ବିଜ୍ଞାପନ ଦେଖି ପତ୍ରପତ୍ରିକା ଆସିଥିଲା- ଉତ୍କଳ ସାହିତ୍ୟ, ସତ୍ୟବାଦୀ, ଚତୁରଙ୍ଗ ଇତ୍ୟାଦି । କିଛି ତାମ୍ରଫଳକ ବି ସଂଗୃହୀତ ହେଲା । ସେତେବେଳେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗର ବିଭାଗୀୟ ପାଠାଗାର ସୁନାମ ଅର୍ଜନ କରିଥିଲା । ଏ ସଂପର୍କରେ ଗୋଟିଏ ମଜାକଥା ମନେ ପଡ଼େ । ଯେଉଁ ବିଚାରକ ମଣ୍ଡଳୀ ଡ. ତ୍ରିପାଠୀଙ୍କୁ ପ୍ରଫେସର୍ ରୂପେ ମନୋନୀତ କରିଥିଲେ, ସେମାନଙ୍କ ମଧ୍ୟରେ ଥିଲେ 'ସ୍ୱନାମଧନ୍ୟ ପ୍ରଫେସର୍ ପ୍ରହ୍ଲାଦ ପ୍ରଧାନ । ପ୍ରସିଦ୍ଧ ବ୍ୟାକରଣବିତ୍ ରାମାଜ୍ଞା ପାଣ୍ଡେଙ୍କ ସେ ପ୍ରତ୍ୟକ୍ଷ ଶିଷ୍ୟ । ଡ. ତ୍ରିପାଠୀଙ୍କୁ ସେ ବ୍ୟାକରଣ ସଂପର୍କୀୟ ଗୋଟିଏ ପ୍ରଶ୍ନ ପଚାରିଥିଲେ । ଉତ୍ତରରେ ଡ. ତ୍ରିପାଠୀ ଯାହା କହିଥିଲେ ତା'କୁ ସେ ସ୍ୱୀକାର କରି ନଥିଲେ । ଏହା ଡ. ତ୍ରିପାଠୀଙ୍କୁ ବହୁତ ବାଧିଥିଲା । ପ୍ରଫେସର୍ ପ୍ରଧାନ ତ ବାରମ୍ବାର ବିଶ୍ୱବିଦ୍ୟାଳୟକୁ ଆସୁଥିଲେ । ତାଙ୍କୁ ନିଜ ମତ ଯେ ଠିକ୍ ସେକଥା ଜଣାଇଦେବା ପାଇଁ ଡ. ତ୍ରିପାଠୀ ବିଭାଗୀୟ ପାଠାଗାର ପାଇଁ ସଂଗ୍ରହ କରିଥିଲେ ପାଲି, ପ୍ରାକୃତ, ସଂସ୍କୃତ, ଗୁଜୁରାଟୀ, ମରାଠୀ ଭାଷାର ଅଭିଧାନ । ପ୍ରଫେସର ପ୍ରଧାନ ଉଦାରତାର ସହିତ ତାଙ୍କ ମତ ବଦଳାଇଥିଲେ ।

ପରବର୍ତ୍ତୀ ପ୍ରାଧ୍ୟାପକ ଭାବେ ଡ. ବେଣୀମାଧବ ପାଢ଼ୀ ଏବଂ ଅଧ୍ୟାପକ ଭାବେ ଡ. ସୀତାରାମ ମହାପାତ୍ର ବିଭାଗରେ ଯୋଗଦେଲେ । ବିଭାଗ ପାଇଁ ବହୁ କାଗଜ ଓ ତାଳପତ୍ର ସଂଗୃହୀତ ହୋଇ ଆସୁଥିବାରୁ ସ୍ୱତନ୍ତ୍ର ଭାବେ ଏକ ମ୍ୟୁଜିୟମ୍ ଗଢ଼ି ଉଠିଲା ।

ପାଣ୍ଡୁଲିପିଗୁଡ଼ିକର ରକ୍ଷଣାବେକ୍ଷଣ ଏବଂ ପ୍ରତିଲିପି ପ୍ରସ୍ତୁତି ପାଇଁ ଜଣେ ପଣ୍ଡିତଙ୍କୁ (ପତିତପାବନ ତ୍ରିପାଠୀ) ନିଯୁକ୍ତି ଦିଆଗଲା । ପରିପୂର୍ଣ୍ଣ ବିଭାଗ ହସି ଉଠିଲା । ଅଧ୍ୟୟନ ସହିତ ଛାତ୍ରଛାତ୍ରୀମାନେ ପ୍ରତି ସପ୍ତାହରେ ଆୟୋଜିତ ପାଠଚକ୍ରରେ ମୌଳିକ ପ୍ରବନ୍ଧମାନ ଉପସ୍ଥାପନ କରୁଥା'ନ୍ତି । ସେଥିରୁ କେତୋଟି ପ୍ରବନ୍ଧ ସେ କାଳରେ ପ୍ରତିଷ୍ଠିତ ପତ୍ରପତ୍ରିକାରେ ପ୍ରକାଶ ପାଇଥିଲା । ସେଗୁଡ଼ିକର ଏକ ସଂକଳନ ପାଠଚକ୍ର ପ୍ରବନ୍ଧାବଳୀ । ନିୟମ ଥିଲା, ଯିଏ ପ୍ରବନ୍ଧ ଉପସ୍ଥାପନ କରିବ, ସିଏ ସେଦିନ ସମସ୍ତଙ୍କୁ ଖାଇବାକୁ ଦେବ । ଅବଶ୍ୟ ପରେ ଛାତ୍ରଛାତ୍ରୀଙ୍କ ସଂଖ୍ୟା ବୃଦ୍ଧି ପାଇଲା, ଦୂରଦୂରାନ୍ତରରୁ ଛାତ୍ରଛାତ୍ରୀ ଆସି ଯୋଗ ଦେଲେ ଏବଂ ସର୍ବୋପରି ଆଜିର ମଧ୍ୟାହ୍ନ ଭୋଜନ ପରି ପିଲାମାନେ ପ୍ରବନ୍ଧ ଅପେକ୍ଷା ଖୁଆଇବା ପାଇଁ ଅଧିକ ପ୍ରତିଦ୍ୱନ୍ଦ୍ୱିତା କଲେ । ଫଳରେ ନିୟମ ବଦଳିଗଲା ।

ପ୍ରାଥମିକ ସ୍ତରରେ ବିଭାଗର ପୋଷକ ମହାବିଦ୍ୟାଳୟ ଥିଲା ମୁଖ୍ୟତଃ ତିନୋଟି– ଖଲ୍ଲିକୋଟ ମହାବିଦ୍ୟାଳୟ, ଭଞ୍ଜନଗର ମହାବିଦ୍ୟାଳୟ ଏବଂ ନୟାଗଡ଼ ମହାବିଦ୍ୟାଳୟ, ପରେ ଅବଶ୍ୟ ଅନ୍ୟାନ୍ୟ ମହାବିଦ୍ୟାଳୟରେ ଓଡ଼ିଆ ଅନର୍ସ ପାଠ୍ୟକ୍ରମ ଆରମ୍ଭ ହେବା ଫଳରେ ଛାତ୍ର ସଂଖ୍ୟା ବୃଦ୍ଧିଲାଭ କଲା ଏବଂ ସ୍ଥାନ ସଂଖ୍ୟା ମଧ୍ୟ ଅନୁରୂପ ଭାବେ ଚାଳିଶି ପର୍ଯ୍ୟନ୍ତ ବଢ଼ିଗଲା ।

ସେତେବେଳେ ବିଶ୍ୱବିଦ୍ୟାଳୟ ପ୍ରତି ବିଭାଗ ପାଇଁ ଶୈକ୍ଷିକ ପରିଭ୍ରମଣର (ଷ୍ଟଡ଼ି ଟୁର୍ ଓ ଏକ୍ସକରସନ୍) ବ୍ୟବସ୍ଥା କରିଥା'ନ୍ତି । ଡ. ପାଢ଼ୀ, ସୀତାରାମ ବାବୁ ଓ ମୁଁ ଆମେ ତିନିହେଁ ଭ୍ରମଣପ୍ରିୟ । ତେଣୁ ପିଲାଙ୍କୁ ନେଇ ଭାରତବର୍ଷ ସାରା ବୁଲିଛୁ । ସେସବୁ ଅନୁଭୂତି ଲେଖିଲେ ଆଉ ଗୋଟିଏ ଦୀର୍ଘ ପ୍ରବନ୍ଧ ହେବ; କିନ୍ତୁ ଏହା ଦ୍ୱାରା ଯେ ଛାତ୍ରମାନଙ୍କର ଜ୍ଞାନ ଓ ଦୃଷ୍ଟିର ପ୍ରସାର ଘଟିଛି, କହିବା ବାହୁଲ୍ୟ ମାତ୍ର । ଏଇ ଅବସରରେ ଆମେ ଭାରତବର୍ଷର ବହୁ ବିଶ୍ୱବିଦ୍ୟାଳୟ ଓ ଗ୍ରନ୍ଥାଗାରଗୁଡ଼ିକ ଦେଖିବାର ସୁଯୋଗ ପାଇଥିଲୁ ।

ବିଶ୍ୱବିଦ୍ୟାଳୟର ନୂତନ ପରିସର ଉପେନ୍ଦ୍ର ଭଞ୍ଜଙ୍କ ନାମରେ ନାମିତ ହେଲା । ତେଣୁ ବିଭାଗ ତାଙ୍କ ସାହିତ୍ୟ ସଂପର୍କରେ ଏକ ଆଲୋଚନାଚକ୍ର ଆୟୋଜନ କରିବା ପାଇଁ କୁଳପତିଙ୍କ ନିକଟରେ ପ୍ରସ୍ତାବ ରଖିଲା । ସିଏ ତାକୁ କେବଳ ଯେ ଅନୁମୋଦନ କଲେ, ତା'ନୁହେଁ, ଆଲୋଚନା ଚକ୍ରରେ ଉପସ୍ଥାପିତ ପ୍ରବନ୍ଧ ପ୍ରକାଶନ ପାଇଁ ମଧ୍ୟ ଅର୍ଥ ବ୍ୟବସ୍ଥା କରିଦେଲେ । ଆଲୋଚନା ଚକ୍ରରେ ପ୍ରାଧ୍ୟାପକ ଗୋବିନ୍ଦ ଚନ୍ଦ୍ର ଉଦ୍‌ଗାତା, ପ୍ରଫେସର୍ ବଂଶୀଧର ମହାନ୍ତି ଏବଂ ଅଧ୍ୟାପକ ସୁଦର୍ଶନ ଆଚାର୍ଯ୍ୟଙ୍କ ତିନୋଟି ପ୍ରବନ୍ଧ ଉପସ୍ଥାପିତ ହୋଇଥିଲା । ପରବର୍ତ୍ତୀ ସମୟରେ ସେଗୁଡ଼ିକ ସଂକଳିତ ହୋଇ ବିଶ୍ୱବିଦ୍ୟାଳୟର ପ୍ରଥମ ପ୍ରକାଶିତ ଗ୍ରନ୍ଥ ଭାବେ ପ୍ରକାଶ ପାଇଛି ।

ଆଉ ଗୋଟିଏ କଥା, ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ ପ୍ରତିବର୍ଷ ଗବେଷଣା ଗ୍ରନ୍ଥଗୁଡ଼ିକର ପ୍ରକାଶନ ପାଇଁ କିଛି ଅର୍ଥର ବ୍ୟବସ୍ଥା କରିଥା'ନ୍ତି । ଆମେ ତା'ର ସଦ୍‌ବିନିଯୋଗ ପାଇଁ ଉଦ୍ୟମ କଲୁ । ପ୍ରକାଶ ପାଇଲା ଡକ୍ଟର୍ କୁଞ୍ଜବିହାରୀ ତ୍ରିପାଠୀଙ୍କ 'ଆଞ୍ଚଳିକ ଶବ୍ଦକୋଷ' । ପରବର୍ତ୍ତୀ ସମୟରେ ସେଇ ଅର୍ଥ ବିନିଯୋଗ କରିବା ପାଇଁ କୁଳପତିମାନେ ମୋତେ ସୁଯୋଗ ଦେଇଛନ୍ତି । ପ୍ରକାଶ ପାଇଛି ରାମଚନ୍ଦ୍ର ଗ୍ରନ୍ଥାବଳୀ, ଜଗନ୍ନାଥ ନାରାୟଣଦେବ ଗ୍ରନ୍ଥାବଳୀ, ଶୁକ୍ରନୀତି, ଇନ୍ଦ୍ରଧନୁ ଇତ୍ୟାଦି । ଆମ ଅନୁସରଣରେ ପରବର୍ତ୍ତୀ ସମୟରେ ଅନ୍ୟ କେତେକ ବିଭାଗ ମଧ୍ୟ ଏହି ଅର୍ଥର ସଦ୍‌ବିନିଯୋଗ ପାଇଁ ଉଦ୍ୟମ କରିଛନ୍ତି ।

ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗରୁ ଗୋଟିଏ ପରିଦର୍ଶୀ ସମିତି ଆସିଥା'ନ୍ତି । ସେମାନେ ଆମ ବିଭାଗର ପ୍ରକାଶନ, ସଂଗୃହୀତ ପତ୍ରପତ୍ରିକା ଓ ତାଳପତ୍ର ସବୁ ଦେଖି ସନ୍ତୁଷ୍ଟ ହୋଇଥିଲେ । ବିଭାଗ ଆଉ କେତୋଟି ଅଧ୍ୟାପକ ପଦବୀ ପାଇଁ ପ୍ରସ୍ତାବ ଦେଇଥିଲା । ସେମାନଙ୍କର କାର୍ଯ୍ୟକ୍ରମ ଶେଷ ହେବା ପରେ ଆମେ ବସି ଚାହାପାନ କରୁଥିଲୁ । ସେମାନଙ୍କ ମଧ୍ୟରୁ ମୋର ସମବୟସ୍କ ଜଣେ ସଦସ୍ୟଙ୍କ ସହିତ ପୂର୍ବରୁ ପରିଚୟ ଥାଏ । ସେ ଗୋଟିଏ ଭଲ କଥା କହିଲେ । ଅଧ୍ୟାପକ, ପ୍ରାଧ୍ୟାପକ କିମ୍ବା ପ୍ରଫେସର୍ ପଦବୀ ପାଇଁ ପ୍ରସ୍ତାବ ଦେଲେ ତାହା ଗୃହୀତ ହେବା କଷ୍ଟକର । କିନ୍ତୁ ଆପଣଙ୍କ ବିଭାଗର ସମାନ୍ତରାଳ ଭାବରେ ଯଦି ଆଉ କିଛି ଗବେଷଣା କେନ୍ଦ୍ର ଖୋଲିବା ପାଇଁ ପ୍ରସ୍ତାବ ଦିଅନ୍ତେ, ତାହାହେଲେ ଆୟୋଗ ତାକୁ ଅଗ୍ରାଧିକାର ଦେଇପାରନ୍ତି । ମୁଁ ଏକଥା ତତ୍କାଳୀନ ପ୍ରଶାସକ ଶ୍ରୀଯୁକ୍ତ ଏମ୍.ୱାଇ. ରାଓଙ୍କୁ ଜଣାଇଲି । ସେ ଚିନ୍ତା କରି ଗୋଟିଏ ପ୍ରସ୍ତାବର ଚିଠା ପ୍ରସ୍ତୁତ କରିବା ପାଇଁ ମୋତେ ଦାୟିତ୍ୱ ଦେଲେ । ଆଞ୍ଚଳିକ ସାହିତ୍ୟ ଓ ସଂସ୍କୃତି ଏବଂ ଉପେନ୍ଦ୍ର ସାହିତ୍ୟ ଗବେଷଣା ପାଇଁ ଗୋଟିଏ ପ୍ରକଳ୍ପ ପ୍ରସ୍ତୁତ କରି ମୁଁ ପ୍ରଶାସକ ମହୋଦୟଙ୍କୁ ଦେଲି । ସେ ବାଣିଜ୍ୟ ବିଭାଗର ପ୍ରଫେସର୍ ବନ୍ଧୁ ପ୍ରମୋଦ କୁମାର ସାହୁଙ୍କ ସହିତ ଦିଲ୍ଲୀ ଯାଉଥାନ୍ତି । ଉଭୟଙ୍କ ଉଦ୍ୟମରେ ପ୍ରକଳ୍ପଟି ଗୃହୀତ ହେଲା । ସେଥିପାଇଁ ମୁଁ ସେମାନଙ୍କ ଠାରେ କୃତଜ୍ଞ । ପ୍ରାଥମିକ ଭାବେ ଦୁଇ ଲକ୍ଷ ଟଙ୍କା ଅନୁଦାନ ସହିତ ଗୋଟିଏ ରିଡ଼ର୍, ଗୋଟିଏ କ୍ୟୁରେଟର୍ ଏବଂ ଜଣେ ପ୍ରତିଲିପିକାରଙ୍କ ନିଯୁକ୍ତି ପାଇଁ ବ୍ୟବସ୍ଥା ରହିଲା । କେନ୍ଦ୍ରର କାର୍ଯ୍ୟ ଆରମ୍ଭ ହେଲା । ଦକ୍ଷିଣ ଓଡ଼ିଶାର ସାହିତ୍ୟ, ସଂସ୍କୃତି, କଳା ଓ ଜୀବନଶୈଳୀ ଉପରେ ଗବେଷଣା ପାଇଁ ବହୁ ତଥ୍ୟ ସଂଗୃହୀତ ହେଲା । ଉପେନ୍ଦ୍ର ଭଞ୍ଜଙ୍କ ରଚନାଗୁଡ଼ିକର ଶୁଦ୍ଧ ସଂପାଦନା ପାଇଁ ପାଣ୍ଡୁଲିପି ସବୁ ସଂଗୃହୀତ ହୋଇ ଆସିଲା । ଉପେନ୍ଦ୍ର ସାହିତ୍ୟ ଉପରେ ଗବେଷଣା କରିବା ପାଇଁ ବିଶ୍ୱବିଦ୍ୟାଳୟ ପକ୍ଷରୁ ଗବେଷକ / ଗବେଷିକା ନିଯୁକ୍ତି ପାଇଲେ । ଦକ୍ଷିଣ ଓଡ଼ିଶାର ବିଶିଷ୍ଟ ସାହିତ୍ୟିକମାନଙ୍କ ସଂପର୍କରେ ମନୋଗ୍ରାଫ୍ ପ୍ରସ୍ତୁତି

ପାଇଁ ପଦକ୍ଷେପ ନିଆଗଲା । ଡକ୍ଟର୍ ଜାନକୀ ବଲ୍ଲଭ ମହାନ୍ତି (ଭରଦ୍ୱାଜ) ଏବଂ ଶ୍ରୀଯୁକ୍ତ ସଚ୍ଚିଦାନନ୍ଦ ମିଶ୍ର, ଦୀନବନ୍ଧୁ ରାଜ ହରିଚନ୍ଦନ ଏବଂ ପୀତାମ୍ବର ଦାଶଙ୍କ ସଂପର୍କରେ ଦୁଇଟି ମନୋଗ୍ରାଫ୍ ପ୍ରସ୍ତୁତ କରିଛନ୍ତି । କ୍ରୀଡ଼ା, ଦେବଦେବୀ, ପୂଜାପର୍ବ ଏବଂ ହସ୍ତଶିଳ୍ପଗୁଡ଼ିକର ଚିତ୍ରପଟ ପ୍ରସ୍ତୁତ କରି ଅଣାଗଲା । ତା'ଭିତରେ ସାମନ୍ତ ଚନ୍ଦ୍ରଶେଖରଙ୍କ ଶିଷ୍ୟ ଗଦାଧର ବିଦ୍ୟାଭୂଷଣଙ୍କ ଦ୍ୱାରା ନିର୍ମିତ ସୂର୍ଯ୍ୟଘଡ଼ି, ରାଧାମୋହନ ରାଜେନ୍ଦ୍ରଦେବଙ୍କ ରାଧା ପ୍ରେମଲୀଳାର ସ୍ୱହସ୍ତ ଲିଖିତ ପ୍ରତିଲିପି ଇତ୍ୟାଦି ପ୍ରଧାନ । ଶ୍ରୀଯୁକ୍ତ ଏମ୍.ଓ୍ୱାଇ. ରାଓଙ୍କ ପରେ ବିଭାଗ ପାଇଁ ପରବର୍ତ୍ତୀ କୁଳପତି ଡ. ବିଭୂତି ଭୂଷଣ ଦେଓଙ୍କ ଦାନ ମଧ୍ୟ କମ୍ ନୁହେଁ । ମୋର ଅନୁରୋଧ କ୍ରମେ ବିଭାଗ ପକ୍ଷରୁ ଗୋଟିଏ ଷାଣ୍ମାସିକ ଗବେଷଣାପତ୍ର ପ୍ରକାଶ ପାଇଁ ସେ ବିଶ୍ୱବିଦ୍ୟାଳୟ ବଜେଟ୍‌ରେ ଅର୍ଥ ବ୍ୟବସ୍ଥା କରିଥିଲେ । ଶ୍ୟାମସୁନ୍ଦର ରାଜଗୁରୁ ଓ ଗୋପୀନାଥ ନନ୍ଦ ଶର୍ମାଙ୍କ ଜୀବନୀ ଓ ସାହିତ୍ୟକୃତିକୁ ନେଇ ଦୁଇଟି ବିଶେଷାଙ୍କ ପ୍ରକାଶ ପାଇଥିଲା । ପରବର୍ତ୍ତୀ ସମୟରେ କୃଷ୍ଣସିଂହ ଓ ରାଧାମୋହନ ରାଜେନ୍ଦ୍ରଦେବଙ୍କ ସଂପର୍କରେ ଆଉ ଦୁଇଟି ବିଶେଷାଙ୍କ ପ୍ରକାଶ ପାଇଁ ବ୍ୟବସ୍ଥା କରାଯାଇଥିଲା । କୌଣସି କାରଣରୁ ତାହା ଆଉ କାର୍ଯ୍ୟକାରୀ ହୋଇପାରିଲା ନାହିଁ ।

ଆଉ ଗୋଟିଏ କଥା-ଗଞ୍ଜାମ, ଗଜପତି ଓ ଜୟପୁର ଅଞ୍ଚଳରେ ସଂସ୍କୃତ ଓ ଓଡ଼ିଆ ଲେଖକଙ୍କ ସଂଖ୍ୟା ଅଗଣନୀୟ । ବିଭିନ୍ନ ଅଞ୍ଚଳରୁ ଛାତ୍ରଛାତ୍ରୀମାନେ ଆସୁଥା'ନ୍ତି । କେତେକଙ୍କ ପୂର୍ବପୁରୁଷମାନଙ୍କର ରଚନାରେ ମଧ୍ୟ ଓଡ଼ିଆ ସାହିତ୍ୟ ସମୃଦ୍ଧ । ସେମାନଙ୍କୁ ଲୋକଲୋଚନକୁ ଆଣିବା ପାଇଁ ଦ୍ୱିତୀୟ ବର୍ଷର ସ୍ୱତନ୍ତ୍ର ପତ୍ର ପରିବର୍ତ୍ତେ ସନ୍ଦର୍ଭ ପ୍ରସ୍ତୁତି ପାଇଁ ବ୍ୟବସ୍ଥା କରାଗଲା । ଛାତ୍ରମାନେ ସେମାନଙ୍କ ଅଞ୍ଚଳର ବହୁ ଲେଖକଙ୍କ ଉପରେ ସନ୍ଦର୍ଭ ପ୍ରସ୍ତୁତ କଲେ । କିନ୍ତୁ କିଛି ବର୍ଷ ପରେ ଦେଖାଗଲା, ଅଧ୍ୟାପକମାନେ ସାଂପ୍ରତିକ ସମୟର ଲେଖକଙ୍କୁ ନେଇ ଆଲୋଚନା କରିବା ସକାଶେ ଛାତ୍ରମାନଙ୍କୁ ପ୍ରୋତ୍ସାହିତ କଲେ । ଅଧିକରୁ ଅଧିକତର ନମ୍ବର ଦେବାରେ ପ୍ରତିଯୋଗିତା ଚାଲିଲା । ତେଣୁ ବାଧ୍ୟ ହୋଇ ସେ ବ୍ୟବସ୍ଥାରେ ପୂର୍ଣ୍ଣଚ୍ଛେଦ ପଡ଼ିଲା । ସେହିପରି ଏମ୍.ଫିଲ୍. ଛାତ୍ରଛାତ୍ରୀଙ୍କୁ ନେଇ ଆଉ ଗୋଟିଏ ଯୋଜନା କରାଯାଇଥିଲା । ଆଧୁନିକ ଓଡ଼ିଆ ସାହିତ୍ୟର ଏକ ପୂର୍ଣ୍ଣାଙ୍ଗ ଇତିହାସର ପ୍ରସ୍ତୁତି । ପ୍ରତ୍ୟେକେ ଗୋଟିଏ ଗୋଟିଏ ଦଶନ୍ଧିର ଗଳ୍ପ, ଉପନ୍ୟାସ, କବିତା, ପ୍ରବନ୍ଧ, ସମାଲୋଚନା ଆଧାରରେ ସନ୍ଦର୍ଭ ପ୍ରସ୍ତୁତ କରିବେ । ଛାତ୍ରଛାତ୍ରୀମାନେ କେବଳ ବ୍ରହ୍ମପୁରର ବିଭିନ୍ନ ପାଠାଗାର ନୁହେଁ, ଭୁବନେଶ୍ୱର ଓ କଟକର ବିଭିନ୍ନ ଗ୍ରନ୍ଥାଗାର ଓ ସଂଗ୍ରହାଳୟକୁ ଯାଇ ତଥ୍ୟସଂଗ୍ରହ କରୁଥିଲେ । ପ୍ରକାଶିତ ରଚନାଗୁଡ଼ିକର ତାଲିକା ମଧ୍ୟ ପ୍ରସ୍ତୁତ କରାଯାଉଥିଲା । ସମାନ କାରଣରୁ ତା'ମଧ୍ୟ ବଦଳିଗଲା ।

କୁଳପତି ସ୍ୱର୍ଗତଃ ରଘୁନାଥ ପ୍ରସାଦ ପାଢ଼ୀଙ୍କ ଠାରୁ ଶିଖିବାର କଥା । ବିଭିନ୍ନ ସମୟରେ ସେ ସବୁ ବିଭାଗର ଅଧ୍ୟାପକମାନଙ୍କୁ ନେଇ ରାତ୍ରିଭୋଜନର ବ୍ୟବସ୍ଥା କରୁଥିଲେ । ବନ୍ଧୁମିଳନ ହେଉଥିଲା । ସମସ୍ତଙ୍କୁ ଏକତା ସୂତ୍ରରେ ବାନ୍ଧି ରଖିବା ପାଇଁ ଏହା ଥିଲା ତାଙ୍କର ଏକ କୌଶଳ । ଆମେ ଆମ ବିଭାଗରେ ମଧ୍ୟ ପ୍ରାୟ ପ୍ରତି ମାସେ ଦି'ମାସରେ ଏପରି ମିଳନର ଆୟୋଜନ କରୁଥିଲୁ । ଖୁବ୍ ଖିଆପିଆ ହେଉଥିଲା । ସମସ୍ତଙ୍କ ଭିତରେ ଏକ ପାରିବାରିକ ସଦ୍‌ଭାବନା ଜାଗ୍ରତ ଥିଲା । ଏହାକୁ ଆହୁରି ଜମେଇଥିଲେ ଡକ୍ଟର୍ ବାଉରୀବନ୍ଧୁ କର । ସେ ଯେପରି ପଢ଼ାନ୍ତି, ସେହିପରି ରୋଷେଇ ବି କରିପାରନ୍ତି । ସେ ଆମିଷ ଖାଆନ୍ତି ନାହିଁ, କିନ୍ତୁ ଆମକୁ ଖୁଆଇବାରେ ତାଙ୍କର ଯଥେଷ୍ଟ ଆନନ୍ଦ । ଏବେ ବି ତାଙ୍କ ହାତରନ୍ଧା ମାଂସ କିମ୍ବା ଚିଙ୍ଗୁଡ଼ି ଆମର ଖାଇବାର ଇଚ୍ଛା ଯାଇ ନାହିଁ । ସମୟ ଗଡ଼ି ଚାଲିଲା । ଏତିକିବେଳେ ମନେ ପଡ଼େ, ଅଧ୍ୟାପକ ବନ୍ଧୁ ସୀତାରାମ ମହାପାତ୍ରଙ୍କ କଥା । ବିଭାଗକୁ ସଙ୍ଗୀତ ମୁଖର କରିବାରେ ତାଙ୍କ ଭୂମିକା ଅବିସ୍ମରଣୀୟ । ପିଲାଙ୍କ ଦ୍ୱାରା ମିମିକ୍ରି, ଅନ୍ତାକ୍ଷରୀ, ଗୀତ ପ୍ରତିଯୋଗିତା ଇତ୍ୟାଦିରେ ପିଲାମାନଙ୍କ ପ୍ରତିଭାକୁ ସେ ଉଦ୍‌ବୋଧିତ କରୁଥା'ନ୍ତି ।  ଆମ ଦୁଇ ଜଣରୁ ଧୀରେ ଧୀରେ ଅଧ୍ୟାପକ ସଂଖ୍ୟା ବଢ଼ିବାକୁ ଲାଗିଲା । ବିଜ୍ଞ ଓ ଅଭିଜ୍ଞ ଅଧ୍ୟାପକମାନେ ଆସି ଯୋଗଦେଲେ । ବିଭାଗୀୟ ମୁଖ୍ୟରେ ମଧ୍ୟ ପରିବର୍ତ୍ତନ ଆସିଲା । ଏହାକୁ ତ୍ୱରାନ୍ୱିତ କଲା ଆବର୍ତ୍ତନ ନିୟମ । ଭଲ ହେଲା କି ଖରାପ ହେଲା କହିବା ସମ୍ଭବ ନୁହେଁ । ପ୍ରତ୍ୟେକେ ନିଜ ନିଜ ଶୈଳୀରେ ବିଭାଗର ଦାୟିତ୍ୱ ତୁଲାଇଲେ । ସେମାନଙ୍କ ଅଭିନବ ଚିନ୍ତନ ବିଭାଗକୁ ଅଗ୍ରସର କରାଇନେଲା ଓ ନେଉଛି ।

୧୯୬୯ ରୁ ୧୯୯୯ ଦୀର୍ଘ ୩୦ବର୍ଷ । ବହୁ ତିକ୍ତ ଓ ମଧୁର ଅନୁଭୂତିରେ ଭରା । ତିକ୍ତଗୁଡ଼ିକ ପ୍ରାୟ ବିସ୍ମୃତିଗର୍ଭକୁ ଚାଲିଗଲେଣି । ପୁରାତନ ଗବେଷକ, ଛାତ୍ର ପ୍ରାୟତଃ ଆସନ୍ତି କିମ୍ବା ଫୋନ୍ ଯୋଗେ କଥାବାର୍ତ୍ତା ହୁଅନ୍ତି । ମଧୁର ସ୍ମୃତି ଗୁଡ଼ିକ ଜାଗ୍ରତ ହୁଏ । ସହକର୍ମୀ ଓ ଛାତ୍ରଛାତ୍ରୀଙ୍କ ଭିତରୁ କେତେ କୁଆଡ଼େ ମରିହଜି ଗଲେଣି । କେତେକ ଅବସର ନେଇ ନିଜ ନିଜ ଜଞ୍ଜାଳରେ ବ୍ୟସ୍ତ । ପ୍ରାୟ ସମସ୍ତେ ମନେ ପଡ଼ନ୍ତି । ପ୍ରାୟ ୧୬ ଜଣ କୁଳପତି ଓ ପ୍ରଶାସକଙ୍କ ସଂସ୍ପର୍ଶରେ ଆସିଛି । ବିଭାଗ ପାଇଁ ସେମାନଙ୍କ ସହଯୋଗ ବିସ୍ମୃତ ହେବାର ନୁହେଁ । ଯେଉଁମାନେ ବିଭାଗର ପ୍ରତିଷ୍ଠା କିମ୍ବା ସୁନାମରେ ଆଞ୍ଚ ଆଣିବା ପାଇଁ ଚେଷ୍ଟା କରିଛନ୍ତି, ସେମାନଙ୍କ ଭୁଲ୍ ଦର୍ଶାଇବା ପାଇଁ କେବେ କୁଣ୍ଠିତ ହୋଇ ନାହିଁ । ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ମୋର ଏକମାତ୍ର ଲକ୍ଷ୍ୟ ଥିଲା, ବିଭାଗର ପ୍ରତିଷ୍ଠା ଓ ସୁନାମକୁ ଅକ୍ଷୁଣ୍ଣ ରଖିବା । ନିଜ ପାଇଁ କେବେ କାହାକୁ ଭିକ୍ଷା କରି ନାହିଁ କିମ୍ବା ଖୋସାମଦ୍ କରି ନାହିଁ । ବରଂ ବିଭାଗର ସୁନାମ ପାଇଁ ଶତ୍ରୁ ଅର୍ଜନ କରିଛି । ଏଥିରେ ହିଁ ମୋର ସନ୍ତୋଷ ।

ଭଞ୍ଜବିହାର ତ ବସନ୍ତର କ୍ରୀଡ଼ାଭୂମି । ସେଠି ଗ୍ରୀଷ୍ମ ପ୍ରଖର ନୁହେଁ କି ଶୀତ ଅସହ୍ୟ ନୁହେଁ । ତିରିଶ ବର୍ଷର କର୍ମମୟ ଜୀବନ । ତେଣୁ ଯେଉଁ ଶୀତ ବା ଗ୍ରୀଷ୍ମ ଆସିଛି, ତାହା କ୍ଷଣସ୍ଥାୟୀ । ମୁଁ କେବଳ ବସନ୍ତର ମଧୁରିମା ହିଁ ଅନୁଭବ କରିଛି । ଆଜି ବିଭାଗ ତା'ର ସୁବର୍ଣ୍ଣ ଜୟନ୍ତୀ ପାଳନ କରୁଛି । ଶତବାର୍ଷିକୀ ଦେଖିବାର ତ ସୁଯୋଗ ନାହିଁ । କିନ୍ତୁ ଭଗବାନଙ୍କ ନିକଟରେ ପ୍ରାର୍ଥନା ଅନ୍ତତଃ ସେ ପର୍ଯ୍ୟନ୍ତ ବସନ୍ତର ମଧୁମୟ ସ୍ପର୍ଶରେ ଆମ ବିଭାଗ ଉଲ୍ଲସିତ ହେଉଥାଉ ।

●

*ଅଶୋକ ନଗର,*
*ବ୍ରହ୍ମପୁର-୧*

# ଓଡ଼ିଆ ବିଭାଗର ସ୍ମୃତି

ପ୍ରଫେସର ଗଗନେନ୍ଦ୍ରନାଥ ଦାଶ

କାହ୍ନୁବାବୁ ଅବସର ଗ୍ରହଣ କରିବା ପରେ ମୁଁ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗରେ ବରିଷ୍ଠତମ ରିଡ଼ର୍ ହୋଇଥିବାରୁ ବିଭାଗୀୟ ମୁଖ୍ୟ ପଦରେ ନିଯୁକ୍ତ ହେଲି । ସେହି ଦିନ ହିଁ ଉଭୟ ସୀତାରାମବାବୁ ଓ ସୁଦର୍ଶନବାବୁ ବିଭାଗରେ ରିଡ଼ର୍ ପଦରେ ଯୋଗ ଦେଇଥିଲେ । ବିଭାଗରେ ବେଣୀମାଧବବାବୁ ଅବସର ଗ୍ରହଣ କରିବା ପରେ ଖାଲି ପଡ଼ିଥିବା ରିଡ଼ର୍ ପଦରେ ସ୍ଥାୟୀ ଭାବରେ ସୀତାରାମବାବୁ ଓ କାହ୍ନୁବାବୁ ଅବସର ନେବା ପରେ ପରେ ଖାଲି ହେଉଥିବା ପ୍ରଫେସର୍ ପଦରେ ଅସ୍ଥାୟୀ ଭାବରେ ରିଡ଼ର୍ ପଦ ସୃଷ୍ଟି କରାଯାଇ ସେ ପଦରେ ସୁଦର୍ଶନବାବୁ ବି ରିଡ଼ର ନିଯୁକ୍ତ ହୋଇଥିଲେ । ତାହା ହିଁ ଥିଲା ମନୋନୟନ କମିଟିର ସୁପାରିଶ୍ ତଥା ସିଣ୍ଡିକେଟ୍‌ର ନିର୍ଦ୍ଦେଶ ।

ମୁଁ ବିଭାଗୀୟ ମୁଖ୍ୟ ଥିବା ସମୟରେ ଧାରାବାହିକ ଭାବରେ ପ୍ରତ୍ୟେକ ଶନିବାର ଦିନ ସାପ୍ତାହିକ ସେମିନାର ଚଳାଇ ରଖିଲି । ପିଲାମାନଙ୍କର ଶନିବାର ଦିନ ଶୀଘ୍ର ବିଭାଗ ଛାଡ଼ିବାର ଅଭ୍ୟାସ ବନ୍ଦ ହୋଇଗଲା । ସରସ୍ୱତୀ ପୂଜାର ସମୟ ଆସିଲା । ମୁଁ ପିଲାମାନଙ୍କୁ କହିଲି ଯେ ତୁମେ ସାହିତ୍ୟର ଛାତ୍ରଛାତ୍ରୀ ଭାବରେ ଯଦି ନାଲିନେଳି କାଗଜକୁ ବିଭାଗୀୟ ପ୍ରକୋଷ୍ଠ ବା ବାରନ୍ଦାର କାନ୍ଥରେ ଲଗାଇ ତାହାକୁ ଅସୁନ୍ଦର କରିବ ନାହିଁ, ଟେପ୍-ରେକର୍ଡ଼ର୍ ମାଧ୍ୟମରେ ଶସ୍ତା ହିନ୍ଦୀ ଗୀତ ପରିବେଷଣ କରିବ ନାହିଁ, ଅତ୍ୟନ୍ତ ନିରାଡ଼ମ୍ବର ଭାବରେ ସରସ୍ୱତୀଙ୍କ ପୂଜାମଣ୍ଡପ ସଜାଇବ, ତାହେଲେ ମୁଁ ବିଭାଗୀୟ ମୁଖ୍ୟ ଭାବରେ ସେ ପୂଜାରେ ଯୋଗଦେବି । କେବଳ ସେତିକି ନୁହେଁ, 'ଚାଲ ! ଆମେ ସେ ଦିନ କବିତା ଓ ଗଳ୍ପ ପାଠର ଗୋଟିଏ ଅଧିବେଶନ କରି ପ୍ରକୃତ ବାଣୀ ବା ସରସ୍ୱତୀ ଆରାଧନା କରିବା' ବୋଲି ଗୋଟିଏ ପ୍ରସ୍ତାବ ଦେଲି । ସେ ଅଧିବେଶନର ମଧ୍ୟେ ମଧ୍ୟେ ତୁମ୍ଭମାନଙ୍କ ମଧ୍ୟରୁ କେହି କେହି ଭଜନ ପରିବେଷଣ ମଧ୍ୟ କରିପାରିବେ ବୋଲି ବି ପ୍ରସ୍ତାବ ରଖିଲି । ପିଲାମାନେ ମାତି ଗଲେ; ସେହିପରି ସରସ୍ୱତୀ ପୂଜା ହେଲା ଓ ଦିନ ସାରା ସେମାନେ କବିତା, ଗଳ୍ପପାଠ ଓ ଭଜନ ପରିବେଷଣରେ କଟାଇଲେ । ସମଗ୍ର ବିଶ୍ୱବିଦ୍ୟାଳୟରେ ଏପରି ନୂତନ ଧରଣର ବାଣୀ ଆରାଧନା ଅନେକଙ୍କର, ଏପରିକି ସ୍ୱୟଂ କୁଳପତିଙ୍କର ଦୃଷ୍ଟି ଆକର୍ଷଣ ମଧ୍ୟ କରିଥିଲା ଓ ଅନେକଙ୍କର ପ୍ରଶଂସା ଲାଭ କରିଥିଲା ।

ମୁଁ ବିଭାଗୀୟ ମୁଖ୍ୟ ଥିବା ସମୟରେ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗର ବ୍ୟବସ୍ଥା ଅନୁଯାୟୀ ବିଭିନ୍ନ ସମୟରେ ପ୍ରଫେସର୍ କୁଞ୍ଜବିହାରୀ ତ୍ରିପାଠୀ ଓ ପ୍ରହ୍ଲାଦ ପ୍ରଧାନ ପ୍ରତ୍ୟେକଙ୍କୁ ଦୁଇ ସପ୍ତାହ ପାଇଁ ପରିଦର୍ଶୀ ପ୍ରଫେସର୍ ଭାବରେ ଓଡ଼ିଆ ବିଭାଗକୁ ଆମନ୍ତ୍ରଣ କରିଥିଲି ଓ ସେମାନେ ମୋର ଆମନ୍ତ୍ରଣ ଗ୍ରହଣ କରି ବିଶ୍ୱବିଦ୍ୟାଳୟରେ ଦୁଇ ସପ୍ତାହ ଲେଖାଏଁ କଟାଇଥିଲେ ତଥା ପ୍ରତି ଦିନ ଆମ ବିଭାଗରେ ବିଭିନ୍ନ ବିଷୟରେ ବକ୍ତୃତା ପ୍ରଦାନ କରି ଛାତ୍ର ଓ ଅଧ୍ୟାପକମାନଙ୍କ ଜ୍ଞାନର ଦିଗନ୍ତକୁ ପ୍ରସାରିତ କରିବାରେ ଉଜ୍ଜ୍ୱଳ ଭୂମିକା ଗ୍ରହଣ କରିଥିଲେ । ସେମାନେ ବିଶ୍ୱବିଦ୍ୟାଳୟର ଗେଷ୍ଟ୍ ହାଉସ୍‌ରେ ଅବସ୍ଥାନ କରୁଥିବାରୁ ଛାତ୍ର ଓ ଅଧ୍ୟାପକମାନେ ଅନ୍ୟ ସମୟରେ ମଧ ସେମାନଙ୍କୁ ସାକ୍ଷାତ କରି ଆଲୋଚନା ମାଧମରେ ଲାଭବାନ୍ ହେବାର ସୁଯୋଗ ବି ପାଇଥିଲେ ।

ସେହି ସମୟରେ ଦିନେ ବିଭାଗରୁ ଗେଷ୍ଟ୍ ହାଉସ୍‌କୁ ଫେରିବା ବାଟରେ ପ୍ରଫେସର୍ ତ୍ରିପାଠୀ ମତେ କହିଲେ, "ଗଗନ ! ମୁଁ ଲକ୍ଷ୍ୟ କରି ଦେଖୁଛି ଯେ ତୁମେ ଅତ୍ୟନ୍ତ ଖର୍ଚ୍ଚୀ । କିନ୍ତୁ ତୁମର ଖର୍ଚ୍ଚ କମ୍ କରି କିଛି କିଛି ସଞ୍ଚୟ କର । ଭବିଷ୍ୟତରେ ଆବଶ୍ୟକ ହେବ ।" ମୋ ପ୍ରତି ବ୍ୟକ୍ତିଗତ ଭାବରେ ଶ୍ରଦ୍ଧାଶୀଳ ପ୍ରଫେସର୍ ତ୍ରିପାଠୀଙ୍କର ସେ ଉପଦେଶ ଆଜି ବି ମୋର ଅଭୁଲା ରହିଛି । ଓଡ଼ିଆ ଭାଷା ଓ ସାହିତ୍ୟ ଚର୍ଚ୍ଚା କ୍ଷେତ୍ରରେ, ବିଶେଷ ଭାବରେ ଓଡ଼ିଆ ଭାଷାର ଅନୁଶୀଳନରେ ସେ ମୋ ଠାରୁ ବହୁତ କିଛି ଆଶା କରୁଛନ୍ତି ବୋଲି ବହୁ ସମୟରେ ମତେ ତ କହୁଥିଲେ, ତା ପୁଣି ଅନ୍ୟମାନଙ୍କ ଆଗରେ ବି କହି ମତେ ଲଜ୍ଜିତ ବି କରୁଥିଲେ । ମୋର ଦୁର୍ଭାଗ୍ୟ ଯେ ବିଭିନ୍ନ ପ୍ରତିକୂଳ ପରିସ୍ଥିତିରେ ଗତି କରି ତାଙ୍କର ସେ ଆଶା ପୂରଣ କରିବାରେ ମୁଁ ଅସମର୍ଥ ହୋଇଛି ।

ଓଡ଼ିଆ ବିଭାଗର ଛାତ୍ରଛାତ୍ରୀମାନଙ୍କ ମଧରେ ମୋ ପ୍ରତି ବିଶେଷ ଅନୁରକ୍ତ କେତେ ଜଣ ଥିଲେ । ସେମାନଙ୍କ ମଧରେ ଥିଲେ ସରକାରୀ କଲେଜର ଓଡ଼ିଆ ଅଧ୍ୟାପକ ବିଭୁଦତ୍ତ ମିଶ୍ରଙ୍କ ପୁଅ ତୁହିନକାନ୍ତ ମିଶ୍ର । ସେ ଜଣେ ଖୁବ୍ ଭଲ ଛାତ୍ର ଥିଲେ ଓ ଗୋଟିଏ ଛାତ୍ର ଦଳର ନେତା ଥିଲେ । କିନ୍ତୁ ଛାତ୍ର ସଂସଦର ନିର୍ବାଚନ ଆଦିରେ ତାଙ୍କର କୌଣସି ଆଗ୍ରହ ନଥିଲା । କାହିଁକି କେଜାଣି ସେ ମତେ ଖୁବ୍ ଭଲ ପାଉଥିଲେ ତଥା ସମ୍ମାନ ବି କରୁଥିଲେ । ମୋ ନିକଟରେ କେବେ ବି ତାଙ୍କର ଦୁଷ୍ଟାମୀ ପ୍ରକାଶ ପାଉନଥିଲା । ଏହା କ୍ରମେ ବିଭାଗର ସମସ୍ତ ଶିକ୍ଷକଙ୍କ ଦୃଷ୍ଟି ଆକର୍ଷଣ କଲା । ସେହି ସମୟରେ ସ୍ନାତକୋତ୍ତର ବିଭାଗଗୁଡ଼ିକର ନାଟ୍ୟ ସଂସଦର ଉପସଭାପତି ହୋଇଥିଲେ ସୁଦର୍ଶନବାବୁ । ସେ ବର୍ଷ ବାର୍ଷିକ ନାଟକ ପ୍ରଦର୍ଶନ ସନ୍ଧ୍ୟାରେ ବିଶିଷ୍ଟ ଅତିଥି ହୋଇଥିଲେ ପ୍ରଖ୍ୟାତ ନାଟ୍ୟକାର

ମନୋରଞ୍ଜନ ଦାସ । ତାଙ୍କର ପ୍ରାରମ୍ଭ ଭାଷଣ ଶେଷ ହେବା ପରେ ମୋର ଯାହା ମନେ ଅଛି, ତାଙ୍କ କନ୍ୟା – ନାମ ବୋଧହୁଏ ଧରିତ୍ରୀ ଓ ସେ ବିଶ୍ୱବିଦ୍ୟାଳୟର ଛାତ୍ରୀ ଓ ଛାତ୍ରୀନିବାସର ଅନ୍ତେବାସିନୀ ଥିଲେ – ସେ ସନ୍ଧ୍ୟାରେ ପ୍ରଥମେ ନୃତ୍ୟ ପରିବେଷଣ କରିଥିଲେ । ତା' ପରେ ବିଶିଷ୍ଟ ବ୍ୟକ୍ତିମାନେ ପ୍ରସ୍ଥାନ କଲେ ଓ ଶ୍ରୋତା –ଦର୍ଶକମାନଙ୍କ ମଧ୍ୟରେ ପ୍ରଥମ ଧାଡ଼ିରେ ବସିଥିବା ମୁଁ ମଧ୍ୟ ଆସନ ଛାଡ଼ିଦେଇ ଘରକୁ ଫେରିଯିବାର ଉପକ୍ରମ କରୁଛି । ବାଟରେ ସୁଦର୍ଶନବାବୁ ଆସି ମତେ ଅଟକାଇଲେ । ସେ ମତେ ପୁଣି ଥରେ ଆସନ ଗ୍ରହଣ କରି ଅଭିନୟ ଶେଷ ହେବା ପର୍ଯ୍ୟନ୍ତ ରହିବା ପାଇଁ ଅନୁରୋଧ କଲେ । ମୋର ତ ରହିବାର ଆଦୌ ଇଚ୍ଛା ନଥିଲା । ସେ କିନ୍ତୁ ନଛୋଡ଼ବନ୍ଧା । ସେ ମୋ ହାତ ଭିଡ଼ି ଧରି କାରଣ ଅଛି ଓ ସେ ପରେ ତା' କହିବେ ବୋଲି ମାତ୍ର କହି ପୁଣି ଥରେ ଆସନ ଗ୍ରହଣ କରିବା ପାଇଁ କହିଲେ । ମୁଁ ବାଧ ହୋଇ ଫେରିଆସିଲି ଓ ନାଟକ ଶେଷ ହେବା ପର୍ଯ୍ୟନ୍ତ ବସିରହିଥିଲି ।

ଏ ଘଟଣାର ଏକ ପରିଶିଷ୍ଟ ବି ଅଛି । ସୁଦର୍ଶନବାବୁ ନାଟ୍ୟ-ସଂସଦର ଉପସଭାପତି ଥିବାରୁ ନିୟମ ଅନୁଯାୟୀ ସେ ହିଁ ନାଟ୍ୟାଭିନୟ ପାଇଁ ଅଫିସର୍ ଆଗତୁରା ଟଙ୍କା ଆଣିଥିଲେ ଓ ତାହାକୁ ଖର୍ଚ୍ଚ କରିବା ପାଇଁ ସମ୍ପାଦକ-ଛାତ୍ରକୁ ଦେଇଥିଲେ । ସମ୍ପାଦକ ଟଙ୍କା ଖର୍ଚ୍ଚ କରିଥିଲେ ହେଁ ତାହାର ହିସାବ ବା ବିଲ୍ ଆଦି ସୁଦର୍ଶନବାବୁଙ୍କୁ ଦେଲା ନାହିଁ ଓ ପରୀକ୍ଷା ପରେ କେତେବେଳେ ତାର ସାର୍ଟିଫିକେଟ୍ ଆଦି ନେଇ ବିଶ୍ୱବିଦ୍ୟାଳୟରୁ ଚାଲିଗଲେ ତା' ବି ସୁଦର୍ଶନବାବୁ ଜାଣିପାରିଲେ ନାହିଁ । ତେଣୁ ସେ ଆଗତୁରା ଆଣିଥିବା ଟଙ୍କା ତାଙ୍କରି ନାମରେ ହିଁ ରହିଲା । ସୁଦର୍ଶନବାବୁ ଅବସର ଗ୍ରହଣ କରିବା ସମୟରେ ସେ ଟଙ୍କାର ହିସାବ ଓ ବିଲ୍ ଦେଇନଥିବାରୁ ସେ ଟଙ୍କା ତାଙ୍କ ଠାରୁ ଆଦାୟ କରାଯିବା କଥା । ତେବେ ତା' କେବଳ ମାତ୍ର ଆନୁଷ୍ଠାନିକ ଭାବରେ ସିଣ୍ଡିକେଟ୍ ଅନୁମୋଦନ ସାପେକ୍ଷ । ସେତେବେଳେ ମୁଁ ସିଣ୍ଡିକେଟ୍‌ର ସଦସ୍ୟ ଥାଏ । କିନ୍ତୁ ସେ ଟଙ୍କା ତ ନାଟ୍ୟାଭିନୟରେ ଖର୍ଚ୍ଚ ହୋଇଛି ଓ ମୁଁ ନିଜେ ସେ ନାଟ୍ୟାଭିନୟ ବି ଦେଖିଛି ଓ ସେ କାରଣରୁ ସେ ଟଙ୍କା ସୁଦର୍ଶନବାବୁଙ୍କ ଠାରୁ ଆଦାୟ କରା ନଯାଉ ବୋଲି ଦୃଢ଼ ଭାବରେ ଦାବି କଲି । ସିଣ୍ଡିକେଟ୍‌ରେ ଓ କୌଣସି କର୍ମଚାରୀଙ୍କ ବିରୋଧ ସତ୍ତ୍ୱେ ମୋର ଦୃଢ଼ ଦାବି ଅନୁଯାୟୀ ସେ ଟଙ୍କା ସୁଦର୍ଶନବାବୁଙ୍କ ଠାରୁ ଆଦାୟ କରାଯାଇ ନଥିଲା । ତେବେ ତା' ବହୁ ପରର କଥା ।

ମୋର ଉପଦେଶ କ୍ରମେ ସେ ସମୟର ସ୍ନାତକୋତ୍ତର ଛାତ୍ର ତୁହିନ ତାଙ୍କ ଦୁଷ୍ଟପଣ ଛାଡ଼ିଦେଲେ ବୋଲି ମୋର ଧାରଣା । ପରିଣାମରେ ମଧ୍ୟ ସେ କ୍ଷତିଗ୍ରସ୍ତ ହୋଇଥିଲେ

ବୋଲି ବି ମୋର ବିଶ୍ୱାସ । ସେଥିପାଇଁ ଏ ପର୍ଯ୍ୟନ୍ତ ବି ମୁଁ ଅପରାଧବୋଧରୁ ମୁକ୍ତିଲାଭ କରିପାରି ନାହିଁ ।

**ମୋର ଭାଷା, ସାହିତ୍ୟ, ଇତିହାସ ଓ ସଂସ୍କୃତି ଚର୍ଚ୍ଚା**

**(ପରିଚର୍ଚ୍ଚାର ବଳୟ ପରିବର୍ତ୍ତନ)**

ଶାନ୍ତିନିକେତନରୁ ବ୍ରହ୍ମପୁର ଆସି ଭଲ ରୂପେ ହୃଦୟଙ୍ଗମ କଲି ଯେ ପଢ଼ାପଢ଼ି ଲେଖାଲେଖିର ସୁଯୋଗ ସଙ୍କୁଚିତ ହୋଇଗଲା, ଯାହା ମୁଁ ଅନୁମାନ କରି ସାକ୍ଷାତ୍କାର ସମୟରେ ଅନ୍ୟତମ ବିଶେଷଜ୍ଞ ଭି.ଆଇ.ସୁବ୍ରହ୍ମନିୟନ୍ (V.I. Subrahmanian)ଙ୍କୁ କହିଥିଲି । ତା'ର କାରଣ ଶାନ୍ତିନିକେତନର ବିରାଟ ପାଠାଗାର ପରିବର୍ତ୍ତେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ସେତେବେଳେ ଥିଲା ଅତି କ୍ଷୁଦ୍ର ପାଠାଗାର । ମାଛଟିଏ ବିଶାଳ ସମୁଦ୍ରରୁ ଆସି ଗୋଟିଏ ଛୋଟ ଗଡ଼ିଆ ବା ଟୁବି ଗଡ଼ିଆଟିଏରେ ପଡ଼ିବା ପରି ଘଟଣା । ତାର ପ୍ରତିକାର ପାଇଁ ଯେତେଦୂର ସମ୍ଭବ ମୋର ନିଜ ସଂଗ୍ରହର ଅଭିବୃଦ୍ଧି କରାଇବାକୁ ପଡୁଥାଏ । ସେତେବେଳେ ମୋର ଆର୍ଥିକ ସ୍ଥିତି ଶୋଚନୀୟ ଥାଏ । ଅବଶ୍ୟ ଚାକିରି କାଳ ମଧ୍ୟରେ ମୋର ଆର୍ଥିକ ସ୍ଥିତିର ବିଶେଷ ପରିବର୍ତ୍ତନ ବା ଉନ୍ନତି ହୋଇପାରିଲା ନାହିଁ । ଖାତା ଦେଖି ସେହିପରି ଅନ୍ୟ କେତେକ ଉପାୟରେ ଅର୍ଥୋପାର୍ଜନରେ କୁଣ୍ଠା ତ ଥିଲା; ତା ସହ ହାତକୁ ଆସୁଥିବା ଅର୍ଥ ମୁଁ କୌଣସି ନା କୌଣସି ଭାବରେ ଖର୍ଚ୍ଚ କରିଦେଉଥାଏ । ତା' ସତ୍ତ୍ୱେ ପୁସ୍ତକ ଓ ଅନ୍ୟାନ୍ୟ ତଥ୍ୟ ସଂଗ୍ରହ ଦିଗରେ ମୋର ପ୍ରଚେଷ୍ଟା ଅବ୍ୟାହତ ରଖିବା ପାଇଁ ଚେଷ୍ଟା କରିବାକୁ ପଡୁଥାଏ । ତେବେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କଥା ହେଉଛି, ଏହି ସମୟରେ ମଧ୍ୟ ମୁଁ ଓଡ଼ିଶାର ଭାଷା, ସାହିତ୍ୟ ଓ ବିଶେଷ ଭାବରେ ଇତିହାସ ଓ ସଂସ୍କୃତି ଚର୍ଚ୍ଚା କ୍ଷେତ୍ରରେ ନୂତନ ଦିଗ୍‌ଦର୍ଶନ ଦେବାର ପ୍ରଚେଷ୍ଟା କରିଥିଲି, ନୂତନ ପଥର ଅନ୍ୱେଷଣ କରିଥିଲି, ଯାହାର ଅୟମାରମ୍ଭ ହୋଇଥିଲା ଭୁବନେଶ୍ୱର ସାନ୍ଧ୍ୟ ମହାବିଦ୍ୟାଳୟରେ ମୁଁ ଯୋଗ ଦେବା ପରେ ପରେ । ମୋର ବିଶ୍ୱାସ ଯେ ଏତେ ବର୍ଷ ପରେ ମଧ୍ୟ ତାହାର ଦୀପ୍ତି ଓ ଦ୍ୟୁତି ତଥାପି ମଳିନ ପଡ଼ି ନାହିଁ ।

କହିଛି ତ ତାଆରି ଭିତରେ ଲେଖାଯାଇଥିଲା ଜର୍ମାନ୍ ପ୍ରୋଜେକ୍ଟ ପାଇଁ The Evolution of Priestly Power ନାମକ ଦୁଇଟି ପ୍ରବନ୍ଧ ବା ଗୋଟିଏ ପ୍ରବନ୍ଧର ଦୁଇଗୋଟି ପର୍ଯ୍ୟାୟ । ଏ ପ୍ରବନ୍ଧରେ ଜଗନ୍ନାଥ ମନ୍ଦିରର ସେବକ-ପୂଜକମାନେ ମଧ୍ୟ-ଯୁଗୀୟ ଓଡ଼ିଶାର ରାଜନୀତି କ୍ଷେତ୍ରରେ କିପରି ସକ୍ରିୟ ଅଂଶ ଗ୍ରହଣ କରିଥିଲେ ତା ଦେଖାଯାଇଥିଲା । ମୋ ପୂର୍ବରୁ କୌଣସି ଗବେଷକ ଏପରି କଥା କହିନଥିଲେ । ପୂର୍ବେ ଲେଖାଯାଇଥିବା

Jagannanth and Oriya Nationalism ପ୍ରବନ୍ଧ ସହ ଏ ପ୍ରବନ୍ଧ ଦୁଇଟି ଏ ସମୟରେ, ଅର୍ଥାତ୍ ୧୯୭୮ରେ, A.Eschmann, H.Kulke, G.C.Tripathi ସମ୍ପାଦିତ The Cult of Jagannath and the Regional Tradition of Orissa ପୁସ୍ତକରେ ପ୍ରକାଶ ପାଇ ଓଡ଼ିଶାରେ, ଓଡ଼ିଶା ବାହାରେ ଓ ଏପରିକି ବିଦେଶରେ ମତେ କିଛି ଖ୍ୟାତିର ଅଧିକାରୀ କରାଇଲା । କାରଣ ଏ ପୁସ୍ତକ ପାଶ୍ଚାତ୍ୟ ଦେଶର ସାମାଜ-ବିଜ୍ଞାନୀମାନଙ୍କ ଦ୍ୱାରା ବିଶେଷ ଭାବରେ ଆଦୃତ ଓ ପ୍ରଶଂସିତ ହୋଇଥିଲା । ଏ ପୁସ୍ତକର ପ୍ରକାଶନ ମତେ ପ୍ରଭୂତ ଆନନ୍ଦ ଦେଇଥିଲା ।

ତେବେ ମୋର ବହୁ ଚର୍ଚ୍ଚିତ ପୁସ୍ତକ 'ଜନଶ୍ରୁତି କାଞ୍ଚିକାବେରୀ' ହେଉଛି ଏ ସମୟର ସବୁ ଠାରୁ ଗୁରୁତ୍ୱପୂର୍ଣ୍ଣ ଅବଦାନ । ଏହା ବି ଥିଲା ମୋର ପ୍ରଥମ ପ୍ରକାଶିତ ପୁସ୍ତକ । ଇଂରାଜୀରେ ଲିଖିତ The Evolution of Priestly Power ପ୍ରବନ୍ଧର ସମ୍ପ୍ରସାରଣ ଏଥିରେ କରାଯାଇଥିଲା । ତା'ସହ ପୂର୍ବେ ୧୯୭୬ ରେ ପ୍ରକାଶିତ ପୁରୀ ଶ୍ରୀ ମନ୍ଦିରରେ ଗୀତଗୋବିନ୍ଦ ଗାନ ବିଷୟକ ମୋ ପ୍ରବନ୍ଧରେ ଜନଶ୍ରୁତି ବିଶ୍ଲେଷଣର ଯେଉଁ ଅଭିନବ ପଦ୍ଧତିର ପ୍ରଥମ ପରୀକ୍ଷା ନିରୀକ୍ଷା କରାଯାଇଥିଲା, ତାହାର ଆହୁରି ବୈଜ୍ଞାନିକ, ସ୍ପଷ୍ଟ ଓ ସଫଳ ଉପଯୋଗ ଏ ପୁସ୍ତକରେ କରାଯାଇଥିଲା । ଏହା ସେତେବେଳର ଗବେଷଣା ପ୍ରସଙ୍ଗରେ ଦେଖାଯାଉଥିବା ଦେଶପ୍ରୀତି ଓ ଦେବଭକ୍ତି ଜନିତ ଭାବପ୍ରବଣତା ଉପରେ ପ୍ରଚଣ୍ଡ ଆଘାତ ହାଣି ଓଡ଼ିଶାର ବୌଦ୍ଧିକ କ୍ଷେତ୍ରରେ ଏକ ଆଲୋଡ଼ନ ସୃଷ୍ଟି କରିଥିଲା ଓ ଅନେକଙ୍କୁ ନୂଆ ଦୃଷ୍ଟିକୋଣରୁ ଚିନ୍ତା କରିବା ପାଇଁ ଅନୁପ୍ରେରିତ କରିଥିଲା । ସେହିପରି ଏକ ମଧ-ଯୁଗୀୟ ଜନଶ୍ରୁତିକୁ ଜାତୀୟ-କିମ୍ବଦନ୍ତୀରେ କିପରି ପରିଣତ କରାଗଲା, ତାହାର ଆଲୋଚନା ମାଧମରେ ଏଥିରେ ଓଡ଼ିଆ ଜାତୀୟତାବାଦ ବିଷୟକ ଚର୍ଚ୍ଚାକୁ ଆଗେଇ ନେବାର ପ୍ରଚେଷ୍ଟା ବି ହୋଇଥିଲା । ମୋଟ ଉପରେ ପ୍ରତିଷ୍ଠିତ ବିଚାରଧାରାକୁ ଚାଲେଞ୍ଜ ପୂର୍ବକ ଏହା ମାଧମରେ ପରିଚର୍ଚ୍ଚାର ବଳୟକୁ ପରିବର୍ତ୍ତନ (Sifting the paradism of discourse) କରାଯାଇପାରିଥିଲା । କାଞ୍ଚିକାବେରୀ ଜନଶ୍ରୁତିଟିର ବହୁ ଦିଗସମ୍ପନ୍ନ ଅନୁଶୀଳନ ହେତୁ ଏ ବହି ସେତେବେଳର ବିଦଗ୍ଧ ସମାଜର ସଶ୍ରଦ୍ଧ ଦୃଷ୍ଟି ଆକର୍ଷଣ କରି ଓଡ଼ିଶାରେ ମତେ କିଛି ଖ୍ୟାତି ଆଣିଦେଇଥିଲା । ମୋର ଏଇ ପ୍ରଥମ ଓଡ଼ିଆ ପୁସ୍ତକର ପ୍ରକାଶନ ମଧ ମୋ ପକ୍ଷରେ ଆନନ୍ଦର ଅସରନ୍ତି ଉତ୍ସ ଥିଲା ।

ଏହି ସମୟରେ ଲେଖା ଯାଇଥିଲା ବି ମୋର 'ଓଡ଼ିଆ ଭାଷାଚର୍ଚ୍ଚାର ପରମ୍ପରା' ପୁସ୍ତକ । ପ୍ରଥମେ ୧୯୮୦ ଓ ୧୯୮୧ ରେ 'ଏଷଣା' ପୃଷ୍ଠାରେ ପ୍ରକାଶ ପାଇବା

ପରେ ୧୯୮୩ ରେ ଅବଶ୍ୟ ତାହା ପୁସ୍ତକ ଆକାରରେ ପ୍ରକାଶିତ ହୋଇଥିଲା । ୧୯ଶ ଶତକରେ ଓଡ଼ିଆ ଭାଷାଚର୍ଚ୍ଚାର ଧାରାବାହିକ ବିବରଣୀ ଏଥିରେ ଦିଆଯାଇଥିଲା, ଯାହା ପୂର୍ବରୁ ଉପଲବ୍ଧ ନଥିଲା । ଓଡ଼ିଶାରେ ମିଳୁ ନଥିବା ବହୁ ଦୁର୍ଲଭ ତଥ୍ୟର ଆଧାରରେ ଏହା ପ୍ରସ୍ତୁତ ହୋଇଥିଲା । ଉଦାହରଣ ସ୍ୱରୂପ ସେ ପର୍ଯ୍ୟନ୍ତ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟଙ୍କ 'ଉଡ଼ିୟା ସ୍ୱତନ୍ତ୍ର ଭାଷା ନହେ' ପୁସ୍ତକକୁ କୌଣସି ଓଡ଼ିଆ ଗବେଷକ ଦେଖିବା ତ ଦୂରର କଥା, ତାର ନାମକୁ ମଧ୍ୟ ଠିକ୍ ଭାବରେ ଜାଣି ନଥିଲେ । ଏପରିକି ମତେ ଥରେ ମୋର ପରମ ସମ୍ମାନାସ୍ପଦ ଅଧ୍ୟାପକ ଜାନକୀବଲ୍ଲଭ ମହାନ୍ତି (ଭରଦ୍ୱାଜ) ତାହା ଅସ୍ତିତ୍ୱହୀନ ବୋଲି ବି କହିଥିଲେ । ମୋ ପୁସ୍ତକରେ ସେ ପୁସ୍ତକର ମଲାଟ ତଥା କେତେକ ପୃଷ୍ଠାର ଫଟୋଚିତ୍ର ସହ ମୁଁ ତାହାର ସଂକ୍ଷିପ୍ତ ପରିଚୟ ବି ଦେଇଥିଲି । ସେହିପରି ମୋର ଏ ପୁସ୍ତକରେ ମୁଁ ଲଣ୍ଡନ୍‌ର ଅଫିସ୍‌ରୁ ସଂଗ୍ରହ କରି ତଥାପି ଅପ୍ରକାଶିତ ଗଦାଧର ତର୍କବାଗୀଶଙ୍କ ପ୍ରଥମ ଓଡ଼ିଆ ବ୍ୟାକରଣ ସହ ପାଣ୍ଡୁଲିପିର କେତେ ପୃଷ୍ଠାର ଫଟୋଚିତ୍ର ଦେଇଥିଲି । ତା ବ୍ୟତୀତ ୧୯ଶ ଶତକରେ ବିଦେଶରେ ତଥା ଦେଶରେ ହୋଇଥିବା ଭାଷାଚର୍ଚ୍ଚା ପରିପ୍ରେକ୍ଷୀରେ ଓଡ଼ିଆ ଭାଷାଚର୍ଚ୍ଚାକୁ ଦେଖିବାର ଉଦ୍ୟମ ବି ଏଥିରେ ହୋଇଥିଲା । ଏହା ବି ଓଡ଼ିଶାର ବହୁ ଗବେଷକଙ୍କର ଦୃଷ୍ଟି ଆକର୍ଷଣରେ ସମର୍ଥ ହୋଇଥିଲା ଓ ଏହାକୁ ପ୍ରଖ୍ୟାତ ଗବେଷକ ନଟବରବାବୁ ବି ପ୍ରଶଂସା କରିଥିଲେ । ତାହାର ପ୍ରଥମ କିସ୍ତି ଯେତେବଳେ 'ଏଷଣା'ରେ ବାହାରିଥିଲା, ଡକ୍ଟର୍ ହରେକୃଷ୍ଣ ମହତାବ ବି 'ଝଙ୍କାର'ର ସମ୍ପାଦକୀୟ ସ୍ତମ୍ଭରେ ତାହାର ପ୍ରଶଂସା କରିଥିଲେ । 'ଜନଶ୍ରୁତି କାଞ୍ଚିକାବେରୀ' ପରେ ଏହାର ପ୍ରକାଶନ ଗବେଷକ ଭାବରେ ମୋର ଖ୍ୟାତି ଅକ୍ଷୁଣ୍ଣ ରହିବାରେ ସହାୟକ ହୋଇଥିଲା । ଅବଶ୍ୟ ଏ ସବୁ ପାଇଁ ଅଧିକାଂଶ ତଥ୍ୟ ପୂର୍ବରୁ ସଂଗୃହୀତ ହୋଇଥିଲା ।

ସେଇ ସମୟରେ ବି ଲେଖାଗଲା ମୋର 'କୁଳବୃଦ୍ଧ' ପ୍ରବନ୍ଧ । ସେଇ ପ୍ରବନ୍ଧ ଲେଖାଯିବାର ଗୋଟିଏ ଇତିହାସ ଅଛି । ଶାରଳା ପୁରସ୍କାର ପ୍ରଥମେ ଯେତେବେଳେ ପ୍ରବର୍ତ୍ତନ କରାଗଲା, ସେତେବେଳେ ପୁରସ୍କାର ପାଇଁ ପୁସ୍ତକ ଚୟନ ପ୍ରକ୍ରିୟାରେ ତିନି ଗୋଟି ସ୍ତର ବା ପର୍ଯ୍ୟାୟ ଥିଲା । ପ୍ରଥମ ସ୍ତରରେ ଓଡ଼ିଆ ପାଠକପାଠିକା, ଲେଖକଲେଖିକା ଓ ବୁଦ୍ଧିଜୀବୀମାନଙ୍କ ଠାରୁ ନିର୍ଦ୍ଦିଷ୍ଟ ପୁସ୍ତକ ପାଇଁ ପ୍ରସ୍ତାବ ଆହ୍ୱାନ କରାଯାଉଥିଲା । ଦ୍ୱିତୀୟ ସ୍ତରରେ କୋଡ଼ିଏ ଜଣ ବିଶିଷ୍ଟ ବ୍ୟକ୍ତି ପ୍ରତ୍ୟେକ ସ୍ୱତନ୍ତ୍ର ଭାବରେ ପ୍ରସ୍ତାବିତ ପୁସ୍ତକଗୁଡ଼ିକ ମଧ୍ୟରୁ ମାତ୍ର ଗୋଟିଏ ପୁସ୍ତକର ପ୍ରାଥମିକ ଚୟନ କରୁଥିଲେ । ଶେଷ ସ୍ତରରେ ଇଲା ପଣ୍ଡା ଅଧ୍ୟକ୍ଷ ଓ କୁଞ୍ଜବିହାରୀ ଦାଶ କାର୍ଯ୍ୟକାରୀ ଅଧ୍ୟକ୍ଷ ଥାଇ ପାଞ୍ଚ ଜଣ ବିଚାରକ ବି ଥିଲେ । ମୋର ବନ୍ଧୁ ନିତ୍ୟାନନ୍ଦ ଶତପଥୀ ଶେଷ ସ୍ତରର ବିଚାରକ ମଣ୍ଡଳୀରେ ଥିଲେ ଓ ସମ୍ପାଦକ ଦାୟିତ୍ୱ ବି ନିର୍ବାହ କରୁଥିଲେ । ଇଏଠି କହି ରଖେ ବନ୍ଧୁ ନିତ୍ୟାନନ୍ଦ କବିଙ୍କ ଭାଷାରେ

ମୋର 'ଅନିବନ୍ଧନ ବାନ୍ଧବ' । କାହିଁକି କେଜାଣି ସେ ମତେ ଭଲ ପାଆନ୍ତି । ପୁଣି ଓଡ଼ିଶାର ବହୁ ଶିକ୍ଷାଜୀବୀ ଓ ବିଶେଷ ଭାବରେ ଓଡ଼ିଆ ଅଧ୍ୟାପକମାନେ ଈର୍ଷା-ବ୍ୟାଧିରେ ଆକ୍ରାନ୍ତ ଥିବା ସମୟରେ ତାଙ୍କ ସହ ବହୁ ବର୍ଷର ସମ୍ପର୍କ ଭିତରେ ଜାଣିଛି ଯେ ସେ କାହାରିକୁ କେବେ ଈର୍ଷା କରନ୍ତି ନାହିଁ । ଏ ଦୃଷ୍ଟିରୁ ସେ ନିଶ୍ଚିତ ଭାବରେ ଏକ ବ୍ୟତିକ୍ରମ । ଶାରଳା ପୁରସ୍କାରର ଦ୍ୱିତୀୟ ସ୍ତରର ପୁସ୍ତକ ଚୟନ ପ୍ରକ୍ରିୟାରେ କୋଡ଼ିଏ ଜଣଙ୍କ ମଧ୍ୟରେ ସେ ମତେ ମଧ୍ୟ ରଖି ଦେଇଥିଲେ ।

ପ୍ରଥମ ଶାରଳା ପୁରସ୍କାର ପାଇଁ ମୁଁ କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ 'ମୋ ସମୟର ଓଡ଼ିଶା' ବହିକୁ ମନୋନୀତ କରିଥିଲି । କିନ୍ତୁ ପରିଣାମରେ ସୁରେନ୍ଦ୍ର ମହାନ୍ତିଙ୍କର 'କୁଳବୃଦ୍ଧ' ହିଁ ସେ ପୁରସ୍କାର ପାଇଲା । ପୁରସ୍କାର ଘୋଷିତ ହେବାର ଅବ୍ୟବହିତ ପରେ ମୁଁ ଦିନେ ନିତ୍ୟାନନ୍ଦଙ୍କ ଘରକୁ ଯାଇଥାଏ । ମୁଁ ଯେଉଁ ପୁସ୍ତକକୁ ଚୟନ କରିଥିଲି ତା ପରିବର୍ତ୍ତେ 'କୁଳବୃଦ୍ଧ' ପୁରସ୍କାର ପାଇଥିବାରୁ ସେ ମୋର ପ୍ରତିକ୍ରିୟା ଜାଣିବା ପାଇଁ ଚାହିଁଲେ । ସୁରେନ୍ଦ୍ରବାବୁ ମୋର ଜଣେ ପ୍ରିୟ ଲେଖକ ହୋଇଥିବାରୁ ସେ ପୁରସ୍କାର ପାଇବାରେ ମୁଁ ବି ଆନନ୍ଦିତ ବୋଲି ତାଙ୍କୁ କହିଲି । କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ ପୁସ୍ତକରେ ବ୍ୟକ୍ତିଗତ ଆକ୍ଷେପ ଥିବାରୁ ହିଁ ତା ପୁରସ୍କାର ପାଇବାରେ ବଞ୍ଚିତ ହେଲା ବୋଲି ସେ ମତେ ଜଣାଇଲେ । ତେବେ 'କୁଳବୃଦ୍ଧ'ରେ ବି ତ ଉତ୍କଳମଣି ଗୋପବନ୍ଧୁଙ୍କ ସମ୍ପର୍କରେ ଅନୁଦାର ମନ୍ତବ୍ୟ ରହିଛି ବୋଲି ମୁଁ କହିବାରୁ (ହୁଏତ ସାମାନ୍ୟ ବିସ୍ମିତ ହୋଇ) ତା ମୁଁ ଦେଖାଇଦେଇପାରିବି କି ବୋଲି ସେ ମତେ ପ୍ରଶ୍ନ କଲେ । ମୁଁ ସେ ପ୍ରଶ୍ନର ଆସ୍ତିସୂଚକ ଉତ୍ତର ଦିଅନ୍ତେ ମୁଁ 'କୁଳବୃଦ୍ଧ' ଉପରେ ଗୋଟିଏ ପ୍ରବନ୍ଧ ଲେଖିବା ପାଇଁ ସେ ପ୍ରସ୍ତାବ ଦେଇ ତାହାକୁ ତାଙ୍କ ସମ୍ପାଦିତ 'ଇସ୍ତାହାର'ରେ ପ୍ରକାଶ କରିବେ ବୋଲି ବି କହିଲେ । ତାଙ୍କ ପ୍ରସ୍ତାବକୁ ମୁଁ ଆହ୍ୱାନ ବୋଲି ଗ୍ରହଣ କଲି ଓ ଲେଖିଲି 'କୁଳବୃଦ୍ଧ-ଏକ ଦୃଷ୍ଟିପାତ' ପ୍ରବନ୍ଧ । ତା 'ଇସ୍ତାହାର-୧୩'ରେ ୧୯୮୧ରେ ପ୍ରକାଶ ପାଇଥିଲା । ସେ ପ୍ରବନ୍ଧକୁ ଗୋପୀନାଥ ମହାନ୍ତି ବି ପ୍ରଶଂସା କରିଥିବାର ପରେ ଶୁଣିଛି । ତା' ପରେ ପ୍ରତିବର୍ଷ ପ୍ରତ୍ୟେକ ଶାରଳା ପୁରସ୍କାରପ୍ରାପ୍ତ ପୁସ୍ତକ ଉପରେ ସେପରି ସମାଲୋଚନାତ୍ମକ ପ୍ରବନ୍ଧ 'ଇସ୍ତାହାର'ରେ ପ୍ରକାଶ କରିବାର ଇଚ୍ଛା ବନ୍ଧୁ ନିତ୍ୟାନନ୍ଦଙ୍କର ଥିଲା । ତେବେ ଆଉ କେହି ପ୍ରବନ୍ଧ ଲେଖିବା ପାଇଁ ବାହାରିଲେ ନାହିଁ ।

ସେଇ ସମୟରେ ଅର୍ଥନୀତିର ପ୍ରଫେସର୍ ବାସୁଦେବ ସାହୁଙ୍କ ଦ୍ୱାରା ଆଦିଷ୍ଟ ହୋଇ ଆଖଣ୍ଡଳମଣିଙ୍କ ଉପଲକ୍ଷେ ପ୍ରକାଶ ପାଉଥିବା ଏକ ସ୍ମରଣିକା ପାଇଁ ମୁଁ ଲେଖିଲି,

'ଓଡ଼ିଶାରେ ଶୈବ-ବୈଷ୍ଣବ ବିବାଦର ଗୋଟିଏ ଅଧ୍ୟାୟ' ପ୍ରବନ୍ଧ । ତାହା ସେହି ୧୯୮୧ରେ ଦୁର୍ଗାଚରଣ କୁଅଁରଙ୍କ ସମ୍ପାଦିତ 'ପାଞ୍ଚଜନ୍ୟ' ସାହିତ୍ୟପତ୍ରରେ ପ୍ରକାଶ ପାଇଥିଲା । ପରେ ସେହି ପ୍ରବନ୍ଧକୁ ପରିବର୍ଦ୍ଧିତ କରିବା ପାଇଁ ମୁଁ ମୋର ଜର୍ମାନ୍ ବନ୍ଧୁ ହେର୍ମାନ୍ କୁଲ୍‌କେଙ୍କ ମାଧ୍ୟମରେ ବ୍ରିଟିଶ୍ ପାର୍ଲିଆମେଣ୍ଟର ବିବରଣୀ ବି ସଂଗ୍ରହ କରିଥିଲି । ତା' କିନ୍ତୁ ସମୟାଭାବରୁ ଏ ପର୍ଯ୍ୟନ୍ତ ହୋଇପାରି ନାହିଁ ।

ଅବଶ୍ୟ ପୁଣି ଏ ସବୁ ପାଇଁ କୌଣସି ଆନୁଷ୍ଠାନିକ ସ୍ୱୀକୃତି ମୁଁ ପାଇ ନଥିଲି । ତା ସତ୍ତ୍ୱେ ମୁଁ ମୋର କାମ ଅବ୍ୟାହତ ରଖିଥିଲି ।

ତା ବ୍ୟତୀତ ପୂର୍ବରୁ ୧୯୭୪ରେ ଲିଖିତ ହୋଇଥିଲେ ହେଁ, ସେତିକି ବେଳେ (୧୯୮୨ରେ) ବି ପୁସ୍ତକ ଆକାରରେ ପ୍ରକାଶ ପାଇଥିଲା ମୋର Descriptive Marphology of Oriya, ଯାହା ଅର୍ଥକୁ ପରିହାର କରି ଆଧୁନିକ ଭାଷାବିଜ୍ଞାନ-ସମ୍ମତ ବ୍ୟାକରଣ ରଚନା କ୍ଷେତ୍ରରେ ଏକ ନୂତନ ଦିଗଦର୍ଶନ ଦେଇଥିଲା । ସେହିପରି ଏ ସମୟରେ ୧୯୮୧ରେ ପ୍ରକାଶ ପାଇଥିଲା ମୋର ବନ୍ଧୁ ହେର୍ମାନ୍ କୁଲ୍‌କେଙ୍କ Orissa Bibliography, ଯାହାର ପ୍ରସ୍ତୁତିରେ ମୁଁ କୁଲ୍‌କେଙ୍କ ସହଯୋଗୀ ଥିଲି । ସମସ୍ତ ପ୍ରତିକୂଳ ପରିସ୍ଥିତି ମଧ୍ୟରେ ବି ଏ ସମୟ ମୋ' ପାଇଁ ଫଳପ୍ରସୂ ହିଁ ଥିଲା ।

●

*ଶ୍ରୀରାମ ନଗର,*

*ଭୁବନେଶ୍ୱର-୨*

# ଏଗାରଟି ବସନ୍ତର ଅନୁଭବ

ପ୍ରଫେସର କୃଷ୍ଣଚନ୍ଦ୍ର ପ୍ରଧାନ

ଋତୁଚକ୍ରର ଆବର୍ତ୍ତନ ମାଧ୍ୟମରେ ପ୍ରକୃତିରେ ଆସେ ପରିବର୍ତ୍ତନ । ସମୟକ୍ରମେ ଧରାପୃଷ୍ଠକୁ ଷଡ଼ଋତୁର ଆଗମନ ହେଲେହେଁ, ବସନ୍ତ ଋତୁ ପ୍ରତି ଥାଏ ମାନବ ସମାଜର ସର୍ବାଧିକ ଆକର୍ଷଣ । ବୋଧହୁଏ ଲୋକମାନସିକତାର ଏହି ଦୁର୍ବଳତା ପାଇଁ ବୈଦିକ ଯୁଗରୁ ଏଯାବତ୍ ସର୍ଜନଶୀଳ ସ୍ରଷ୍ଟାଗଣ ବସନ୍ତ ଋତୁକୁ ଋତୁରାଜ ଆଖ୍ୟା ପ୍ରଦାନ କରି ଆସିଛନ୍ତି । ପ୍ରକୃତି ପରି ମାନବ ଜୀବନରେ ମଧ୍ୟ ବିଭିନ୍ନ ଋତୁର ଆଗମନ ହୋଇଥାଏ । ବସନ୍ତ- ସ୍ୱପ୍ନ, ଆନନ୍ଦ, ପ୍ରେମ, ଶ୍ରଦ୍ଧା ଓ ମିଳନର ପ୍ରତୀକ ଭାବରେ ବିଶେଷ କରି ଯୌବନର ସୂକ୍ଷ୍ମ ଆବେଗର ଅନୁଭବ ରୂପେ ଆଧୁନିକ କବିଗଣଙ୍କ ଦ୍ୱାରା ବ୍ୟବହୃତ । ଏହି ଆଲେଖ୍ୟର ଶିରୋନାମା ହେଉଛି ମୋର ବ୍ୟକ୍ତିଗତ ଅଭିଜ୍ଞତା ଓ ଅନୁଭବର ବିଷୟ । ଆପଣମାନଙ୍କ ନିକଟରେ ସେହି ଅନୁଭବକୁ ବାଣ୍ଟିବାକୁ ଯାଉଛି ।

ବିଭିନ୍ନ ଶିକ୍ଷାୟତନରେ କାର୍ଯ୍ୟ କରିବା ପରେ କୌଣସି ଏକ ପବିତ୍ର ମୁହୂର୍ତ୍ତରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ଅଧ୍ୟାପନା ନିମିତ୍ତ ମତେ ନିର୍ବାଚନ କରାଯାଇଥିଲା । ନିର୍ବାଚନଠାରୁ କାର୍ଯ୍ୟରେ ଯୋଗଦେବା ପର୍ଯ୍ୟନ୍ତ ସମୟ ଥିଲା ମୋ ପାଇଁ ଅତ୍ୟନ୍ତ ଦୁର୍ବିସହ ଓ ଦୁଃଖଦାୟକ । କିଞ୍ଚିତ ବିଳମ୍ବରେ ହେଲେ ମଧ୍ୟ ସେହି ପବିତ୍ର ଅନୁଷ୍ଠାନରେ ଅଧ୍ୟାପକ ରୂପେ ଯୋଗଦେଲି ତା.୩୦.୬.୧୯୯୮ ମସିହାରେ କିଛି ଆଶଙ୍କା ଓ ତିକ୍ତ ଅନୁଭୂତିକୁ ସଙ୍ଗରେ ନେଇ । ଏକ ନକାରାତ୍ମକ ଅନୁଭବ ମୋ ଭିତରେ ବଳବତ୍ତର ରହିଥିଲା କାର୍ଯ୍ୟରେ ଯୋଗଦେବା ପର୍ଯ୍ୟନ୍ତ । ଯୋଗଦେବାର ପ୍ରଥମ ଦିନହିଁ ମୋ ଭିତରେ ରହି ଆସିଥିବା ଧାରଣା ସଂପୂର୍ଣ୍ଣ ବଦଳି ଯାଇଥିଲା ।

ବିଭିନ୍ନ ବିଭାଗରେ ମୁଁ ଏଯାବତ୍ କାର୍ଯ୍ୟ କରି ଆସିଥିଲେ ହେଁ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗରେ କାର୍ଯ୍ୟ କରିବାର ଅନୁଭୂତି ସଂପୂର୍ଣ୍ଣ ନିଆରା । ଏବେବି ସେହି ଅନୁଭୂତି ମୋ ଭିତରେ ସଂଜୀବିତ ରହିଛି । ମୁଁ ସେଠାରେ କେବଳ ଜଣେ ଅଧ୍ୟାପକ ଭାବରେ ନୁହେଁ; ଗୋଟିଏ ପରିବାରର ସଦସ୍ୟ ରୂପେ ପରିଚୟଟି ପାଇଲି । ସେହି ଏଗାର ବର୍ଷ କାର୍ଯ୍ୟକାଳ ମୋ ପାଇଁ ଥିଲା ଏଗାରଟି ମଧୁର ବସନ୍ତର ବିରଳ ଅନୁଭବ । ଏକାଧାରରେ ମୁଁ ପାଇଥିଲି ଚମତ୍କାର ଶ୍ରଦ୍ଧାଶୀଳ ବଡ଼ଭାଇ, ନିଛକ ସ୍ୱାର୍ଥହୀନ ଭଲପାଉଥିବା ଅନ୍ତରଙ୍ଗ ବନ୍ଧୁ, ସଦିଚ୍ଛା ଓ ସମ୍ମାନର ହାତ ବଢ଼ାଉଥିବା ଅନୁଜ; ବିଭାଗରେ କାର୍ଯ୍ୟ କରୁଥିବା ସୁହୃଦ୍ ପରୋପକାରୀ କର୍ମଚାରୀ, ଦିଗ୍‌ଦର୍ଶନ ଦେବା ପରି ବନ୍ଧୁ କ୍ୟୁରେଟର୍ ଏବଂ ସର୍ବୋପରି ସ୍ନେହ-ଶ୍ରଦ୍ଧା ଓ ଭକ୍ତିରେ ବିଗଳିତ ଛାତ୍ରଛାତ୍ରୀମାନଙ୍କୁ । ତା.୫.୬.୨୦୦୯

ମସିହାରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଛାଡ଼ିବା ପର୍ଯ୍ୟନ୍ତ ଗୋଟିଏ ପରିବାର ପରି ଆମେ ଚଳୁଥିଲୁ । ଶ୍ରଦ୍ଧା, ସମ୍ମାନ, ଅନ୍ତରଙ୍ଗପଣ ଓ ଆପଣାପଣର ଏକ ସନ୍ତୁଳିତ ରୂପ ଥିଲା ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗ । ଅନ୍ୟ ବିଶ୍ୱବିଦ୍ୟାଳୟରୁ ବିଭିନ୍ନ କାର୍ଯ୍ୟୋପଲକ୍ଷେ ଆସୁଥିବା ଶିକ୍ଷକମାନେ ଆମର ଆଦର ଓ ଭାଇଚାରା ଦେଖି କେବଳ ବିଗଳିତ ହେଉନଥିଲେ, ଆମକୁ ଈର୍ଷା ମଧ୍ୟ କରୁଥିଲେ । ଆନନ୍ଦରେ ମଧ୍ୟ ଗଦଗଦ ହୋଇ କହୁଥିଲେ- 'ବାସ୍ତବରେ କି ଚମତ୍କାର ଓଡ଼ିଆ ବିଭାଗ !!'

ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗ ହିଁ ମତେ ଜଣେ ସାହିତ୍ୟ ସମାଲୋଚକ ଭାବରେ ପ୍ରତିଷ୍ଠା ଦେଇଥିଲା । ମୋର ଅଧିକାଂଶ ସମାଲୋଚନା ସାହିତ୍ୟ ଏହି ବିଶ୍ୱବିଦ୍ୟାଳୟରେ ଅଧ୍ୟାପନା ସମୟରେ ରଚିତ । ସର୍ଜନଶୀଳ ପ୍ରତିଭାର ପ୍ରକୃଷ୍ଟ ବିକାଶ କ୍ଷେତ୍ର ଏହି ପବିତ୍ର ବିଭାଗ । ଉଭୟ ଶିକ୍ଷକ ଏବଂ ବିଦ୍ୟାର୍ଥୀମାନଙ୍କୁ ଅବାଧ ସୁଯୋଗ ଦେଇଥାଏ ବିଭାଗ ସେମାନଙ୍କର ସାରସ୍ୱତ ସାଧନା ନିମିତ୍ତ, ସେମାନଙ୍କ ପ୍ରତିଭାର ପରିପ୍ରକାଶ ପାଇଁ । କେବଳ ଓଡ଼ିଆ ବିଭାଗ ନୁହେଁ, ଅନ୍ୟ ବିଭାଗ ମଧ୍ୟ ସେହି ଭାଇଚାରାର ପରମ୍ପରା ଅକ୍ଷୁଣ୍ଣ ରଖିଥାନ୍ତି । ଏଠାରେ ପ୍ରତ୍ୟେକ ବିଭାଗ ସହିତ ଅନ୍ୟ ବିଭାଗର ରହିଥାଏ ଆନ୍ତରିକ ସଂପର୍କ, ଯାହା ଅନ୍ୟତ୍ର ବିରଳ ନିଶ୍ଚୟ । ସ୍ୱପ୍ନକୁ କିପରି ବାସ୍ତବତାରେ ରୂପାନ୍ତରିତ କରାଯାଇପାରେ ମୁଁ ପ୍ରଥମେ ଏହି ବିଭାଗ ଠାରୁ ଶିଖିଛି । ମଣିଷକୁ କିପରି ଭଲ ପାଇବାକୁ ହୁଏ, ପରିବାର ସଦସ୍ୟଙ୍କ ଦାୟିତ୍ୱବୋଧ, ଛଳନା ଓ କପଟହୀନ ଶ୍ରଦ୍ଧା; ସାଧନା ଓ ଦାୟିତ୍ୱବୋଧ, ସାହିତ୍ୟିକ ଅଭିରୁଚି, କର୍ତ୍ତବ୍ୟନିଷ୍ଠା, ଶୈକ୍ଷିକ ସତ୍ୟବାଦିତା- ଯାହା ମୋର ଜୀବନର ପଟ୍ଟ ପରିବର୍ତ୍ତନ କରିପାରିଥିଲା, ତାହାର ଅନ୍ତୁଡ଼ିଶାଳା ହେଉଛି ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗ । ଏଠାରେ ଶୈକ୍ଷିକ ଶଠତା ନଥିଲା । ନାକ୍ ଟିମ୍ ଏବଂ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗର ପରିଦର୍ଶନ ସମୟରେ ଉଭୟ ଶିକ୍ଷକ ଓ ଛାତ୍ରଛାତ୍ରୀ (ସେଥିରେ ମଧ୍ୟ ସାମିଲ ହେଉଥିଲେ ବିଭାଗର ପ୍ରାକ୍ତନ ଛାତ୍ର) ରାତି ଉଜାଗର ରହି ନିଜ ପକେଟରୁ ଅର୍ଥ ଖର୍ଚ୍ଚ କରି ବିଭାଗର ସୁନାମ ପାଇଁ ଯେପରି ଉତ୍ସର୍ଗୀକୃତ ମନୋଭାବ ପ୍ରଦର୍ଶନ କରିଥିଲେ, ବାସ୍ତବରେ ତାହା କେବଳ ପ୍ରଶଂସନୀୟ ନୁହେଁ, ଅନୁକରଣୀୟ ମଧ୍ୟ ।

ଏହି ବିଭାଗରେ ଆମେ କେବଳ ଭବିଷ୍ୟତ ପାଇଁ ସ୍ୱପ୍ନ ଦେଖୁନଥିଲୁ, ତାହାକୁ କିପରି ବାସ୍ତବ ଓ ସାକାର କରାଯାଇପାରିବ ସେଥିପାଇଁ ଉଦ୍ୟମରତ ରହୁଥିଲୁ । ବୋଧହୁଏ ସେଇଥିପାଇଁ ବେଳେବେଳେ ଅନ୍ୟ ବିଭାଗର ବନ୍ଧୁମାନେ ଆମକୁ ମଜାରେ ଚଟୁଳ ପରିହାସ କରି କହୁଥିଲେ- 'ଓଡ଼ିଆ ବିଭାଗ ସ୍ୱପ୍ନର ସୌଦାଗର ନୁହନ୍ତି ।' ସକାରାତ୍ମକ ଚିନ୍ତାଧାରାର ଜ୍ଞାନ ବୃକ୍ଷ ଏହି ଓଡ଼ିଆ ବିଭାଗ । ମନେପଡ଼େ କେତେବେଳେ କେବଳ ବନ୍ଧୁମାନଙ୍କ ସହିତ ଓ ଅନ୍ୟ କେତେବେଳେ ଛାତ୍ର-ଛାତ୍ରୀମାନଙ୍କ ସହିତ ବଣଭୋଜିର ମଧୁର ସ୍ମୃତି ବହୁଳ ଅନୁଭୂତ । ପ୍ରତିକୂଳ ପରିବେଶରେ ସଂଗ୍ରାମ କରି କିପରି ନିଜର ନାୟକପଣ ସାବ୍ୟସ୍ତ କରିବାକୁ ହୁଏ, ଏହି ବିଭାଗ ମତେ ତାହା ଶିଖାଇଥିଲା । ଜୀବନ ସରଳ ସମତଳ ରାସ୍ତା

ନୁହେଁ, ବନ୍ଧୁରତା ପରିପୂର୍ଣ୍ଣ । ତେଣୁ ନିଜକୁ ସେହିପରି ପ୍ରସ୍ତୁତ କରିବାକୁ ହେବ, ଏପରି ଏକ ଅନୁଭବ ପ୍ରାପ୍ତ ହୋଇଛି ଏଠାରେ । ପ୍ରତ୍ୟେକ ପରିବାରରେ ମତାନ୍ତର ରହିଥାଏ; ଆମ ପରିବାରରେ ମଧ୍ୟ ତାହା ବେଳେବେଳେ ଯେ ଘଟୁନଥିଲା, ତାହା ନୁହେଁ; ମାତ୍ର କୌଣସି କ୍ଷେତ୍ରରେ ଆମେ ମତାନ୍ତରକୁ ମନାନ୍ତରରେ ପରିଣତ ହେବାକୁ ଦେଇନାହୁଁ । ସମସ୍ତଙ୍କର ସ୍ୱାଧୀନ ମତବ୍ୟକ୍ତ କରିବାର ଅଧିକାର ରହିଥିଲା; ନିର୍ଦ୍ୱନ୍ଦ୍ୱରେ ଆମେ ବିଭାଗରେ ନିଜର ମତ ବାଣ୍ଟୁଥିଲୁ । ଉଚିତ ମତ ହିଁ (ବରିଷ୍ଠ-କନିଷ୍ଠ ନିର୍ବିଶେଷରେ) ଗ୍ରହଣୀୟ ହେଉଥିଲା ।

୨୦୦୯ ମସିହା ଜୁନ୍ ୫ ତାରିଖରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗରୁ ବିଦାୟ ନେଇ ୨୦୦୯ ଜୁନ୍ ୬ ତାରିଖରେ ସମ୍ବଲପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗରେ ପ୍ରଫେସର ରୂପେ ଯୋଗଦାନ କଲି । ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ମତେ ଅଧ୍ୟାପକରୁ ବରିଷ୍ଠ ଅଧ୍ୟାପକ ଓ ପ୍ରାଧ୍ୟାପକ କରିଥିଲା । ମାତ୍ର ସେଠାରେ ଅତିବାହିତ କରିଥିବା ସମୟ ମୋ ପାଇଁ ଥିଲା ମୋ ଜୀବନର ଶ୍ରେଷ୍ଠ ସମୟ । ଆଜି ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗ ତା'ର ସୁବର୍ଣ୍ଣ ଜୟନ୍ତୀ ପାଳନ କରୁଛି । ନିଶ୍ଚିତ ଭାବରେ ଯେକୌଣସି ଅନୁଷ୍ଠାନ ପାଇଁ ଏହା ଗର୍ବ ଓ ଗୌରବର ବିଷୟ । ପ୍ରାକ୍ତନ ଶିକ୍ଷକ ଭାବରେ ମୋର ବନ୍ଧୁଗଣ ମତେ ସମ୍ମାନିତ ଏବଂ ସମ୍ବର୍ଦ୍ଧିତ କରିଛନ୍ତି ସୁବର୍ଣ୍ଣ ଜୟନ୍ତୀ ପାଳନ ଅବକାଶରେ । ବିଭାଗ, ବିଶ୍ୱବିଦ୍ୟାଳୟ ତଥା ବନ୍ଧୁମାନଙ୍କ ନିକଟରେ ସେମାନଙ୍କର ଶ୍ରଦ୍ଧା ଓ ସଦିଚ୍ଛା ପାଇଁ କୃତଜ୍ଞତା ଜଣାଉଛି । ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗ ସିନା ତା'ର ପ୍ରତିଷ୍ଠାର ସୁବର୍ଣ୍ଣ ଜୟନ୍ତୀ ପାଳନ କରୁଛି; ମାତ୍ର ସେଠାରେ ମୁଁ ଯେଉଁ ଏଗାରଟି ମଧୁର ସ୍ମୃତିବହୁଳ ବସନ୍ତ ଅତିବାହିତ କରିଛି, ଆଜି ନିଷ୍କପଟ ଭାବରେ ସ୍ୱୀକାର କରୁଛି ଯେ ସେହି ଏଗାରଟି ବର୍ଷ ମୋ ପାଇଁ ଥିଲା ମୋ ଜୀବନର ସୁବର୍ଣ୍ଣ ସମୟ । ବିଭାଗ ସୁବର୍ଣ୍ଣ ଜୟନ୍ତୀ ପାଳନ ଅବକାଶରେ ମହୋତ୍ସବରେ ଉତ୍‌ଫୁଲ୍ଲିତ; ମୁଁ ମୋର ସୁବର୍ଣ୍ଣ ସମୟ ହରାଇ ଦେଇଥିବାରୁ ଦୁଃଖରେ ବିଷାଦିତ । କାୟ-ମନ-ବାକ୍ୟରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗର ସୁବର୍ଣ୍ଣ ଜୟନ୍ତୀ ସମାରୋହର ମଙ୍ଗଳ କାମନା କରୁଛି । ଓଡ଼ିଆ ବିଭାଗ ତାର ଗୌରବ, ଖ୍ୟାତି ଓ ଭାଇଚାରାପଣିଆ ସେହିପରି ଅବ୍ୟାହତ ରଖିଥାଉ, ଶ୍ରୀଜଗନ୍ନାଥଙ୍କ ଠାରେ କାମନା କରି ରାଧାନାଥଙ୍କ ଭାଷାରେ କହିବାକୁ ଚାହୁଁଛି-

"ସ୍ମୃତି ତ କଦାପି ନୁହେଁ ଫିଙ୍ଗିବାର
ପାରିଲେ ଫିଙ୍ଗି ସେ ଲଭନ୍ତା ନିସ୍ତାର ।"

•

*ପ୍ରଫେସର, ସ୍ନାତକୋତ୍ତର ଓଡ଼ିଆ ବିଭାଗ,*
*ସମ୍ବଲପୁର ବିଶ୍ୱବିଦ୍ୟାଳୟ*

# ଚଳାପଥର ଅଭୂଲା ସମ୍ଭାରଃ ସାରସ୍ୱତ କ୍ଷେତ୍ର ଭଂଜବିହାର

ଡ. କନକଲତା ସାହୁ

'ଭଂଜବିହାର' ଶବ୍ଦର ଉଚ୍ଚାରଣ ମାତ୍ରେ ଫେରିବାକୁ ପଡ଼େ ଦୀର୍ଘ ଚାଳିଶବର୍ଷ ତଳର କିଛି ମୁଗ୍ଧ ମୁହୂର୍ତ୍ତ ପାଖକୁ । ୧୯୭୯ ମସିହାରେ ଭଂଜବିହାରରେ ପାଦ ଦେଲାବେଳକୁ ଭଂଜବିହାର ଥିଲା ସବୁଜିମାମୟ ଏକ ସୁନ୍ଦର ଅନୁଷ୍ଠାନ । ଛାତ୍ରଛାତ୍ରୀ, କର୍ମଚାରୀ, ଶିକ୍ଷକମାନଙ୍କ ମଧ୍ୟରେ ସଂପର୍କ ଥିଲା ଖୁବ୍ ନିବିଡ଼ । ସତେ ଯେପରି ଏକ ପରିବାର ଥିଲା ଏ ଭଂଜବିହାର । ଭଂଜବିହାରକୁ ଆସୁଥିବା ରୋଡ଼ଟ୍ରେନ୍ ଥିଲା ସବୁଠାରୁ ନିଆରା । ଧଳାବସ୍‌ରେ ଶିକ୍ଷକ ଓ କର୍ମଚାରୀମାନେ ଆସୁଥିଲେ । ସବୁଠାରେ ଏକ ସମ୍ଭ୍ରାନ୍ତ ଛାପ ଅନୁଭବ କରିହେଉଥିଲା । ଆମେ ଆସିଲାପରେ ଓଡ଼ିଆ ବିଭାଗରେ ଆରମ୍ଭ ହେଲା 'ଯୁଗରୁଚି' ପ୍ରାଚୀର ପତ୍ରିକା । ନୂଆ ନୂଆ ପରିଚିତି ପାଇବାକୁ ବ୍ୟଗ୍ରଥିବା ତରୁଣ ପ୍ରାଣର ଶବ୍ଦପୁଂଜ ପ୍ରତି ସପ୍ତାହରେ ପ୍ରକାଶ ପାଉଥିଲା । ଦେଖାଦେଖି ପରବର୍ତ୍ତୀ ସମୟରେ 'ଚିତ୍ରଲେଖା' ଓ 'ଭଂଜଲିପି' ପ୍ରାଚୀର ପତ୍ରିକା ଭାବରେ ପ୍ରକାଶ ପାଇଲା । 'ଯୁଗରୁଚି' ମଧ୍ୟ ପରେ ପରେ ବାର୍ଷିକ ମୁଦ୍ରିତ ସଂଖ୍ୟା ଭାବରେ ପ୍ରକାଶ ପାଇଲା । ତେଣୁ କଳା, ସାହିତ୍ୟ, ସଂସ୍କୃତିର ପରିଚର୍ଚ୍ଚା ସହ ଅଧ୍ୟୟନ ଏ ପରିସରକୁ ଜୀବନ୍ତ ଗଢ଼ିତୋଳିଥିଲା ।

ବିଶ୍ୱବିଦ୍ୟାଳୟ ପରିସରରେ ଓଡ଼ିଆ ବିଭାଗ ଯେପରି ମନେ ହେଉଥିଲା ଏକ ସ୍ୱତନ୍ତ୍ର କ୍ଷେତ୍ର । ସର୍ବଭାରତୀୟ ଓଡ଼ିଆ ଅଧ୍ୟାପକ ସମ୍ମେଳନ, ବିଭିନ୍ନ ଆଲୋଚନାଚକ୍ର ସହ ବିଭାଗରେ ପ୍ରତ୍ୟେକ ଶନିବାର ଅନୁଷ୍ଠିତ ହେଉଥିଲା ପାଠଚକ୍ର । ପ୍ରଫେସର କାହ୍ନୁଚରଣ ମିଶ୍ର, ଡ. ବେଣୀମାଧବ ପାଢ଼ୀ, ଡ. ଗଗନେନ୍ଦ୍ରନାଥ ଦାଶ, ଡ. ଶ୍ରୀନିବାସ ମିଶ୍ର, ଡ. ସୁଦର୍ଶନ ଆଚାର୍ଯ୍ୟ, ଡ. ସୀତାରାମ ମହାପାତ୍ରଙ୍କ ପରି ବିଦ୍ୱାନ ଦେଉଥିଲେ ନୂତନ ଦିଗ୍‌ଦର୍ଶନ । ମନେଅଛି ବିଶିଷ୍ଟ ଭାଷାତତ୍ତ୍ୱବିତ୍ କୁଂଜବିହାରୀ ତ୍ରିପାଠୀ, ନାଟ୍ୟକାର ମନୋରଂଜନ ଦାସ, କବି ସଚ୍ଚିଦାନନ୍ଦ ରାଉତରାୟ, ସମାଲୋଚକ ଜାନକୀବଲ୍ଲଭ ମହାନ୍ତି ଅତିଥି ଓ ବକ୍ତା ଭାବରେ ଯୋଗଦେଇ ଛାତ୍ରମାନଙ୍କୁ ସାହିତ୍ୟଚର୍ଚ୍ଚା ଦିଗରେ ଉତ୍ସାହ ପ୍ରଦାନ କରୁଥିଲେ । ଅନ୍ନାବରମ୍, ଶ୍ରୀକୁର୍ମ୍ମମ, ମୁଖଲିଂଗମ୍ ପରି ଅନେକ ସ୍ଥାନକୁ ପରିଭ୍ରମଣରେ ଯାଉଥିଲେ ଛାତ୍ରଛାତ୍ରୀ । ସବୁଠାରୁ ବଡ଼କଥା ହେଲା ଜୀବନର ମାର୍ଗନିରୂପଣ ନିମନ୍ତେ ପ୍ରେରଣାଲାଭ କରିଥିଲୁ ଏହି ସମୟରେ । ଆଖି ପିଛୁଳାକେ ସରିଯାଇଥିଲା ସ୍ନାତକୋତ୍ତର ପାଠ୍ୟକ୍ରମ ।

ସୌଭାଗ୍ୟକ୍ରମେ ଏମ୍.ଫିଲ୍. କରିବା ସୁଯୋଗ ମତେ ମିଳିଥିଲା । 'ଓଡ଼ିଆ ସାହିତ୍ୟରେ ନୈଷଧୀୟ ପ୍ରଭାବ' ବିଷୟରେ ନିବନ୍ଧ ପ୍ରସ୍ତୁତି କଲାବେଳେ ସୁଦର୍ଶନ ସାର୍‌ଙ୍କ ଦିଗ୍‌ଦର୍ଶନ ଓ ସଦ୍ୟ ସଦ୍ୟ ଅଧ୍ୟାପକ ଭାବରେ ନିଯୁକ୍ତି ପାଇଥିବା ଅଗ୍ରଜ ପ୍ରତିମ ଅଶ୍ୱିନୀ କୁମାର ପଣ୍ଡାଙ୍କ ପ୍ରେରଣା, ସମଗ୍ର ଜୀବନ ନିମନ୍ତେ ଅପାଶୋରା ରହିବ । ପରବର୍ତ୍ତୀ ସମୟରେ ଉଚ୍ଚତର ଗବେଷଣା ନିମନ୍ତେ 'ମନୋଜ ଦାସଙ୍କ ଉପନ୍ୟାସରେ ପାରଂପରିକ ମୂଲ୍ୟବୋଧ' ନେଇ ମୋର କାମ ଆରମ୍ଭ କଲି । ପ୍ରଫେସର ଅଶ୍ୱିନୀ କୁମାର ପଣ୍ଡା ହେଲେ ମୋର ଦିଗ୍‌ଦର୍ଶକ । ଆଜି ପଛକୁ ଫେରିଚାହିଁଲା ବେଳକୁ ଚକିତ ହୋଇଯାଏ । ମୁଁ ଯେ ଏତେସବୁ ଗବେଷଣା କରିପାରିଲି, ତାହା ଭାବିଲାବେଳକୁ ଆଶ୍ଚର୍ଯ୍ୟ ହେବାକୁ ପଡ଼େ ।

ବାସ୍ତବିକ ଭଂଜବିହାରରେ ଅତିକ୍ରାନ୍ତ କରିଥିବା ସେ ସବୁ ସମୟ ଯଥାର୍ଥରେ ଥିଲା ଜୀବନର ମହାର୍ଘ ମୁହୂର୍ତ୍ତ । ସୁଦୂର ଭବାନିପାଟଣାରୁ ଆସି ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ, ଏକ ଐଶୀ ଆଶୀର୍ବାଦ ଥିଲା ନିଶ୍ଚୟ । ଆଜି ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ସ୍ନାତକୋତ୍ତର ଓଡ଼ିଆ ବିଭାଗ ସୁବର୍ଣ୍ଣଜୟନ୍ତୀ ପାଳନ କରୁଛି । ଏ ଦୀର୍ଘ ୫୦ ବର୍ଷରେ ଏହି ବିଭାଗ ଓଡ଼ିଆ ସାହିତ୍ୟ ଓ ସାଂସ୍କୃତିକ ଜଗତରେ ଆପଣାର ଏକ ସ୍ୱତନ୍ତ୍ର ପରିଚିତି ସୃଷ୍ଟି କରିପାରିଛି । ମୋ ପରି ଅନେକ ରାସ୍ତା ଖୋଜିଥିବା ମଣିଷକୁ ବଂଚିବାର ପଥ ଦେଖାଇଛି । ମଣିଷ ପରି ବଂଚିବାର ସୂତ୍ର ଶିଖାଇଛି । ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗର ସହାୟତାରେ ବିଭାଗରେ 'ଦକ୍ଷିଣ ଓଡ଼ିଶାର ଲୋକ ଓ ଆଦିବାସୀ ପରମ୍ପରା' ସଂପର୍କରେ ସ୍ୱତନ୍ତ୍ର ଅନୁଶୀଳନ ଆରମ୍ଭ ହୋଇଛି । ଦକ୍ଷିଣ ଓଡ଼ିଶା ସାଂସ୍କୃତିକ ଗବେଷଣା କେନ୍ଦ୍ର ମଧ୍ୟ ବିଭାଗର ନେତୃତ୍ୱରେ ପରିଚାଳିତ ହେଉଛି । ଏ ବିଭାଗର ପ୍ରାକ୍ତନ ଛାତ୍ରୀ ଭାବରେ ଦୂରରେ ରହି ମଧ୍ୟ ଆମେ ଗର୍ବ କରୁଛୁ । ଆଜିର ଏ ଲଗ୍ନରେ କେବଳ ଏତିକିମାତ୍ର ଆଶା, ଏ ବିଭାଗ ଏମିତି ବାଣୀ ଆରାଧନାରେ ଲିପ୍ତ ରହି ଜାତି ଓ ମାଟିର ମହତ୍ତ୍ୱକୁ ବିଶ୍ୱବକ୍ଷରେ ପ୍ରକଟିତ କରୁ ଏବଂ ଅସଂଖ୍ୟ ସଂସ୍କୃତିସଂପନ୍ନ ମଣିଷ ତିଆରି କରି ଜାତୀୟ କର୍ତ୍ତବ୍ୟ ନିଷ୍ଠାର ସହ ସଂପାଦନ କରୁଥାଉ ।

●

*କୃଷ୍ଣେନ୍ଦୁ ସ୍ମୃତି,*
*ହିଲ୍‌ପାଟଣା, ବ୍ରହ୍ମପୁର-୫*

# ଜୀବନପାତ୍ର ମୋ ଭରିଛ କେତେ ମତେ

ପ୍ରଫେସର ପ୍ରସନ୍ନ କୁମାର ସ୍ୱାଇଁ

**ପ୍ରଥମ ଦେଖାରେ ମନ ମୋହିଲା:**

ସେଦିନ ସୋମବାର, ଜୁନ୍ ତେଇଶି ତାରିଖ ୧୯୯୭ ମସିହା । ଅଧ୍ୟାପକ ଭାବରେ ଭଞ୍ଜବିହାରର ଓଡ଼ିଆ ବିଭାଗରେ ଯୋଗଦେବା ମୋ ପାଇଁ ଏକ ସ୍ମରଣୀୟ ଘଟଣା ଥିଲା । ତା'ପୂର୍ବରୁ ୧୯୮୫ ମସିହାରେ ମୁଁ ବାଣୀବିହାରରେ ଅଧ୍ୟୟନ କାଳରେ ଭଞ୍ଜନଗରନିବାସୀ ବାଣୀବିହାରର ମୋର ଜଣେ ସହଧ୍ୟାୟୀ ବନ୍ଧୁଙ୍କ ସହିତ ବ୍ରହ୍ମପୁର ବୁଲିଆସିବା ଅବସରରେ ଭଞ୍ଜବିହାର ଦ୍ୱିତୀୟ ଛାତ୍ରାବାସରେ ଦୁଇ ତିନିଦିନ ରହିବାର ସୁଯୋଗ ପାଇଥିଲି । ଅପାସୋରା ସେ ସ୍ମୃତି । ସେତେବେଳେ ଓଡ଼ିଆ ବିଭାଗର ବୋଧହୁଏ ମୁଖ୍ୟ ଥାଆନ୍ତି ପ୍ରଫେସର ଶ୍ରୀନିବାସ ମିଶ୍ର । ମୋର ସାଙ୍ଗ ତାଙ୍କୁ ଦୂରରୁ ଦେଖେଇଦେଲା ଏବଂ ଦେଖେଇଦେଲା ଡ. ସୁଦର୍ଶନ ଆଚାର୍ଯ୍ୟଙ୍କ ସହିତ ଅଧ୍ୟାପକ ଦେବୀପ୍ରସନ୍ନ ପଟ୍ଟନାୟକ ଓ ଅଧ୍ୟାପକ ଅଶ୍ୱିନୀ କୁମାର ପଣ୍ଡାଙ୍କୁ । ଝାଉଁବଣ ଘେରା ଭଞ୍ଜବିହାର କ୍ୟାଣ୍ଟିନ୍‌ରେ ଜଳଖିଆ ଖାଇଲୁ - ଇଡ଼୍‌ଲି, ସମ୍ବର ଓ ଚଟ୍‌ନୀ । ଖୁବ୍ ସୁସ୍ୱାଦୁ ଓ ତୃପ୍ତିକର । ଦେଖିଲି କ୍ୟାଣ୍ଟିନ୍‌ର ଛାତରେ ଲାଗିଥିବା ଗୋଟିଏ ଦୁଇଟା ହୁକ୍‌ରୁ ଦଉଡ଼ିରେ ଝୁଲି ପଡ଼ିଥିବା ମାଠିଆ ଭିତରୁ ହିନ୍ଦୀ ଗୀତର ଆୱାଜ୍ ଭାସି ଆସୁଛି । ଆରେ ! ନୂଆ କଥା । ଆଗରୁ ଏମିତି ଦୃଶ୍ୟ ମୁଁ କେବେ ଦେଖିନଥିଲି । ମୋର ବନ୍ଧୁଜଣକ ମୋତେ ପୁଣି ରୋଡ୍ ଟ୍ରେନ୍‌ରେ ଭଞ୍ଜବିହାରରୁ ବ୍ରହ୍ମପୁର ନେଲାବେଳେ ମନେହେଲା ଇଏତ କଲିକତାରେ ଚାଳିତ ଟ୍ରାମ୍‌ର ମିନି ସଂସ୍କରଣ ! ଚାଲିଲା ବେଳେ ବି ଚଢ଼ିବା ଓ ଓହ୍ଲେଇବା ସମ୍ଭବ ହେଉଛି । ଚତୁର୍ଦ୍ଦିଗରେ ଉଚ୍ଚାଉଚ୍ଚା କିଆଗଛ ଓ ତା' ଫୁଲର ମହକ, ସୁରମ୍ୟ ଝାଉଁବୃକ୍ଷରାଜୀର ମତମତାଣିଆ ସାଇଁ ସାଇଁ ଝଙ୍କାର । ସ୍ନାତକୋତ୍ତର ବିଭାଗ ଆଡୁ ଲାଇବ୍ରେରୀ ଦେଇ ଏରୋଡ୍ରମ୍ ପଡ଼ିଆ ଅତିକ୍ରମ କଲାବେଳେ ଆଦ୍ୟ ଆଷାଢ଼ର ପ୍ରତୀକ ସ୍ୱରୂପ ବାରମ୍ବାର ନାଲି ଟୁକ୍‌ଟୁକ୍ ସାଧବବୋହୂଗୁଡ଼ିକ ପରିଦୃଶ୍ୟମାନ ହେଲେ । ମନେ ପଡ଼ିଗଲା କେଉଁ ଶୈଶବରେ ଆମ ଗାଁର ଘାସ ପଡ଼ିଆରେ ସାମ୍ନା କରିଥିବା ଏହି ନିରୀହ କୀଟମାନଙ୍କୁ । ପୃଥିବୀର ଶୋଭାମଣ୍ଡନ ସ୍ୱରୂପ ପୁଣ୍ୟଭୂମି ଭଞ୍ଜମାଟିର ଶ୍ରୀବୃଦ୍ଧିରେ ସହାୟକ ହୋଇଛନ୍ତି ଏମାନେ । ଆଜି ୩୪-୩୫ ବର୍ଷ ପରେ ଭଞ୍ଜମାଟିରେ ସାଧବବୋହୂମାନଙ୍କୁ ସେହି ଆଦ୍ୟ ଆଷାଢ଼ରେ ବାରମ୍ବାର ଅନ୍ୱେଷଣ କରି ନିରାଶ ହେବାକୁ ପଡ଼ିଛି । ଚମତ୍କାର ସେଦିନମାନଙ୍କର ସେସବୁ ଦୃଶ୍ୟ !

**ଶିକ୍ଷକ ଭାବେ ଯୋଗଦେଲି:**

ସୌଭାଗ୍ୟକୁ ସେଇ ବିଶ୍ୱବିଦ୍ୟାଳୟରେ ଶିକ୍ଷକଭାବେ ଯୋଗଦେବା ମୋ' ପାଇଁ ଏକ ସୁଖଦ ଅନୁଭବ ଓ ଭଗବାନଙ୍କ ଆଶୀର୍ବାଦ ନିଶ୍ଚୟ । ଯୋଗଦେବା ଦିନ ଏଗାରଟା ବେଳେ ବିଭାଗରେ ପହଞ୍ଚିଲି । ମୁଖ୍ୟ ଥା'ନ୍ତି ଡ. ଦେବୀପ୍ରସନ୍ନ ପଟ୍ଟନାୟକ । ତାଙ୍କର ସେଦିନ ବିଭାଗକୁ ଆସିବା କୌଣସି କାରଣରୁ ବିଳମ୍ବ ହେଲା । ଭାବିଲି ଇଏ ମୋତେ ବୋଧହୁଏ ଗ୍ରହଣ କରିବାକୁ ଅପ୍ରସ୍ତୁତ । ପୂର୍ବରୁ ପ୍ରଫେସର ଦାଶରଥି ଦାସଙ୍କ ଠାରୁ ତାଙ୍କ ସଂପର୍କରେ ଶୁଣିଥାଏ- "ଖୁବ୍ ସ୍ନେହୀ, ଭାବପ୍ରବଣ ଓ ଗୁଣୀ ଲୋକ ଦେବୀ ବାବୁ, ଅଶ୍ୱିନୀ ବାବୁଙ୍କ ବିଚାର ବୁଦ୍ଧି ଖୁବ୍ କମ୍ ବ୍ୟକ୍ତିଙ୍କ ନିକଟରେ ଅଛି ।" ମାତ୍ର ସେଦିନ ଉଭୟଙ୍କୁ ଅପରାହ୍ଣ ସାଢ଼େ ବାରଟା ପର୍ଯ୍ୟନ୍ତ ବିଭାଗରେ ନ ଦେଖିବାରୁ ମନରେ ପ୍ରଶ୍ନବାଚୀଟିଏ ସୃଷ୍ଟି ହେବା ସ୍ୱାଭାବିକ । ତା'ପରେ ଉଭୟ ଆସିଲେ । ମୋର ପରିଚୟ ଦେଲି । ମୁଖ୍ୟ ଭାବରେ ଦେବୀ ସାର୍ ମୋତେ ଓ ମୋ ସହିତ ସେଦିନ ଯୋଗ ଦେଇଥିବା ସଦାନନ୍ଦ ବାବୁଙ୍କୁ ଖୁବ୍ ଶ୍ରଦ୍ଧାର ସହିତ ସ୍ୱାଗତ କରି ଆମପାଇଁ ଜଳଖିଆ ଓ ଥଣ୍ଡା ପାନୀୟ ମଗାଇଲେ । ମୋର ରହଣି ସଂପର୍କରେ କହିବାରୁ ସଂଗେସଂଗେ ବିଶ୍ୱବିଦ୍ୟାଳୟର ତତ୍କାଳୀନ ଉନ୍ନୟନ ଅଧିକାରୀ ଶ୍ରୀ ଅଶୋକ କୁମାର ସାହୁଙ୍କ ନିକଟକୁ ନେଇ ସାମୟିକ ଭାବେ ଖାଲିଥିବା କୁଳସଚିବଙ୍କ ବାସଭବନରେ ରହିବା ବ୍ୟବସ୍ଥା କରିଦେଲେ । ସେତେବେଳେ କୁଳସଚିବ ଥାଆନ୍ତି ପଦାର୍ଥ ବିଜ୍ଞାନ ବିଭାଗର ବରିଷ୍ଠ ପ୍ରଫେସର ଶାରଦା ପ୍ରସାଦ ମହାନ୍ତି । ଦେବୀ ସାର୍ ଆମ ଉଭୟଙ୍କୁ ତାଙ୍କ ନିକଟକୁ ନେଇ ଆମର ପରିଚୟ ସହିତ ବିଭାଗରେ ଯୋଗଦାନ ସଂପର୍କରେ ସେ ପ୍ରଫେସର ମହାନ୍ତିଙ୍କୁ ସୂଚନା ଦେଲେ । ପରେ ଜାଣିଲି ପ୍ରଫେସର ମହାନ୍ତି ଆମ ଗାଁ ପାଖର ଲୋକ ବୋଲି ।

ଅଧ୍ୟାପକ ଭାବରେ ଯୋଗଦେବାର ପଥମ ଦିନରୁ ହିଁ ମୁଁ ଭଞ୍ଜବିହାର ପ୍ରେମରେ ଛନ୍ଦି ହୋଇଯାଇଥିଲି । ପ୍ରଥମେ କିଛିଦିନ ଭାଷାବିଜ୍ଞାନ ବିଭାଗର ପ୍ରଫେସର ଗଗନେନ୍ଦ୍ରନାଥ ଦାଶଙ୍କର ବାସଭବନରେ ରହିବାର ସୁଯୋଗ ପାଇଥିଲି । ସେତେବେଳକୁ ସେ ଥାଆନ୍ତି ଜର୍ମାନୀରେ । ତାଙ୍କ ସହଧର୍ମିଣୀ ଶ୍ରୀମତୀ ରମାଦେବୀଙ୍କ ସହିତ ମୋର ପରିଚୟ ନଥାଏ । ମାତ୍ର ପ୍ରଫେସର ଦାଶ ବନ୍ଧୁ ସଦାନନ୍ଦ ବାବୁଙ୍କର ପିଏଚ୍.ଡି. ତତ୍ତ୍ୱାବଧାରକ ଥାଆନ୍ତି । ସେହି ସୁଯୋଗରେ ତାଙ୍କ ସହିତ ପ୍ରଫେସର ଦାଶଙ୍କ ଘରକୁ ଯିବା ଆସିବା ଅବକାଶରେ ଅନ୍ୟ ବ୍ୟବସ୍ଥା ପର୍ଯ୍ୟନ୍ତ ଶ୍ରୀମତୀ ଦାଶ ଆମ ଉଭୟଙ୍କୁ ତାଙ୍କ ଘରେ କିଛିଦିନ ରହିବା ପାଇଁ ନିମନ୍ତ୍ରଣ କଲେ । ମୁଁ ତାଙ୍କ ଘରେ ପ୍ରାୟ ଏକ ମାସରୁ ଊର୍ଦ୍ଧ୍ୱ ରହିଥିଲି । ସେଥିପାଇଁ ଉଭୟ ପ୍ରଫେସର ଦାଶ ଏବଂ ଶ୍ରୀମତୀ ଦାଶଙ୍କ ନିକଟରେ ମୁଁ କୃତଜ୍ଞ ।

**ଛାତ୍ରୀନିବାସର ସହକାରୀ ତତ୍ତ୍ୱାବଧାରକ:**

ଆମ ବିଶ୍ୱବିଦ୍ୟାଳୟ ପରିସରରେ ୧୯୯୯ ମହାବାତ୍ୟାର ଖୁବ୍ ପ୍ରଭାବ ପଡ଼ିଥିଲା । ଏହି ବାତ୍ୟା ଯୋଗୁଁ ବିଶ୍ୱବିଦ୍ୟାଳୟ ପରିସରରୁ ପ୍ରାୟ ୨୫ ଭାଗ ବୃକ୍ଷ ଧରାଶାୟୀ ହୋଇଥିଲା । ସେତେବେଳେ ମୁଁ ଥିଲି ସାବେରୀ ଛାତ୍ରୀନିବାସର ସହକାରୀ ତତ୍ତ୍ୱାବଧାରକ । ମହିଳା ଛାତ୍ରୀନିବାସରେ ଜଣେ ପୁରୁଷ ତତ୍ତ୍ୱାବଧାରକ ! ଦାୟିତ୍ୱ ଗ୍ରହଣ କରିବା ପରେ ତତ୍କାଳୀନ କୁଳପତିଙ୍କୁ ମୋର ମନର କଥା ଜଣାଇଲି । ମାତ୍ର ସେ କିଛି ଶୁଣିଲେ ନାହିଁ । କହିଲେ ଚାକିରି କଲେ ଅଧ୍ୟାପନା ସହିତ ବିଶ୍ୱବିଦ୍ୟାଳୟର ବିଭିନ୍ନ କାର୍ଯ୍ୟର ଦାୟିତ୍ୱ ଗ୍ରହଣ କରିବାକୁ ପଡ଼ିବ । ସୁତରାଂ ତତ୍କାଳୀନ ଇତିହାସ ବିଭାଗର ପ୍ରଫେସର ଅମିୟ କୁମାର ପଟ୍ଟନାୟକ ଓ ରସାୟନ ବିଭାଗର ପ୍ରଫେସର ଗଣେଶ ପ୍ରସାଦ ପାଣିଗ୍ରାହୀଙ୍କ ପରି କେତେଜଣ ବରିଷ୍ଠ ପ୍ରଫେସରଙ୍କ ପରାମର୍ଶ କ୍ରମେ ମୋତେ ୧୯୯୯-୨୦୦୧ ପର୍ଯ୍ୟନ୍ତ ସେହି ଛାତ୍ରୀନିବାସର ଦାୟିତ୍ୱ ନିର୍ବାହ କରିବାକୁ ପଡ଼ିଥିଲା । ପୁଣି ମହାବାତ୍ୟାର ସମ୍ମୁଖୀନ ହେବା ମଧ୍ୟରେ ଛାତ୍ରୀନିବାସର ଭିନ୍ନ ଭିନ୍ନ ସମସ୍ୟା ସହିତ ଓତପ୍ରୋତ ଜଡ଼ିତ ରହି ସମସ୍ତଙ୍କ ସହଯୋଗରେ ସେସବୁର ସମାଧାନ ପନ୍ଥା ନିର୍ଣ୍ଣୟ କରୁଥିଲି । ପରେ ବିଶ୍ୱବିଦ୍ୟାଳୟରେ ବିଭିନ୍ନ ଛାତ୍ରାବାସରେ ପ୍ରାୟ ତିନି-ଚାରିଥର ସହକାରୀ ତତ୍ତ୍ୱାବଧାରକ ଓ ତତ୍ତ୍ୱାବଧାରକ ହେବାରେ, ବିଶେଷ କରି ଛାତ୍ରାବାସର ସୀମିତ ସମ୍ବଳମଧ୍ୟରେ ଛାତ୍ରଛାତ୍ରୀଙ୍କ ମନ ନେଇ ସେମାନଙ୍କର ସମସ୍ୟା ସମାଧାନ କରିବାରେ ମୋର ପ୍ରାୟତଃ କୌଣସି ଅସୁବିଧା ହୋଇନାହିଁ, ବରଂ ଓଡ଼ିଶାର ବିଭିନ୍ନ ଜିଲ୍ଲା ଓ ଓଡ଼ିଶା ବାହାରୁ ଆସି ବିଶ୍ୱବିଦ୍ୟାଳୟର ବିଭିନ୍ନ ଛାତ୍ରାବାସରେ ରହି ଅଧ୍ୟୟନରତ ଛାତ୍ରଛାତ୍ରୀମାନେ ମୋର ଅନ୍ତରଙ୍ଗ ହୋଇଛନ୍ତି । ଦୀର୍ଘଦିନ ପରେ ବି ସେମାନେ କେଉଁଠି କେତେବେଳେ ଦେଖାହେଲେ ଖୁବ୍ ଶ୍ରଦ୍ଧା ଓ ସମ୍ମାନ ଜଣାଇଛନ୍ତି । ଜଣେ ଶିକ୍ଷକ ପକ୍ଷରେ ଏହାଠୁ ଆଉ ଅଧିକ କ'ଣ ଲୋଡ଼ା !

**ସାଂସ୍କୃତିକ ସଂଯୋଜକ:**

ବିଭାଗରେ ପ୍ରାଧ୍ୟାପକ ହେଉ ନ ହେଉଣୁ ବିଭିନ୍ନ ସମୟରେ ପ୍ରାୟ ଚାରି-ପାଞ୍ଚ ବର୍ଷ ବିଶ୍ୱବିଦ୍ୟାଳୟ ସାଂସ୍କୃତିକ ସଂଯୋଜକ ଭାବେ କାର୍ଯ୍ୟ କରିବାର ସୁଯୋଗ ପାଇଛି । ବିଶ୍ୱବିଦ୍ୟାଳୟରେ ଯୁବମାନସଙ୍କ ମଧ୍ୟରେ ରହିଥିବା ଅନ୍ତର୍ନିହିତ ମେଧାଶକ୍ତିକୁ ଉପଯୁକ୍ତ ବିନିଯୋଗ କରି ସର୍ବଭାରତୀୟସ୍ତରରେ ସେମାନଙ୍କର ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିବାପାଇଁ ଭାରତୀୟ ବିଶ୍ୱବିଦ୍ୟାଳୟ ସଂଘ (A.I.U.) ପକ୍ଷରୁ ଭାରତବର୍ଷରେ ସମସ୍ତ ବିଶ୍ୱବିଦ୍ୟାଳୟମାନଙ୍କରେ ଏହିପରି ସାଂସ୍କୃତିକ ମହୋତ୍ସବ ଆୟୋଜନର ମୁଖ୍ୟ ଉଦ୍ଦେଶ୍ୟ । ଏହି ଉଦ୍ଦେଶ୍ୟରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଅଧୀନସ୍ଥ ସମସ୍ତ କଲେଜ ଛାତ୍ରଛାତ୍ରୀଙ୍କମଧ୍ୟରେ ପ୍ରାଥମିକ ସ୍ତରରେ ପ୍ରତିଯୋଗିତା ହୁଏ ଓ ତହିଁରେ କୃତକାର୍ଯ୍ୟ ଛାତ୍ରଛାତ୍ରୀଙ୍କୁ ଭାରତର

ବିଭିନ୍ନ ବିଶ୍ୱବିଦ୍ୟାଳୟରେ ଅନୁଷ୍ଠିତ ଆନ୍ତଃ ବିଶ୍ୱବିଦ୍ୟାଳୟ ଯୁବ ମହୋତ୍ସବରେ ଯୋଗଦେବାକୁ ହୋଇଥାଏ । ଏହି ସୁଯୋଗରେ ପ୍ରଥମେ ଝାଡ଼ଖଣ୍ଡର ରାଞ୍ଚି ଓ ପରେ ଆସାମର ତେଜପୁର୍‌କୁ ବିଶ୍ୱବିଦ୍ୟାଳୟ ଛାତ୍ରଛାତ୍ରୀଙ୍କୁ ନେଇ ଯିବାର ସୁଯୋଗ ପାଇଛି । ବିଶେଷକରି ୨୦୦୮ ମସିହାରେ ରାଞ୍ଚିରେ ଆମ ବିଶ୍ୱବିଦ୍ୟାଳୟଙ୍କ ଛାତ୍ରଛାତ୍ରୀଙ୍କ ନୃତ୍ୟ ଓ ଗୀତରେ ଅଭୂତପୂର୍ବ ସଫଳତା ନେଇ ସେଦିନ ସେଠାକାର ସମ୍ବାଦପତ୍ରରେ ଚର୍ଚ୍ଚା ସହିତ ଏ ସଂପର୍କିତ ସମ୍ବାଦ ପ୍ରକାଶନ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ପାଇଁ ଗୌରବ ଆଣିଦେଇଛି ।

**ବିଭାଗର SAP ମାନ୍ୟତା:**

୨୦୦୯ ମସିହାରେ ବିଭାଗମୁଖ୍ୟ ଭାବରେ ଅବସ୍ଥାପିତ ହେବା ଅବସରରେ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ ନୂଆଦିଲ୍ଲୀଙ୍କୁ 'ଦକ୍ଷିଣ ଓଡ଼ିଶାର ଲୋକ ପରମ୍ପରା ଓ ଆଦିବାସୀ ସଂଗୀତ' (Folk Tradition of South Odisha & Tribal Lore of Southern Odisha) ଭିତ୍ତିରେ ଏକ ସ୍ୱତନ୍ତ୍ର ଅନୁଦାନ ପ୍ରକଳ୍ପ ମଞ୍ଜୁରୀ କରିବା ପାଇଁ ସେ ସମୟରେ ବିଭାଗରେ ଅବସ୍ଥାପିତ ସମସ୍ତ ଶିକ୍ଷକବନ୍ଧୁଙ୍କ ସହଯୋଗରେ ଦରଖାସ୍ତ କରିଥିଲି । ମୋତେ ଏ ଦିଗରେ ବିଶେଷଭାବରେ ସାହାଯ୍ୟ କରିଥିଲେ ଆମ ବିଭାଗର ତତ୍କାଳୀନ ଶିକ୍ଷକ ପ୍ରଫେସର ପୂର୍ଣ୍ଣଚନ୍ଦ୍ର ମିଶ୍ରଙ୍କ ସହିତ ତତ୍କାଳୀନ ଇତିହାସ ବିଭାଗର SAP ବୁଝାବୁଝି କରୁଥିବା ବନ୍ଧୁ ଶ୍ରୀ ପ୍ରଦୀପ କୁମାର ପଣ୍ଡା । ସୌଭାଗ୍ୟକୁ ୨୦୧୧ ମସିହାରେ ୟୁଜିସି ତାହା ମଂଜୁରୀ ଦେଲେ ଓ ବିଭାଗ ପ୍ରଥମ କିସ୍ତିରେ ୧୯ ଲକ୍ଷ ଟଙ୍କା ପାଇଥିଲା । ଏହାର ପ୍ରଥମ ନିର୍ଦ୍ଦେଶକ ଥିଲେ ପ୍ରଫେସର ଅଶ୍ୱିନୀ କୁମାର ପଣ୍ଡା ଓ ସହଯୋଗୀ ନିର୍ଦ୍ଦେଶକ ରହିଥିଲେ ପ୍ରଫେସର ଦେବୀପ୍ରସନ୍ନ ପଟ୍ଟନାୟକ । ଉଭୟଙ୍କ ତତ୍ତ୍ୱାବଧାନରେ ସେଥିରେ ବିଭାଗରେ ଥିବା ମ୍ୟୁଜିୟମ୍‌ଟି ଅଧିକ ସମୃଦ୍ଧ ହେବା ସହିତ ବିଶ୍ୱବିଦ୍ୟାଳୟରେ ନବନିର୍ମିତ ଏକ ସ୍ୱତନ୍ତ୍ର ଅଟ୍ଟାଳିକାକୁ ସ୍ଥାନାନ୍ତରିତ ହୋଇ ସେଠାରେ ତାହା 'ଦକ୍ଷିଣ ଓଡ଼ିଶାର ସାଂସ୍କୃତିକ ଗବେଷଣାକେନ୍ଦ୍ର' ଭାବେ ନାମିତ ହୋଇ ଦେଶ ବିଦେଶର ବହୁ ଗବେଷକଙ୍କୁ ଆକୃଷ୍ଟ କରିଛି । ବିଶେଷକରି ବିଶିଷ୍ଟ ନୃତତ୍ତ୍ୱବିତ୍ ପ୍ରଫେସର ଦୀପକ କୁମାର ବେହେରା ବିଶ୍ୱବିଦ୍ୟାଳୟର କୁଳପତି ଥିବା ଅବସରରେ ଏହି ପ୍ରକଳ୍ପଟିକୁ ସେ ଅଧିକ କ୍ରିୟାଶୀଳ କରାଇଥିଲେ । ସଂଗ୍ରହାଳୟରେ ଥିବା ଆଦିବାସୀ ବିଭାଗଟି ତାଙ୍କର ସ୍ୱପ୍ନର ସମ୍ଭାର । ଏହି ସଂଗ୍ରହାଳୟକୁ ସୁଶୋଭିତ କରିବାରେ ବିଭାଗର ପ୍ରତ୍ୟେକ ଶିକ୍ଷକ, କର୍ମଚାରୀ, ଗବେଷକ, ଛାତ୍ରଛାତ୍ରୀଙ୍କ ଭୂମିକା ଅନସ୍ୱୀକାର୍ଯ୍ୟ ।

**ଏନ୍.ଏସ୍.ଏସ୍. ଦାୟିତ୍ୱ:**

୨୦୧୩ ମସିହାରେ ପ୍ରଫେସର ଦୀପକ କୁମାର ବେହେରା ବିଶ୍ୱବିଦ୍ୟାଳୟର କୁଳପତି ଭାବେ ଦାୟିତ୍ୱ ଗ୍ରହଣ କରିବା ପରେ ହଠାତ୍ ଆବଶ୍ୟକ ପଡ଼ିଲା କିଏ

ବିଶ୍ୱବିଦ୍ୟାଳୟ ଜାତୀୟ ସେବା ଯୋଜନାର ସଂଯୋଜକ ଦାୟିତ୍ୱ ନେବ । ସେତେବେଳକୁ ରାଜନୀତି ବିଜ୍ଞାନ ବିଭାଗର ପ୍ରଫେସର ଅମିୟ କୁମାର ପରିଛା ଏହି ଦାୟିତ୍ୱରେ ଥାଆନ୍ତି ଓ ତାଙ୍କର ଚାକିରି ସରି ସରି ଆସୁଥାଏ । ମୋର ସେତେବେଳକୁ ପ୍ରଫେସର ବେହେରାଙ୍କ ସହିତ ସାମାନ୍ୟ ପରିଚୟ, ବିଶ୍ୱବିଦ୍ୟାଳୟର ପ୍ରଥମ ଛାତ୍ରାବାସର ତତ୍ତ୍ୱାବଧାରକ ଭାବରେ । ଦିନେ ହଠାତ୍ ସେ ମୋତେ ତାଙ୍କ ଅଫିସ୍‌କୁ ଡ଼କାଇଲେ ଓ କହିଲେ ଆପଣଙ୍କୁ ଏନ୍.ଏସ୍.ଏସ୍.ର ସଂଯୋଜକ ଦାୟିତ୍ୱ ନେବାକୁ ହେବ । ପୂର୍ବରୁ ସ୍ନାତକୋତ୍ତର ବିଭାଗରେ ଏନ୍.ଏସ୍.ଏସ୍. କାର୍ଯ୍ୟକ୍ରମ ଅଧିକାରୀ ଭାବରେ ଦୁଇବର୍ଷର ଅଭିଜ୍ଞତା ଥାଏ । ସମ୍ମତି ଜଣାଇ ଫେରି ଆସିଲି । ଦୁଇ ଚାରିଦିନ ପରେ ବିଶ୍ୱବିଦ୍ୟାଳୟ ଏନ୍.ଏସ୍.ଏସ୍. ସଂଯୋଜକ ଭାବରେ କାର୍ଯ୍ୟରେ ଯୋଗଦେଲି । ବିଶ୍ୱବିଦ୍ୟାଳୟ ଅଧୀନରେ ଥିବା ପ୍ରାୟ ୧୨୦ଟିରୁ ଉର୍ଦ୍ଧ୍ୱ କଲେଜରେ ୨୨୫ଟି ଏନ୍.ଏସ୍.ଏସ୍. ୟୁନିଟ୍ ଥାଏ । କେତେକ କାର୍ଯ୍ୟକ୍ଷମ ଓ କେତେକ ସ୍ଥାଣୁ ପ୍ରାୟ । ସ୍ଥାଣୁ ହୋଇ ରହିଥିବା ଅବିଭକ୍ତ କୋରାପୁଟ ଓ କନ୍ଧମାଳର ଅଧିକାଂଶ ୟୁନିଟ୍‌କୁ କାର୍ଯ୍ୟକ୍ଷମ କରାଇବାରେ ସଫଳ ହେଲି । ବିଶେଷକରି ସେହିସବୁ ଦୁର୍ଗମ ଅଞ୍ଚଳର ସ୍ୱେଚ୍ଛାସେବୀମାନଙ୍କୁ ଉତ୍ସାହିତ କରିବା ଓ ସେମାନଙ୍କୁ ଦେଶସେବାରେ ଅଂଶୀଦାର ହେବା ପାଇଁ ପ୍ରବର୍ତ୍ତାଇବାରେ ପ୍ରୟାସୀ ହୋଇ ଛୁଟିଦିନମାନଙ୍କରେ ବସ୍‌ରେ ଯାଇ ସେମାନଙ୍କ ନିକଟରେ ପହଞ୍ଚିଲି । ଏ ଦିଗରେ ମୋତେ ଉତ୍ସାହିତ କରିଥିଲେ କୁଳପତି ପ୍ରଫେସର ବେହେରାଙ୍କ ସହିତ ବାଣିଜ୍ୟ ବିଭାଗର ତତ୍କାଳୀନ ବରିଷ୍ଠ ପ୍ରଫେସର ଡ. ପ୍ରସନ୍ନ କୁମାର ବିଶ୍ୱାସରାୟ ଓ ସବୁ କାର୍ଯ୍ୟରେ ସାହାଯ୍ୟ କରୁଥିଲେ ଅଧ୍ୟାପକ କିଶୋର ଚନ୍ଦ୍ର ବେହେରା, ଅଧ୍ୟାପକ ଦୀନବନ୍ଧୁ ମହାନ୍ତି, ଅଧ୍ୟାପକ ରାମହରି ପଟ୍ଟନାୟକଙ୍କ ସହିତ ବିଶ୍ୱବିଦ୍ୟାଳୟରେ ବିଭିନ୍ନ କାର୍ଯ୍ୟକ୍ରମରେ ଡ. ସତୀଶ କୁମାର ନାୟକ ଏବଂ ଏନ୍.ଏସ୍.ଏସ୍. କାର୍ଯ୍ୟାଳୟର ଅଧିକାରୀ ଶ୍ରୀ ସୁଶାନ୍ତ କୁମାର ସାହୁ । ସମସ୍ତଙ୍କ ସହଯୋଗରେ ୨୦୧୩ ମସିହା ଫାଇଲିନ୍ କାଳରେ ବୃକ୍ଷଶୂନ୍ୟ ହୋଇପଡ଼ିଥିବା ବିଶ୍ୱବିଦ୍ୟାଳୟ ପରିସରରେ ରାଜ୍ୟ ଜଙ୍ଗଲ ବିଭାଗ ସହାୟତାରେ ପ୍ରାୟ ଚାରି ପାଞ୍ଚ ହଜାର ବୃକ୍ଷରୋପଣ କରାଯାଇଥିଲା । ଜୁନ୍ ମାସରେ ପାଳିତ ବିଶ୍ୱ ପରିବେଶ ଦିବସ ଅବସରରେ ଏବଂ ପ୍ରଥମ ଛାତ୍ରାବାସର ତତ୍କାଳୀନ ଅନ୍ତେବାସୀଙ୍କ ସହଯୋଗରେ ବିଶ୍ୱବିଦ୍ୟାଳୟ ପରିସରରେ ଆମେ ଶହ ଶହ ବୃକ୍ଷରୋପଣ କରିଥିଲୁ । ତହିଁରୁ ଅଧିକାଂଶ ଥିଲା ସପ୍ତପର୍ଣ୍ଣୀ ଓ ନିମ । ଆଜି ପ୍ରାୟ ପାଞ୍ଚବର୍ଷ ପରେ ସେସବୁ ବୃକ୍ଷଗୁଡ଼ିକ ବଡ଼ ହୋଇଯାଇଥିବା ଦେଖି ଖୁବ୍ ଖୁସି ଲାଗୁଛି । ମନେପଡୁଛି ସେହି ଅତୀତ ଦିନମାନଙ୍କର କଥା ।

**ଉପେନ୍ଦ୍ର ଭଞ୍ଜ ଜାତୀୟ ପୁରସ୍କାର:**

୨୦୧୪ ମସିହାରେ କୁଳପତି ପ୍ରଫେସର ଦୀପକ କୁମାର ବେହେରା ଶିକ୍ଷକମାନଙ୍କର ଏକ ସଭା ଡାକିଥାନ୍ତି । ଆଗକୁ ବିଶ୍ୱବିଦ୍ୟାଳୟର 'ନାକ୍' ପରିଦର୍ଶନ

ଥିବାରୁ ସେଥିପାଇଁ ସେହି ସଭାର ଆୟୋଜନ ହୋଇଥାଏ । ମୁଁ ସଭାରେ ଉପସ୍ଥିତ ରହି ଦୁଇଟି ପ୍ରସ୍ତାବ ଦେଲି । ସେଥିରୁ ଗୋଟିଏ ପ୍ରସ୍ତାବ ଥିଲା ଓଡ଼ିଶାର ମହାନ୍‌କବି ଉପେନ୍ଦ୍ରଭଞ୍ଜଙ୍କ ସ୍ମୃତିରେ ତାଙ୍କ ନାମରେ ସର୍ବଭାରତୀୟ ସ୍ତରରେ ବିଶ୍ୱବିଦ୍ୟାଳୟ ପକ୍ଷରୁ ଏକ ଜାତୀୟ ପୁରସ୍କାରର ବ୍ୟବସ୍ଥା କରାଯିବା ଦରକାର । ପ୍ରଫେସର ବେହେରାଙ୍କ ସମେତ ଉପସ୍ଥିତ ସମସ୍ତ ଶିକ୍ଷକ ପ୍ରସ୍ତାବଟିକୁ ଦୃଢ଼ଭାବରେ ସମର୍ଥନ କଲେ । କୁଳପତି ପୁରସ୍କାର ପ୍ରଦାନ ନିମିତ୍ତ ଆବଶ୍ୟକ ନୀତିନିୟମ ସ୍ଥିର କରିବା ପାଇଁ ମୋତେ ସଂଯୋଜକ ଦାୟିତ୍ୱ ଦେଲେ । ମୋ ସହିତ ରହିଲେ ପ୍ରଫେସର ଦେବୀପ୍ରସନ୍ନ ପଟ୍ଟନାୟକ, ପ୍ରଫେସର ରାମନାରାୟଣ ପଣ୍ଡା, ଡ. ପ୍ରଦୀପ ମହାପାତ୍ର, ଡ. ଦୁଃଖିଶ୍ୟାମ ଗୌଡ଼ ପ୍ରମୁଖ । ପୁରସ୍କାର ରାଶି ଏକ ଲକ୍ଷ ଟଙ୍କା ରଖାଗଲା । ପ୍ରଥମ ପୁରସ୍କାର ଲାଭ କଲେ ମାଲାୟାଲମ୍ କବି କେକି ଦାରୁୱାଲା, ପରେ ପରେ ବିଶିଷ୍ଟ ହିନ୍ଦୀ ସାହିତ୍ୟିକ ପଦ୍ମଶ୍ରୀ ଗିରିରାଜ କିଶୋର, ଡକ୍ଟର କେ. ସଚ୍ଚିଦାନନ୍ଦନ୍, ପ୍ରଖ୍ୟାତ ସାହିତ୍ୟିକ ଶ୍ରୀ ମନୋଜ ଦାସ । ଆମ ବିଶ୍ୱବିଦ୍ୟାଳୟ ତଥା ଓଡ଼ିଶା ସୀମା ଡେ଼ଇଁ ଏହି ସ୍ମୃତି ପୁରସ୍କାର ମାଧ୍ୟମରେ ଆମ କବି ଉପେନ୍ଦ୍ରଭଞ୍ଜଙ୍କର ସର୍ବଭାରତୀୟ ପରିଚିତି ସୃଷ୍ଟିହେବାରୁ ଖୁସି ଲାଗିଲା । ସେଦିନ ମୋର ଅନ୍ୟ ଏକ ପ୍ରସ୍ତାବ ଥିଲା ବିଶ୍ୱବିଦ୍ୟାଳୟର ଏକ ନିଜସ୍ୱ ସଂଗୀତ (University Anthem) ବ୍ୟବସ୍ଥା କରିବା । ମାତ୍ର ବିଭିନ୍ନ କାରଣରୁ କୁଳପତି ପ୍ରଫେସର ବେହେରା ମୋର ଦ୍ୱିତୀୟ ପ୍ରସ୍ତାବରେ ରାଜି ହେଲେନାହିଁ । ପରବର୍ତ୍ତୀ କାଳରେ ପ୍ରଫେସର ରାଜେନ୍ଦ୍ର ପ୍ରସାଦ ଦାସ ବିଶ୍ୱବିଦ୍ୟାଳୟ କୁଳପତି ଦାୟିତ୍ୱ ଗ୍ରହଣ କରିବା ପରେ ତାଙ୍କ ସମ୍ମୁଖରେ ମୋର ଦ୍ୱିତୀୟ ପ୍ରସ୍ତାବଟି ପୁନଃ ଉପସ୍ଥାପନ କଲି । ସୌଭାଗ୍ୟକୁ ସେ ତାହା ଗ୍ରହଣ କଲେ ଓ ବିଶ୍ୱବିଦ୍ୟାଳୟର ନିଜସ୍ୱ କୁଳସଂଗୀତ ପ୍ରଚଳିତ ହେଲା । ଗୀତଟିର ରଚୟିତା ଥିଲେ ପ୍ରଫେସର ଦେବୀପ୍ରସନ୍ନ ପଟ୍ଟନାୟକ ଓ ସ୍ୱରଦାନ କରିଥିଲେ ବ୍ରହ୍ମପୁରର ସଂଗୀତଗୁରୁ ସନ୍ତୋଷ କୁମାର ବେହେରା । ସଂପ୍ରତି ବିଶ୍ୱବିଦ୍ୟାଳୟର ପ୍ରତ୍ୟେକ ସଭାର ଆୟୋଜନ କାଳରେ ସମ୍ମାନ ସ୍ୱରୂପ ସଙ୍ଗୀତଟି ପ୍ରଥମେ ଗାନ କରାଯାଉଛି ।

**ବୃତ୍ତିଭିତ୍ତିକ ପରାମର୍ଶକେନ୍ଦ୍ରର ଦାୟିତ୍ୱ:**

ଗୋପାଳପୁର ବିଧାୟକ ଡ. ପ୍ରଦୀପ କୁମାର ପାଣିଗ୍ରାହୀ ଓଡ଼ିଶାର ଉଚ୍ଚଶିକ୍ଷାମନ୍ତ୍ରୀ ଥିବା ଅବକାଶରେ ଉତ୍କଳ ଓ ସମ୍ବଲପୁର ବିଶ୍ୱବିଦ୍ୟାଳୟ ସହିତ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ଛାତ୍ରଛାତ୍ରଙ୍କୁ ପ୍ରଶିକ୍ଷଣ ଦେବାପାଇଁ I.A.S. ପ୍ରଶିକ୍ଷଣ କେନ୍ଦ୍ର ସହିତ ଛାତ୍ରଛାତ୍ରୀମାନଙ୍କ ପାଇଁ ବୃତ୍ତିଭିତ୍ତିକ ପରାମର୍ଶକେନ୍ଦ୍ର, (Career and Counselling Cell) ପ୍ରତିଷ୍ଠା କରିବା ପାଇଁ ସରକାରଙ୍କ ପକ୍ଷରୁ ଆର୍ଥିକ ଅନୁଦାନ ବ୍ୟବସ୍ଥା କରିଥିଲେ । ସୌଭାଗ୍ୟକୁ ସେତେବେଳେ ମତେ ବୃତ୍ତିଭିତ୍ତିକ ପରାମର୍ଶକେନ୍ଦ୍ରର ସଂଯୋଜକ ଦାୟିତ୍ୱ ଦିଆଗଲା ।

ମୋର କାର୍ଯ୍ୟ ଥିଲା ବିଶ୍ୱବିଦ୍ୟାଳୟରେ ଅଧ୍ୟୟନରତ ଛାତ୍ରଛାତ୍ରୀଙ୍କମଧ୍ୟରେ ରହିଥିବା ଅନ୍ତର୍ନିହିତ ଶକ୍ତିର ଉପଯୋଗ ମାଧ୍ୟମରେ ସେମାନଙ୍କୁ ଉପଯୁକ୍ତ ବୃତ୍ତି ନିର୍ବାଚନ କରିବାକୁ ପରାମର୍ଶ ଦେବା । ମୁଁ ମୂଳତଃ ସାହିତ୍ୟ ବିଭାଗର ଜଣେ ଅଧ୍ୟାପକ । ମାତ୍ର ଏହି କାର୍ଯ୍ୟଟି ମୋର ବୃତ୍ତିର ଠିକ୍ ବିପରିତ ନହେଲେ ମଧ୍ୟ ଏହାକୁ ସେଦିନ ମୁଁ ଏକ ଆହ୍ୱାନ ଭାବରେ ଗ୍ରହଣ କରିଥିଲି । ବିଶ୍ୱବିଦ୍ୟାଳୟର କିଛି ଶିକ୍ଷକ ଓ ଅଣଶିକ୍ଷକ ବନ୍ଧୁଙ୍କ ସହାୟତାରେ ପ୍ରଥମେ ଛାତ୍ରଛାତ୍ରୀମାନଙ୍କ ଠାରୁ ଦରଖାସ୍ତ ଆହ୍ୱାନ କରାଗଲା । ପ୍ରଥମ ଦିନ ଅର୍ଥାତ୍ ୨୦୧୭ ମସିହା ମାର୍ଚ୍ଚ ୧ ତାରିଖରେ ତତ୍କାଳୀନ ଶିକ୍ଷାମନ୍ତ୍ରୀ ଡ. ପ୍ରଦୀପ କୁମାର ପାଣିଗ୍ରାହୀ ଏହି କେନ୍ଦ୍ରର ଶୁଭ ଉଦ୍‌ଘାଟନ କରିଥିଲେ । ସେଥିରେ ପ୍ରାୟ ଚାରିଶହରୁ ଊର୍ଦ୍ଧ୍ୱ ଛାତ୍ରଛାତ୍ରୀ ଯୋଗଦେଇ ନିଜ ନିଜର ନାମ ପଞ୍ଜିକରଣ କରିଥିଲେ । ବିଶ୍ୱବିଦ୍ୟାଳୟର ଶିକ୍ଷକଙ୍କ ସମେତ ବ୍ରହ୍ମପୁରର କେତେକ ପ୍ରଶିକ୍ଷକଙ୍କ ସହାୟତାରେ ସଂପ୍ରତି ଏହା ସୁଚାର ରୂପେ ପରିଚାଳିତ ହେଉଛି ଏବଂ ଛାତ୍ରଛାତ୍ରୀମାନେ ଏହାର ସୁଯୋଗ ନେବା ସହିତ ଉଚିତ ଦିଗ୍‌ଦର୍ଶନ ପାଉଛନ୍ତି ।

**ଅସଫଳ ଗବେଷଣା ତତ୍ତ୍ୱାବଧାରକ:**

ଏହି ବିଶ୍ୱବିଦ୍ୟାଳୟରେ ମୋର ୨୪ ବର୍ଷର ଅଧ୍ୟାପନା ମଧ୍ୟରେ ମୋ ନିକଟରେ ଗବେଷକଙ୍କ ସଂଖ୍ୟା ଆଶାଜନକ ନୁହେଁ । ଆଜିକାଲିର ଗବେଷକମାନଙ୍କ ମଧ୍ୟରୁ ଅଧିକାଂଶ ପରିଶ୍ରମ କାତର । ସେମାନଙ୍କର ଉଚ୍ଚାଶା ପୂରଣ କରିବାକୁ ମୁଁ ନାନା କାରଣରୁ ଅକ୍ଷମ । ଗବେଷକଟିଏ ଯେଉଁ ଦୃଷ୍ଟିଭଙ୍ଗୀ ନେଇ ଯେପରି ପରିଶ୍ରମ କରି ତା'ର ଗବେଷଣା ସନ୍ଦର୍ଭ ପ୍ରସ୍ତୁତ କରିବା କଥା, ତାହା ସଂପ୍ରତି ଗବେଷକମାନେ ନିରାଶ କରନ୍ତି । ଅଧିକାଂଶ ଗବେଷକ ଚାହାନ୍ତି ଯେମିତି ହେଉ, ସନ୍ଦର୍ଭଟିଏ ପ୍ରସ୍ତୁତ ହୋଇ ବିଶ୍ୱବିଦ୍ୟାଳୟ ଡିଗ୍ରୀ ମିଳିଯାଉ । ଅନେକ ସମୟରେ ଏଥିପାଇଁ ବିବେକାନୁମୋଦିତ ହେବା ସହିତ ବିଶ୍ୱବିଦ୍ୟାଳୟର ମର୍ଯ୍ୟାଦା ଓ ସମ୍ମାନ ପ୍ରସଙ୍ଗ ମନକୁ ଆସିଲେ ମନ ଏପରି କାର୍ଯ୍ୟରୁ ପଛେଇ ଯାଏ । ଭାବେ ଗବେଷକଙ୍କ ସଂଖ୍ୟା ବୃଦ୍ଧି ଅପେକ୍ଷା ସେମାନଙ୍କର ଗବେଷଣା ଗୁଣାତ୍ମକ ହେବା ଗବେଷକ ଓ ବିଶ୍ୱବିଦ୍ୟାଳୟ ସହିତ ସମଗ୍ର ସମାଜ ପାଇଁ ମଙ୍ଗଳକର । ସେଥିପାଇଁ ବୋଧହୁଏ ମୋ ନିକଟରେ ଗବେଷକଙ୍କ ସଂଖ୍ୟା ତୁଳନାତ୍ମକ ଭାବେ ଊଣା । ପୁଣି ଯେଉଁମାନେ ମୋ ନିକଟରେ ଯାହା ଗବେଷଣା କରିଛନ୍ତି, ତହିଁରୁ ଅଧିକାଂଶ ଦକ୍ଷିଣ ଓଡ଼ିଶାର ସାହିତ୍ୟ, ସଂସ୍କୃତି ଓ ପରମ୍ପରାକୁ ନେଇ । ଏହି ଅଞ୍ଚଳର ସଂସ୍କୃତି, ପରମ୍ପରା ସଂପର୍କରେ ଯାହା ଅନାଲୋଚିତ ରହିଛି ସେସବୁ ଆଗାମୀ ଦିନରେ ଗବେଷଣା ମାଧ୍ୟମରେ ଉଦ୍‌ଘାଟିତ ହେବାର ଯୋଜନା ରହିଛି । ଦେଖାଯାଉ ସ୍ୱପ୍ନ ପାଇଁ ରାତି କେତେ ଅଛି !

**ଜୀବନର ଚବିଶି ବର୍ଷ:**

ଜୀବନରେ ୨୪ ବର୍ଷ କିଛି କମ୍ ନୁହେଁ । ଯୁବବସ୍ଥାରେ ଏହି ବିଶ୍ୱବିଦ୍ୟାଳୟରେ ଓଡ଼ିଆ ବିଭାଗରେ ଅଧ୍ୟାପକ ଭାବେ ଯୋଗ ଦେଇଥିଲି ୧୯୯୭ ମସିହା ଜୁନ୍ ୨୩

ତାରିଖରେ । ଆଜି ୨୦୧୯ ମସିହା, ଜୀବନ ଅପରାହ୍ଣ ଆଡ଼କୁ ଯାତ୍ରା । ଏହି ଦୀର୍ଘ ଯାତ୍ରାମଧ୍ୟରେ ବୁଧହଂସ କେଳିସର ଦକ୍ଷିଣ ଓଡ଼ିଶାର ଅଧିକାଂଶ ସ୍ଥାନ, ବିଶେଷ କରି ଗଞ୍ଜାମର ଅନ୍ଧିସନ୍ଧି ବୁଲିବା, ଗଞ୍ଜାମର ମାଟି ମଣିଷ ସହିତ ଯୋଡ଼ିହେବା, ଏପରିକି ଏହାର ଲୋକଜୀବନ, ଆଚାରଚଳଣି, ପର୍ବପର୍ବାଣି, ଖାଦ୍ୟପେୟ ଠାରୁ ଆରମ୍ଭ କରି ଏହି ଦୀର୍ଘବର୍ଷ ମଧ୍ୟରେ ଅବିଭକ୍ତ ଗଂଜାମର ବହୁ ସାହିତ୍ୟ, ସଂସ୍କୃତି ଏବଂ ସାମାଜିକ ଅନୁଷ୍ଠାନ ସହିତ ସଂପୃକ୍ତ ହୋଇଯାଇଛି । ସବୁଠି ପାଇଛି ସ୍ନେହ, ଶ୍ରଦ୍ଧା ଓ ଭଲପାଇବା । ଛାତ୍ରମାନଙ୍କ ମଧ୍ୟରୁ  କିଏ ଅଧ୍ୟାପକ ତ କିଏ ଆଉ କେଉଁ ବୃତ୍ତିରେ ରହିଛନ୍ତି । ସେହି ଛାତ୍ରଛାତ୍ରୀମାନେ କେଉଁଠି କେତେବେଳେ ଦେଖାହେଲେ ମୋ ଛାତି ଗର୍ବରେ ଫୁଲିଉଠିଛି । ଆଖିରୁ ଆନନ୍ଦାଶ୍ରୁ ବହିଯାଇଛି । ବେଳେବେଳେ କେତେକ ପୁରାତନ ଛାତ୍ର କୌଣସି କର୍ମସଂସ୍ଥାନ ନପାଇ ଗାଁ ଗହଳିରେ ଦୁଃଖକଷ୍ଟରେ ଦିନ କାଟୁଛନ୍ତି- ଦେଖାଦେଲେ ସେମାନଙ୍କ ପାଇଁ ମନ ଖୁବ୍ ବ୍ୟସ୍ତ ହୋଇଛି ।

**ଡି.ଲିଟ୍. ଗବେଷଣାରେ ମନ :**

ବିଶ୍ୱବିଦ୍ୟାଳୟରେ ଯୋଗଦେଇଥିଲି ଅଧ୍ୟାପନା କରିବା ପାଇଁ । କିଛିବର୍ଷ ପରେ ଭାବିଲି- ପବିତ୍ର ପୁଣ୍ୟ ସାରସ୍ୱତ ପୀଠ ଏହି ଭଞ୍ଜବିହାର । ହାତ ପାହାନ୍ତାରେ ଏକ ସମୃଦ୍ଧ ପାଠାଗାର । ଅଧ୍ୟାପନା ସହିତ ବ୍ୟକ୍ତିଗତ ଭାବରେ ଉଚ୍ଚତର ଗବେଷଣା କଲେ କିଛି କ୍ଷତି ହୁଅନ୍ତା ନାହିଁ । ସେଥିପାଇଁ ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷଙ୍କୁ ଅନୁମତି ମାଗିଲି । ଅନୁମତି ମିଳିବାରୁ ୨୦୦୯ ମସିହାରେ ଡି.ଲିଟ୍. (Post Doct.) କରିବା ପାଇଁ ନାମ ପଞ୍ଜିକରଣ କଲି । ବିଷୟ ଥିଲା ଆମ ସାହିତ୍ୟର ପ୍ରଥମ ଜ୍ଞାନପୀଠ ପୁରସ୍କାର ବିଜେତା ଡ.ଗୋପୀନାଥ ମହାନ୍ତିଙ୍କ ସାମଗ୍ରିକ କୃତିର ତାତ୍ତ୍ୱିକ ଅନୁଶୀଳନ । ପୂର୍ବରୁ ଓଡ଼ିଶା ଓ ଓଡ଼ିଶା ବାହାରେ ବିଭିନ୍ନ ବିଶ୍ୱବିଦ୍ୟାଳୟମାନଙ୍କରେ ଆମ ସାହିତ୍ୟର ଏହି ମୂର୍ଦ୍ଧନ୍ୟ ସ୍ରଷ୍ଟାଙ୍କ କୃତି ଓ କୀର୍ତ୍ତିକୁ ନେଇ ବହୁ ଗବେଷଣା ସନ୍ଦର୍ଭ ପ୍ରସ୍ତୁତ ହୋଇଛି । ମାତ୍ର ଗବେଷକମାନଙ୍କର ସେହିସବୁ ଗବେଷଣା ଚାରି ଛଅ ଗୋଟି ଉପନ୍ୟାସ ସହିତ ତାଙ୍କର କେତେଗୋଟି ଗଳ୍ପମଧ୍ୟରେ ସୀମିତ ଥିବା ପରି ମୁଁ ଅନୁଭବ କଲି । ସୁତରାଂ.ଗୋପୀନାଥଙ୍କ ସାମଗ୍ରିକ କୃତିର ବିଚାର କରୁ କରୁ ମୋର ପ୍ରାୟ ନଅବର୍ଷ ସମୟ ଅତିକ୍ରାନ୍ତ ହୋଇଗଲା । ୨୦୧୮ ମସିହାରେ ଏହି ପରୀକ୍ଷାରେ କୃତକାର୍ଯ୍ୟ ହେଲି । ନିୟମ ଅନୁଯାୟୀ ବିଶ୍ୱବିଦ୍ୟାଳୟ କୁଳପତିଙ୍କ ଉପସ୍ଥିତିରେ ମୁକ୍ତ ସାକ୍ଷାତ୍କାର ଅନୁଷ୍ଠିତ ହେଲା । ସନ୍ଦର୍ଭରେ ଗୋପୀନାଥଙ୍କ ରଚିତ ବହୁ ଦୁର୍ଲ୍ଲଭ ତଥ୍ୟ ସଂପର୍କରେ ଚର୍ଚ୍ଚା ଓ ଆଲୋଚନା କରିଥିଲି । ତଥାପି ସେହି ଗବେଷଣାରେ ମୋର ଆତ୍ମା ତୃପ୍ତ ହୋଇନାହିଁ । ତାଙ୍କ ସଂପର୍କରେ ଆହୁରି ଅଧିକ ନିଷ୍ଠାପର ଗବେଷଣା ହେବା ଉଚିତ ବୋଲି ମୋର ଅନୁଭବ ହୋଇଛି ଓ ମୁଁ ସନ୍ଦର୍ଭରେ ସେସବୁ ପ୍ରସ୍ତାବ ରଖିଛି ।

**ୟୁ.ଜି.ସି. ଟିମ୍ ପରିଦର୍ଶନ :**

ଏହି ସମୟ ମଧ୍ୟରେ ଦୁଇଥର ୟୁଜିସି ଟିମ୍ ପରିଦର୍ଶନ ସହିତ ଥରେ ନାକ୍ ଟିମ୍ ପରିଦର୍ଶନର ସାମ୍ନା କରିଛି । ଏହିସବୁ କାର୍ଯ୍ୟବେଳକୁ ବିଭାଗରେ ଆଗୁଆ ହୋଇ ବାହାରନ୍ତି ଦେବୀ ସାର୍ । ଛାତ୍ର ଓ ଗବେଷକଙ୍କ ସହିତ ସେ ଅତି ଅନ୍ତରଙ୍ଗ ଭାବେ ମିଶିଯାନ୍ତି । ରାତି ରାତି ଅନିଦ୍ରା ରହି ସମସ୍ତଙ୍କୁ ଏକାଠି କରି କାର୍ଯ୍ୟ କରିବାରେ ତାଙ୍କର ଅପାର ଆନନ୍ଦ । ଗୋଟିଏ ହାଫ୍ ପ୍ୟାଣ୍ଟ୍ ଓ ଟି'ସାର୍ଟ ପିନ୍ଧି ବହି ଝାଡ଼ିବାଠାରୁ ଫାଇଲ୍ ସଜାଡ଼ିବା, କାନ୍ଥରେ ଝୋଟିଦେବା ପର୍ଯ୍ୟନ୍ତ ସମସ୍ତ କାର୍ଯ୍ୟ କରନ୍ତି ଓ ସେଥିପାଇଁ ଅଜସ୍ର ଅର୍ଥ ଖର୍ଚ୍ଚ କରନ୍ତି । ଏକଦା ବିଭାଗରେ ଅଧ୍ୟୟନରତ ଶରତ କୁମାର ଜେନା, ପ୍ରକାଶ କୁମାର ସେନାପତି, ନଳିନୀ କୁମାର ପାଣିଗ୍ରାହୀ, ବି. ପ୍ରକାଶ ଚନ୍ଦ୍ର ପାତ୍ର, ସିଦ୍ଧାର୍ଥ ଶଙ୍କର ପାଢ଼ୀ, ବିଶ୍ୱନାଥ ପାଣିଗ୍ରାହୀ, ମନୋରଞ୍ଜନ ବିଷୋୟୀ ପ୍ରଭୃତି ଅଗଣିତ କୃତୀଛାତ୍ର ଓ ଅଧ୍ୟାପକଙ୍କ ସହିତ ତାଙ୍କର ଖୁବ୍ ନିବିଡ଼ ସଂପର୍କ । ସେ ସମସ୍ତଙ୍କୁ ମେଳି କରି ବିଭାଗକୁ ଏକ ଚମତ୍କାର ରୂପ ଦିଅନ୍ତି । ପ୍ରାଚୀନ ଓ ଦୁର୍ଲ୍ଲଭ ଗ୍ରନ୍ଥଠାରୁ ଆରମ୍ଭ କରି ପ୍ରାଚୀନ ପତ୍ରପତ୍ରିକା, ସମ୍ବାଦପତ୍ର, ତାଳପତ୍ର ପୋଥିକୁ ବିଭାଗର କ୍ୟୁରେଟର୍ ଡ. ରାଧାଗୋବିନ୍ଦ ପାଢ଼ୀ ଓ କପିଷ୍ଟ ମନୋଜ କୁମାର ପଟ୍ଟନାୟକଙ୍କ ସହିତ ମିଶି ଧୂଳି ଝାଡ଼ିବା ଠାରୁ ଆରମ୍ଭ କରି ମୂର୍ତ୍ତିମାନଙ୍କରେ ରଙ୍ଗ ଦେବାରେ ସେ ଆଗୁସାର ହୋଇଥାନ୍ତି । ନେତୃତ୍ୱ ନିଅନ୍ତି ଅଶ୍ୱିନୀ ସାର୍ । ଅଶ୍ୱିନୀ ସାର୍ଙ୍କ ଉପରେ ଏତିକିବେଳେ ବାରମ୍ବାର ଜୋରିମାନା କରାଯାଏ । ଖୁବ୍ ଆନନ୍ଦରେ ସେ ଖାଇବାକୁ ପଇସା ଦିଅନ୍ତି- ସମସ୍ତଙ୍କୁ ଉତ୍ସାହିତ କରିବା ପାଇଁ ବସିରହନ୍ତି ସାରା ରାତି, ଭୋଜିଭାତ ହୁଏ, କାମ ଚାଲେ । ବିଶ୍ୱବିଦ୍ୟାଳୟରେ ଆମ ବିଭାଗ ସବୁବେଳେ ଅଗ୍ରଣୀ ଭୂମିକା ଗ୍ରହଣ କରେ । ୨୦୧୬ ମସିହାରେ ଆମ ବିଶ୍ୱବିଦ୍ୟାଳୟ ସମଗ୍ର ଓଡ଼ିଶା ବିଶ୍ୱବିଦ୍ୟାଳୟମାନଙ୍କ ମଧ୍ୟରେ ପ୍ରଥମେ 'ନାକ୍' ପକ୍ଷରୁ 'ଏ' ଗ୍ରେଡ୍ ମାନ୍ୟତା ଲାଭ କଲା । ତାହାର ପଶ୍ଚାଦ୍‌ଭାଗରେ ୟୁଜିସି ପକ୍ଷରୁ ଆମ ବିଭାଗର 'ସ୍ୱତନ୍ତ୍ର ଅନୁଦାନ ପ୍ରକଳ୍ପ'(SAP) ସହାୟତାରେ ପ୍ରତିଷ୍ଠିତ ଦକ୍ଷିଣ ଓଡ଼ିଶା ସାଂସ୍କୃତିକ ଗବେଷଣାକେନ୍ଦ୍ରର ଗୁରୁତ୍ୱପୂର୍ଣ୍ଣ ଭୂମିକା ସଂପର୍କରେ ତତ୍କାଳୀନ ନାକ୍ ପିର୍ ଟିମ୍‌ର ଅଧ୍ୟକ୍ଷ ସ୍ୱୟଂ ପ୍ରଫେସର ପଠାନ୍ ତାଙ୍କ ବିବରଣୀ (Report)ରେ ଦର୍ଶାଇଥିଲେ । ଏଥିରେ ବିଭାଗର ପ୍ରତ୍ୟେକ ସଦସ୍ୟ, ଗବେଷକ, ଛାତ୍ରଛାତ୍ରୀଙ୍କ ଭୂମିକାକୁ ସ୍ୱୀକାର କରୁଛି । ମାତ୍ର ଅଶ୍ୱିନୀ ସାର୍, ଦେବୀ ସାର୍ ଓ ପୂର୍ଣ୍ଣ ସାର୍ଙ୍କ ସହିତ ରାଧା ବାବୁଙ୍କର ଅନ୍ତରଙ୍ଗଭାବେ ବିଭାଗକୁ ଭଲ ପାଇବାକୁ ଭୁଲିପାରୁ ନାହିଁ ।

**ପଣ୍ଡିତ୍-ଜୀ:**

ବିଭାଗର କ୍ୟୁରେଟର୍ ଡ. ରାଧାଗୋବିନ୍ଦ ପାଢ଼ୀଙ୍କ ସଂପର୍କରେ ଏଠାରେ କେତେକ ସୂଚନା ନଦେଲେ ସବୁକଥା ଅଧୁରା ରହିଯିବ । ସେ ହେଉଛନ୍ତି ବିଭାଗର

ସକ୍-ଅବଜରଭର୍ ଓ ଷ୍ଟେପ୍‌ଇନ୍ । ଛଅ ଫୁଟ ଉଚ୍ଚା ଦାଢ଼ି ମଣିଷ । ଦୂରରୁ ଦେଖିଲେ ଖୁବ୍ କର୍କଶ ମନେ ହୁଅନ୍ତି । ଅଶ୍ୱିନୀ ସାର୍ ତାଙ୍କୁ କହନ୍ତି ସେ କୁଆଡ଼େ ଓଡ଼ିଆ ପଞ୍ଜାବୀ । ହୃଦୟ ଅତ୍ୟନ୍ତ କୋମଳ, ନାରିକେଳ ପରି ରସସିକ୍ତ ଓ ସକାରାତ୍ମକ । ବିଭାଗରେ ଯେଉଁଠି ଯାହାର ଯେଉଁ କାମ ପଡ଼େ- ଲୋଡ଼ା ପଡ଼ନ୍ତି ରାଧାବାବୁ । ତାହା ବିଶ୍ୱବିଦ୍ୟାଳୟର ଅଫିସ୍‌ରେ ହେଉ ଅବା ବ୍ରହ୍ମପୁରରେ କିଛି କାମ, ସ୍ୱାସ୍ଥ୍ୟଗତ ସାହାଯ୍ୟ ହେଉ ଅବା ସାମାଜିକ ଉତ୍ସବ- ସବୁଠି ସେ ହେଉଛନ୍ତି ବିଭାଗର କ୍ରାଇସିସ୍ ମ୍ୟାନେଜର୍ । ପିକ୍‌ନିକ୍‌ଠାରୁ ଆରମ୍ଭ କରି ସାପ୍ (SAP) ପର୍ଯ୍ୟନ୍ତ ସବୁକାମରେ ସେ ଆଗୁଆ, ସାଥିରେ ବିଭାଗର କପିଷ୍ଟ ମନୋଜ କୁମାର ପଟ୍ଟନାୟକ । ଥରେ ସେ ମୋତେ ଗୋଟିଏ କଥା କହିଥିଲେ- "ସାର୍ ! ହଁ କୁ ହାଇକୋର୍ଟ ନାହିଁ," ଆଉଥରେ କହିଥିଲେ - "ନଇଁପଡ଼ିଲେ ଲହଡ଼ି ଚାଲିଯିବନି କି ସାର୍ !" ମୋର ସୁସମୟରେ ତାଙ୍କର ଏସବୁ ଉପଦେଶ ମୁଁ ଭୁଲିଯାଏ । ଦୁଃସମୟ ଆସିଲେ ତାଙ୍କର ସେ କଥାକୁ ଅକ୍ଷରେ ଅକ୍ଷରେ ମନେ ପକାଏ ଓ ପାଳନ କରିବାକୁ ଚେଷ୍ଟା କରେ । ବିଭାଗରେ ସେ ଛାତ୍ର ହୁଅନ୍ତୁ ବା ଗବେଷକ- କର୍ମଚାରୀ ଅଥବା ଶିକ୍ଷକ, ସବୁଠି ତାଙ୍କର ଉପସ୍ଥିତି । ଏବେ ସେ ସ୍ନାତକୋତ୍ତର ବିଭାଗ କେନ୍ଦ୍ରୀୟ କାର୍ଯ୍ୟାଳୟର ପ୍ରଶାସନିକ ଅଧିକାରୀ ଦାୟିତ୍ୱରେ । କୁଳପତିଙ୍କ ଦୃଷ୍ଟିରେ - 'ପଣ୍ଡିତ୍-ଜୀ' । ଜୀବନରେ ଅବସୋସ ବୋଲି ତାଙ୍କର କିଛି ନାହିଁ । ଏଇ ନିକଟରେ ସେ ଅବସର ନେବେ । ଜୀବନରେ ଏମିତି ମଣିଷ କମ୍ ଦେଖିଛି ।

**ବନ୍ଧୁ ଅନେକ :**

ବିଭାଗରେ ଓ ବିଭାଗ ବାହାରେ ବିଶ୍ୱବିଦ୍ୟାଳୟର ବିଭିନ୍ନ କାର୍ଯ୍ୟରେ ମୋତେ ବିଭାଗର ଯେଉଁ ଦୁଇବନ୍ଧୁ ଓ ଶୁଭେଚ୍ଛୁ ସ୍ୱାଧୀନ ଭାବରେ କାର୍ଯ୍ୟ କରିବାର ଅଧିକାର ଦେଇଛନ୍ତି ସେମାନେ ହେଉଛନ୍ତି ପ୍ରଫେସର ଅଶ୍ୱିନୀ କୁମାର ପଣ୍ଡା ଓ ପ୍ରଫେସର ଦେବୀପ୍ରସନ୍ନ ପଟ୍ଟନାୟକ । ବିଭାଗ ମୁଖ୍ୟ ଭାବରେ କାର୍ଯ୍ୟ କରିବାରେ ବିଭିନ୍ନ ଆଡୁ ନାନା ପ୍ରତିବନ୍ଧକ ଓ ଅସହଯୋଗ ରହିଥାଏ । ପୁଣି ସମସ୍ତଙ୍କ ମନନେଇ ବିଶ୍ୱବିଦ୍ୟାଳୟ ନିୟମାନୁଯାୟୀ କାର୍ଯ୍ୟ କରିବାକୁ ପଡ଼େ । ମାତ୍ର ଉଭୟ ମୋତେ କେବଳ ସ୍ୱାଧୀନଭାବେ କାର୍ଯ୍ୟ କରିବାର କ୍ଷମତା ଦେଇନଥିଲେ, ବିଭିନ୍ନ କାର୍ଯ୍ୟରେ ନାନାଭାବରେ ସହଯୋଗ ସହିତ ମୋର କେଉଁଠି କାର୍ଯ୍ୟ କରିବାରେ କିଛି ଭୁଲ ହେଲେ ସେଠାରେ ସେମାନେ ଉଚିତ ପରାମର୍ଶ ଦେବା ସହିତ ସେସବୁକୁ ସୁଧାରି ନେଉଥିଲେ । ଉଭୟ ବିଭାଗ ମୁଖ୍ୟ ଥିବା ସମୟରେ ମୋତେ ସେମିନାର୍ ଆୟୋଜନ ସହିତ ବିଭିନ୍ନ ପ୍ରଶାସନିକ କାର୍ଯ୍ୟରେ ସାମିଲ କରୁଥିଲେ । ଅସୁବିଧାରେ ପଡ଼ିଲେ ଉଭୟ ନିକଟରେ ରହି ସହାୟତାର ହାତ ବଢ଼ାଉଥିଲେ । ମନେପଡୁଛି ୨୦୦୯ ମସିହା ଡିସେମ୍ବର ମାସ ୧୭ ତାରିଖର କଥା । ସେତେବେଳେ

ମୁଁ ବିଭାଗ ମୁଖ୍ୟ । ବୟସାଧିକ୍ୟ କାରଣରୁ ମୋ ନିକଟରେ ଥିବା ମୋର ବୋଉ ବ୍ରହ୍ମପୁର ସରକାରୀ ଡାକ୍ତରଖାନାରେ ଶଯ୍ୟାଶାୟୀ ରହି ଇହଧାମ ତ୍ୟାଗ କଲା । ସେଦିନ ସେତେବେଳକୁ ସମୟ ପ୍ରାୟ ଘ.୪.୩୦ମି. ପାହାନ୍ତା ପ୍ରହର । ପ୍ରଥମେ ଫୋନ୍ କଲି ପ୍ରଫେସର ଅଶ୍ୱିନୀ କୁମାର ପଣ୍ଡାଙ୍କୁ । ପରେ ପରେ ପ୍ରଫେସର ପୂର୍ଣ୍ଣଚନ୍ଦ୍ର ମିଶ୍ର, ଡ. ରାଧାଗୋବିନ୍ଦ ପାଢ଼ୀ ଏବଂ ଛାତ୍ର ଡ. ସୁଶାନ୍ତ କୁମାର ଦାଶଙ୍କୁ । ସମସ୍ତେ ପ୍ରାୟ ୧୦-୧୫ ମିନିଟ୍ ଭିତରେ ଆସି ଡାକ୍ତରଖାନାରେ ପହଞ୍ଚି ମୋର ଦୁଃସମୟରେ ମୋତେ ଯେପରି ସାହାଯ୍ୟ କଲେ ସେମାନଙ୍କର ସେହି ଋଣ ଏ ଜୀବନରେ ଶୁଝି ପାରିବି ନାହିଁ ।

ବିଭାଗରେ ମୋର ବନ୍ଧୁମାନଙ୍କ ସହିତ ସଂପର୍କ ବୃତ୍ତିଗତ ନୁହେଁ । ସୁଦର୍ଶନ ସାର୍‌ଙ୍କ ଠାରୁ ଆରମ୍ଭ କରି ସର୍ବକନିଷ୍ଠ ସମୀର ସାର୍‌ଙ୍କ ପର୍ଯ୍ୟନ୍ତ, ଗବେଷକ-ଗବେଷିକାଙ୍କ ଠାରୁ ଛାତ୍ରଛାତ୍ରୀଙ୍କ ପର୍ଯ୍ୟନ୍ତ, ପୁଣି ବିଶ୍ୱବିଦ୍ୟାଳୟ କର୍ମଚାରୀଙ୍କ ଠାରୁ ଆରମ୍ଭ କରି ଗଂଜାମ ବାସୀଙ୍କ ପର୍ଯ୍ୟନ୍ତ- ସମସ୍ତଙ୍କ ସହିତ ଆତ୍ମୀୟତା ନିବିଡ଼ କରିବାକୁ ଚେଷ୍ଟା କରିଛି । ଏଥିରେ ଯେତିକି ପରିମାଣରେ ସଫଳ ହୋଇଛି ତାହା ଭଗବାନଙ୍କ ଆଶୀର୍ବାଦ ଏବଂ ସମସ୍ତଙ୍କର ସହଯୋଗ ଓ ସଦିଚ୍ଛା ଯୋଗୁ, ବିଫଳତା ମୋର ଅଜ୍ଞତା ଓ ନିର୍ବୋଧତା ଯୋଗୁ । ସୁଦର୍ଶନ ସାର୍ ଶାରୀରିକ ଗଠନ ଦୃଷ୍ଟିରୁ ଯେପରି ସୁପୁରୁଷ, ଜ୍ଞାନ ଓ ଗୁଣରେ ସେହିପରି ଉଚ୍ଚା ମଣିଷ । ଅବସର ଗ୍ରହଣ ପରେ ସାହିତ୍ୟର ବିକାଶ କ୍ଷେତ୍ରରେ ବହୁ କାର୍ଯ୍ୟ କରିଛନ୍ତି । କେନ୍ଦ୍ରସାହିତ୍ୟ ଏକାଡ଼େମୀ ଠାରୁ ଅତିବଡ଼ୀ ଜଗନ୍ନାଥ ଦାସ, ସାରଳା ସମ୍ମାନ ପ୍ରଭୃତି ବହୁ ଜାତୀୟ ଓ ରାଜ୍ୟସ୍ତରୀୟ ପୁରସ୍କାର ଓ ସମ୍ମାନ ଲାଭ କରିଛନ୍ତି । ଅଶ୍ୱିନୀ ସାର୍ ବିଭାଗର ସର୍ବାଧିକ ଅଧ୍ୟୟନ କରିଥିବା ଗବେଷକ ଓ ବ୍ୟକ୍ତିତ୍ୱ । ତାଙ୍କ ସହିତ ମୁଁ ଯେଉଁଠି ବସେ ସମୟର ସଦୁପଯୋଗ ପାଇଁ ତାଙ୍କ ସହିତ ବିଦ୍ୟା ହିଁ ଚର୍ଚ୍ଚା କରିଥାଏ । ପୁରାଣ ଠାରୁ ଆରମ୍ଭ କରି ସାମ୍ପ୍ରତିକ କାଳ ପର୍ଯ୍ୟନ୍ତ ସବୁଥିରେ ତାଙ୍କର ଗଭୀର ଜ୍ଞାନ । ଜାତୀୟସ୍ତରରେ ସାଂପ୍ରତିକ କାଳର ବହୁ ଗ୍ରନ୍ଥକାରଙ୍କ ସଂପର୍କରେ ସେ ନାନା ଗ୍ରନ୍ଥ ଅନୁଶୀଳନ କରନ୍ତି । ତାଙ୍କ ଘରେ ସେ ସମ୍ପର୍କିତ ପ୍ରଚୁର ବହି । ବେଳେବେଳେ ମୁଁ ତାଙ୍କ ଘରୁ ସେସବୁ ବହି ଆଣେ । ବିଭିନ୍ନ ପ୍ରସଙ୍ଗ ନ ବୁଝି ପାରିଲେ ସେସବୁ ତାଙ୍କ ମୋ ଭିତରେ ଆଲୋଚନା ହୁଏ । ଆଲୋଚନାକାଳରେ ସେ ଭୋକଶୋଷ ଭୁଲିଯାନ୍ତି । ମୋର ପୁରାଣ, ବେଦ ଉପନିଷଦର ଯେଉଁଠି ଯାହା ସନ୍ଦେହ- ଅନେକାଂଶ ତାଙ୍କ ଦ୍ୱାରା ସ୍ପଷ୍ଟ ହୁଏ । ବେଳେବେଳେ ତାଙ୍କ ଘରେ, ଅଧିକାଂଶ ସମୟ ବିଶ୍ୱବିଦ୍ୟାଳୟ ନିକଟସ୍ଥ ହନୁମାନ ମନ୍ଦିର ପରିସରରେ ବିଳମ୍ବିତ ରାତ୍ରି ପର୍ଯ୍ୟନ୍ତ ଆମେ ଏକାଠି ହୋଇ ଏହାହିଁ ଆଲୋଚନା କରୁ ।

**ତୁ'ରେ ସମ୍ବୋଧନ:**

ଦେବୀ ସାର୍ ମୋର ଆସିବା ଦିନୁ ମୋତେ ତୁ' ସମ୍ବୋଧନରେ ହିଁ କଥା କହନ୍ତି । ତାଙ୍କର ଏହି ସମ୍ବୋଧନ ମୋତେ ତାଙ୍କ ନିକଟରେ ଖୁବ୍ ଅନ୍ତରଙ୍ଗ କରି ରଖିଛି ଓ

ଉଭୟଙ୍କ ଭିତରେ ଆତ୍ମୀୟତା ବୃଦ୍ଧିରେ ସହାୟକ ହୋଇଛି ବୋଲି ମୋର ଅନୁଭବ ହୁଏ । ବେଳେବେଳେ ସେ ରାଗରେ ମତେ କ'ଣ କ'ଣ କହିଥାନ୍ତି । ମୁଁ ଆଦୌ ଶୁଣେନାହିଁ କି ସେସବୁର କିଛି ଉତ୍ତର ଦିଏନାହିଁ । ପରଦିନ ଆସି ଆମେ ପୁଣି ସ୍ୱଭାବସୁଲଭ ଭଙ୍ଗୀରେ କଥାହେଉ । ଉଭୟ ଅଶ୍ୱିନୀ ସାର୍ ଓ ଦେବୀ ସାର୍ ବିଶ୍ୱବିଦ୍ୟାଳୟରେ ନାନା ଦୃଷ୍ଟିରୁ ମୋ ପାଇଁ ଢାଲପରି କାର୍ଯ୍ୟକରିବାର ମୁଁ ମର୍ମେ ମର୍ମେ ଅନୁଭବ କରିଛି । ବୟସରେ ସାନ ହେଲେ ବି ବିଭାଗର ବିଭିନ୍ନ କାର୍ଯ୍ୟରେ ବନ୍ଧୁ ସଦାନନ୍ଦ ବାବୁ, ଦେବୀପ୍ରସାଦ ବାବୁ ଓ ସମୀର ବାବୁଙ୍କ ସହିତ ଆଲୋଚନା କରେ, ସମସ୍ତଙ୍କ ପରାମର୍ଶ ନିଏ । ସେମାନଙ୍କ ସହିତ ମଧ୍ୟ ବିଦ୍ୟାଚର୍ଚ୍ଚା କରିଥାଏ । ଏଥିରେ ମୋର ଅନେକ ଅଜ୍ଞତା ଦୂର ହୋଇଥାଏ । ସଦାନନ୍ଦ ବାବୁ ଓ ମୁଁ ବିଶ୍ୱବିଦ୍ୟାଳୟରେ ଗୋଟିଏ ଦିନ ଯୋଗ ଦେଇଥିଲୁ । ଗୋଟିଏ ଛାତ ତଳେ ଉଭୟ ଏକତ୍ର ପ୍ରାୟ ଏକବର୍ଷ ରହିଛୁ । ଅନେକ ସମୟରେ ତାଙ୍କ ସହିତ ମୋର କଥା କଟାକଟି ହୋଇଛି । ଏଠାରେ ଯୋଗଦେବା ଦିନଠାରୁ ଏଯାବତ୍ ମୁଁ ତାଙ୍କୁ ସବୁବେଳେ ଅନୁଜ ଦୃଷ୍ଟିରେ ଦେଖିଛି ଓ ତାଙ୍କ ସହିତ ବ୍ୟାକରଣ ଓ ଭାଷାଚର୍ଚ୍ଚା କରିଛି ।

**ଭୁଲ ବି ଠିକ :**

ବିଶ୍ୱବିଦ୍ୟାଳୟରେ ଯୋଗଦେବା ଦିନଠାରୁ ଏଯାବତ୍ ବିଶ୍ୱବିଦ୍ୟାଳୟର ଛାତ୍ରଛାତ୍ରୀ, ଗବେଷକ ଗବେଷିକାଙ୍କ ସମେତ ବହୁ ବୁଦ୍ଧିଜୀବୀ, ଜନସାଧାରଣ ମୋତେ ଖୁବ୍ ସ୍ନେହ ଓ ଶ୍ରଦ୍ଧା କରିବାର ମୁଁ ଅନୁଭବ କରିଛି । ସେମାନେ ମୋତେ ଭଲ ପାଇଛନ୍ତି । ବିଶେଷ କରି ଗବେଷକ ଓ ଛାତ୍ରଛାତ୍ରୀଙ୍କ ନିକଟରେ ମୁଁ ମୋର ଅଜ୍ଞତାବଶତଃ କିଛି ଭୁଲ କଥା କହିଲେ ବି ମୋର ସେହି ଭୁଲକୁ ଅନ୍ଧଭାବରେ ଠିକ ଭାବି ସେମାନେ ତାହାକୁ ଗ୍ରହଣ କରିନେଇଛନ୍ତି । ପରକାଳରେ ମୁଁ ଯେତେବେଳେ ମୋ ନିଜର ଭୁଲ ଜାଣିପାରିଛି- ନିର୍ବିକାର ଭାବରେ ତାହା ସେମାନଙ୍କ ସମ୍ମୁଖରେ ପ୍ରକାଶ କରିଛି ଏବଂ ସେତିକିବେଳେ ଅନୁଭବ କରିଛି ମୋର ସ୍ନେହର ଗବେଷକ ଓ ଛାତ୍ରଛାତ୍ରୀଙ୍କ ମଧ୍ୟରେ ଥିବା ମହାନୁଭବତା, ହୃଦୟବତ୍ତା ଓ ମୋତେ ଭଲପାଇବାର ନିଦର୍ଶନ ।

**ନିଜର ପରିଚୟ :**

ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ସ୍ନାତକୋତ୍ତର ଓଡ଼ିଆ ବିଭାଗରେ ମୁଁ ଯୋଗଦେଇଥିଲି ପ୍ରାୟ ୨୪ବର୍ଷ ତଳେ । ମଣିଷ ଜୀବନରେ ଏହି ୨୪ବର୍ଷ କିଛି କମ୍ କଥା ନୁହେଁ । ଅଧ୍ୟାପକ ଭାବରେ ଯୋଗଦେଇ ଭଗବାନଙ୍କ ଇଚ୍ଛା ସହିତ ଗୁରୁଜନଙ୍କ ଆଶୀର୍ବାଦ ଓ କନିଷ୍ଠମାନଙ୍କର ଶ୍ରଦ୍ଧା ଯୋଗୁ ମୁଁ ଦୁଇ ଦୁଇଥର ବିଭାଗ ମୁଖ୍ୟ ଓ ପ୍ରଫେସର ଭାବରେ ଅବସ୍ଥାପିତ ହୋଇଛି । ଏତିକିବେଳେ ପାଳିତ ହେଉଛି ବିଭାଗର ସୁବର୍ଣ୍ଣ ଜୟନ୍ତୀ । ଅତୀତକୁ ହେଜିବା, ବର୍ତ୍ତମାନକୁ ଦୃଢ଼ କରିବା ଏବଂ ବିଭାଗର ଭବିଷ୍ୟତ ପାଇଁ ସ୍ୱପ୍ନ ଦେଖିବା ସହିତ ଏସବୁକୁ ଏକ ସୂତ୍ରରେ ଗ୍ରଥିତ କରିବାର ସୁଯୋଗ ଆସିଛି । ଏହି

ସମୟରେ ବିଭାଗର ସମସ୍ତଙ୍କ ସହଯୋଗ ଓ ପ୍ରଚେଷ୍ଟାରେ ଆମେ ଆମ ବିଭାଗର ପ୍ରାତଃ ସ୍ମରଣୀୟ ପ୍ରତିଷ୍ଠାତା ପ୍ରଫେସର ଓ ମୁଖ୍ୟ କୁଞ୍ଜବିହାରୀ ତ୍ରିପାଠୀଙ୍କ ସମେତ ସ୍ୱର୍ଗତଃ ପ୍ରଫେସର କାହ୍ନୁଚରଣ ମିଶ୍ର, ପ୍ରଫେସର ବେଣୀମାଧବ ପାଢ଼ୀ, ପ୍ରଫେସର ସୀତାରାମ ମହାପାତ୍ରଙ୍କୁ ସ୍ମରଣ କରିଛୁ । ସେହି ପ୍ରଜ୍ଞାପୁରୁଷଙ୍କ ସ୍ମୃତିରେ ଏକାଧିକ ସ୍ମାରକୀ ବକ୍ତୃତାମାଳାର ଆୟୋଜନ କରିଛୁ । ବିଭାଗର ଅତୀତ ପଚାଶ ବର୍ଷର ଜୀବନ୍ତ ସାକ୍ଷୀ ହେଉଛନ୍ତି ୧୯୬୮-୭୦ ମସିହାର ଛାତ୍ରଛାତ୍ରୀଙ୍କ ଠାରୁ ଆଜିପର୍ଯ୍ୟନ୍ତ ଅଧ୍ୟୟନରତ ଛାତ୍ରଛାତ୍ରୀ ଓ ଗବେଷକମାନେ । ସବୁରି ସ୍ୱପ୍ନକୁ ଏକତ୍ର କରି କୁଳପତି ପ୍ରଫେସର ରାଜେନ୍ଦ୍ର ପ୍ରସାଦ ଦାସଙ୍କ ବ୍ୟକ୍ତିଗତ ସହଯୋଗରେ 'ଆକାଂଙ୍କ୍ଷା'ର ନୀଡ଼ ରଚନା ପାଇଁ ପ୍ରଚେଷ୍ଟା କରିଛି । ଏଥିରେ ସଂଲଗ୍ନ ହୋଇଛି ଅନେକ ମଧୁର ଓ ଅପାସୋରା ସ୍ମୃତି । ଏହାର ସଫଳତା ବିଭାଗର; ବିଫଳତା ମୋର ନିଜର । ଏହି ବିଭାଗ ପାଇଁ ମୁଁ ଏକ ପରିଚୟ ପାଇଛି । ବିଶ୍ୱବିଦ୍ୟାଳୟ ପ୍ରଦତ୍ତ ଅର୍ଥରାଶି ରକ୍ତ କଣିକା ହୋଇ ମୋର ଦେହର ପ୍ରତ୍ୟେକ ଶିରାପ୍ରଶିରାରେ ପ୍ରବାହିତ ହେଉଛି ଓ ମୋ ସହିତ ମୋର ପରିବାରକୁ ସାମାଜିକ ପ୍ରତିଷ୍ଠା ଦେଇଛି । ଏହି ବିଭାଗର ସୁବର୍ଣ୍ଣ ସମ୍ବତ୍ସର ଅବକାଶରେ ଆଜି ମୁଁ ଓଡ଼ିଆ ବିଭାଗ ସମେତ ସମଗ୍ର ଭଞ୍ଜବିହାର, ଏହାର ପ୍ରତ୍ୟେକଟି ଅଣୁ ପରମାଣୁ ଏବଂ ଏହି ବିଶ୍ୱବିଦ୍ୟାଳୟ ସହିତ ଜଡ଼ିତ ସମସ୍ତଙ୍କୁ ମଥାନତ ପ୍ରଣତି ଜଣାଉଛି । ଆଉ ଅଧିକ କ'ଣ ? ଶେଷରେ ମୋ ଜୀବନପାତ୍ରକୁ ନାନା ଦିଗରୁ ପରିପୂର୍ଣ୍ଣ କରିଥିବା ଭଞ୍ଜବିହାରକୁ ଆଭୂମ ପ୍ରଣିପାତ କରି ଆମ ସାହିତ୍ୟର ବରେଣ୍ୟକବି ବୈକୁଣ୍ଠନାଥ ପଟ୍ଟନାୟକଙ୍କ 'ଯାତ୍ରାସଂଗୀତ' କବିତାରୁ ପଦଟିଏ ଉଦ୍ଧାର ସହିତ ମୋ ବକ୍ତବ୍ୟରେ ପୂର୍ଣ୍ଣଚ୍ଛେଦ ଟାଣୁଛି ।

"ଜୀବନ ପାତ୍ର ମୋ ଭରିଛ କେତେ ମତେ,
ନ ଦେଲ କିଛି ବୋଲି କହିବି କି ହେ ଆଉ ।
ଜୀବନ ପ୍ରିୟତମ ହରିଛ ମୋ ଭରମ,
ତରଣୀ ମୋର ତବ ସାଗରେ ବହିଯାଉ ।"

•

*ବିଭାଗ ମୁଖ୍ୟ,*
*ସ୍ନାତକୋତ୍ତର ଓଡ଼ିଆ ବିଭାଗ,*
*ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ*

# ବିଶ୍ୱବିଦ୍ୟାଳୟ, ବିଭାଗ ଓ ମୁଁ...

ଡ. ସଦାନନ୍ଦ ନାୟକ

ଏ ବିଶ୍ୱବିଦ୍ୟାଳୟରେ ପୂର୍ବରୁ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗରୁ ଜେ.ଆର୍.ଏଫ୍. ପାଇ ଏଠାରେ ଗବେଷଣା କରିବାର ସୁଯୋଗ ପାଇଥିଲି ଏବଂ ତତ୍‌ପରେ ଓଡ଼ିଶା ସରକାରଙ୍କ ଦ୍ୱାରା 'ଓଡ଼ିଶା ଶିକ୍ଷା-ସେବା'ରେ ନିଯୁକ୍ତ ହୋଇ ରାଜେନ୍ଦ୍ର କଲେଜ, ବଲାଙ୍ଗୀରରେ ଅଧ୍ୟାପନା କରୁଥିଲି ।

ଦିନେ ସଂଧ୍ୟାରେ ମୋ ପରମ ପୂଜନୀୟ ଗୁରୁଦେବ ପ୍ରଫେସର୍ ଡକ୍ଟର୍ ଗଗନେନ୍ଦ୍ରନାଥ ଦାଶଙ୍କ ଟେଲିଗ୍ରାମ 'Come soon' ପାଇ ଆସି ଏଠାରେ ସାକ୍ଷାତ୍‌କାର ପରୀକ୍ଷା ଦେଇ ଯୋଗ୍ୟ ବିବେଚିତ ହୋଇଥିଲି । ଏ ଅବସରରେ ତତ୍‌କାଳୀନ ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷ, କର୍ମଚାରୀ, ସାକ୍ଷାତ୍‌କାର ପରୀକ୍ଷାର ସମସ୍ତ ସଦସ୍ୟ, ମୋ ଗୁରୁମଣ୍ଡଳିଙ୍କ ନିକଟରେ କୃତଜ୍ଞତା ଜ୍ଞାପନ କରୁଛି ଓ ପ୍ରଣାମ ଜଣାଉଛି । ବ୍ରହ୍ମପୁରକୁ ଯାଇ ଟେଲିଗ୍ରାମ୍ କରିଥିବା ମୋର ଅନ୍ୟତମ ଗୁରୁ ଡକ୍ଟର୍ ଦୁଃଖୀଶ୍ୟାମ ଗୌଡ଼ଙ୍କୁ ମଧ୍ୟ ଧନ୍ୟବାଦ ଦେଉଛି ଓ ପ୍ରଣିପାତ କରୁଛି ।

ଯେଉଁ ବିଭାଗରେ ଦିନେ ପ୍ରଫେସର୍ କୁଞ୍ଜବିହାରୀ ତ୍ରିପାଠୀ, ପ୍ର. କାହ୍ନୁଚରଣ ମିଶ୍ର, ପ୍ର. ଶ୍ରୀନିବାସ ମିଶ୍ର, ପ୍ର. ଗଗନେନ୍ଦ୍ରନାଥ ଦାଶ, ପ୍ର. ଦାଶରଥି ଦାସ, ଡ. ବେଣୀମାଧବ ପାଢ଼ୀ, ଡ. ସୀତାରାମ ମହାପାତ୍ର ଅଧାପନା କରୁଥିଲେ, ସେଠି ପାଠ ପଢ଼ାଇବା ସୁଯୋଗ ପାଇବା ଯେ କୌଣସି ଲୋକ ପାଇଁ ଗୌରବର ବିଷୟ ନିଶ୍ଚୟ । ପୁଣି ପ୍ର. ସୁଦର୍ଶନ ଆଚାର୍ଯ୍ୟ, ପ୍ର. ବାଉରୀବନ୍ଧୁ କର, ପ୍ର. ଅଶ୍ୱିନୀ କୁମାର ପଂଡ଼ା, ପ୍ର. ଦେବୀପ୍ରସନ୍ନ ପଟ୍ଟନାୟକ, ପ୍ର. ପୂର୍ଣ୍ଣଚଂଦ୍ର ମିଶ୍ର, ପ୍ର. ପ୍ରସନ୍ନ କୁମାର ସ୍ୱାଇଁ, ପ୍ର. କୃଷ୍ଣଚଂଦ୍ର ପ୍ରଧାନଙ୍କ ସହିତ ଅଧ୍ୟାପନା କରିବା ମଧ୍ୟ ଗର୍ବର ବିଷୟ । ପରବର୍ତ୍ତୀ ସମୟରେ ଯୋଗ ଦେଇଥିବା ଡ. ଦେବୀପ୍ରସାଦ ଶତପଥୀ ଓ ଡ. ସମୀର ଭୋଇଂକ ସହିତ କାମ କରିବା ବି ଆନଂଦପ୍ରଦ ।

ଏହି ବିଶ୍ୱବିଦ୍ୟାଳୟରେ ଚାକିରି କରି ନଥିଲେ, ହୁଏତ ମୋ ପିଏଚ୍.ଡି ଗବେଷଣା ସଫଳ ଓ ସାକାର ହୋଇପାରି ନଥା'ନ୍ତା । ମୋ ଦିଗ୍‌ଦର୍ଶକ ପ୍ରଫେସର୍ ଗଗନେଂଦ୍ରନାଥ ଦାଶ ଏହି ବିଶ୍ୱବିଦ୍ୟାଳୟରେ କାର୍ଯ୍ୟରତ ଥିବା ଏବଂ ପ୍ରତ୍ୟହ ସାକ୍ଷାତ୍ ହେତୁ ତାହା ସଂଭବ ଓ ସଫଳ ହେଲା । ମୋର ଏବେ ବି ମନେ ପଡ଼େ ପ୍ରଥମ ଦେଖାରେ ସାର୍ କହିଥିଲେ- ମୁଁ ଜଣେ ଗର୍ବୀ ଆଉ ଅହଂକାରୀ ଲୋକ, ସ୍ୱାଭିମାନୀ । ଭଲ କାମ

ନକଲେ, ନୂଆ କଥା ନକହିଲେ ମୁଁ ଜମା ହସ୍ତଖତ କରିବିନି । କିଏ କ'ଣ କରୁଛି କରୁ, ମୁଁ ସେଥିରେ Party ହେବି ନାହିଁ । ତମେ ଯାଅ ଚିନ୍ତା କର, ରାଜି ହେଲେ ତ ଆସିବ ନହେଲେ ନାଇଁ । ମୋର ପରମ ଭାଗ୍ୟ ଏପରି ଜଣେ ଗୁରୁ ମୋ ଜୀବନରେ ଆସିଛନ୍ତି ।

ଏଠି ଚାକିରି ନକରିଥିଲେ ମୋ ଡି.ଲିଟ୍. ଗାଇଡ୍ ପରମ ପୂଜନୀୟ ଗୁରୁ ଡ. କିଶୋରଚଂଦ୍ର ମିଶ୍ରଂକୁ ପାଇନଥା'ନ୍ତି । ଏକଦା ଏଠି ଅଯୋଜିତ ଏକ Refresher Course ରେ ପଢ଼ାଇବାକୁ ସାର୍ ଆସିଥା'ନ୍ତି । ଦେଖିଲି ସଂସ୍କୃତ, ହିଂଦୀ, ଓଡ଼ିଆରେ ଅଗାଧ ପାଂଡ଼ିତ୍ୟ । ସେତେବେଳକୁ ଅବସର ନେଇ ପ୍ରଫେସର୍ ଦାଶ ଭୁବନେଶ୍ୱରରେ ଥା'ନ୍ତି । ତେଣୁ ସେଇଠି ସ୍ଥିର କଲି ସାର୍‌ଂକ ପାଖରେ ଡି.ଲିଟ୍. କରିବି । ଅନେକ ଜ୍ଞାନ ପାଇଛି ତାଂକ ଠାରୁ । ସ୍କୁଲ୍, କଲେଜ ମାଟି ମାଡ଼ି ନଥିବା ମୋ ଗୁରୁ ଡକ୍ଟର ମିଶ୍ର ଯେ ସଂସ୍କୃତ, ହିଂଦୀ, ଓଡ଼ିଆ ଭାଷା-ସାହିତ୍ୟ, ବ୍ୟାକରଣରେ ଅତ୍ୟନ୍ତ ପଂଡ଼ିତ, ଓଡ଼ିଶାର ଯେ କୌଣସି ବିଦ୍ୱାନ୍ ସ୍ୱୀକାର କରିବେ । ଆଉ ମୁଁ ତାଂକର ଶିଷ୍ୟ, ଏହା ମୋ ପାଇଁ ଗୌରବର ବିଷୟ ।

ଏଠି ଲୋକ ସାହିତ୍ୟ, ନାଟକ, ଭାଷା ଓ ଭଂଜ ସାହିତ୍ୟ ବା ଓଡ଼ିଆ ଆଳଂକାରିକ ସାହିତ୍ୟ ପଢ଼ାଇବାର ସୁଯୋଗ ପାଇଛି । ଯାହା ମୋ ଗବେଷଣା ଏବଂ ଲେଖାଲେଖିରେ ସାହାଯ୍ୟ କରିଛି । ଏଠୁ ଉତ୍ତୀର୍ଣ୍ଣ ହୋଇଥିବା ଅନେକ ଛାତ୍ର ଆଜି ସମାଜର ଉଚ୍ଚ ଆସନ ମଂଡ଼ନ କରିଛନ୍ତି । ଅନେକଂକ ପାଇଁ ମୁଁ ଗର୍ବ ଅନୁଭବ କରେ । ମୋ ପତ୍ନୀ ମଧ୍ୟ ଏହି ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡି ଡିଗ୍ରି ପାଇଛନ୍ତି । ଅନେକ ସୁଖଦ, ଦୁଃଖଦ ଘଟଣା ଏଠି ଘଟିଛି । ଗୋଟିଏ ଘଟଣା କହିବି । ସେତେବେଳେ ମୁଁ ବିଶ୍ୱବିଦ୍ୟାଳୟ ନାଟ୍ୟ ସଂସଦର ଉପସଭାପତି ଥାଏ । ମୋ ନିର୍ଦ୍ଦେଶିତ ଓ ଲିଖିତ ନାଟକ ମଂଚସ୍ଥ ହେଉଥାଏ । ସମସ୍ତ କାମ ସାରି ଘରକୁ ଯାଇ ଦେଖେତ ସାନପୁଅକୁ ପ୍ରଚଂଡ଼ ଥଂଡ଼ା, ସେ ଧଇଁସଇଁ ହେଉଛି । ସେତେବେଳକୁ ରାତି ୧୨ଟା ପରେ ହେବ । ଧାଇଁଲି ଟାକ୍ସିବାଲା ପାଖକୁ । ସେ ଉଠିଲେ ନାହିଁ । ବିବ୍ରତ ହୋଇ ଘରକୁ ଫେରୁଥାଏ, କିଛି ପିଲା ମୋତେ ବାଟରେ ଦେଖି କହିଲେ – ସାର୍ ଆପଣ ଏତେବେଳେ କୁଆଡ଼େ ଯାଇଥିଲେ ? ସବୁକଥା କହିଲି, ସେମାନେ କହିଲେ – ସାର୍ ପାଖରେ ଗାଡ଼ି ପହଂଚିବ । ବିଶ୍ୱବିଦ୍ୟାଳୟର ଡ୍ରାଇଭରଂକୁ ଉଠାଇ ସତରେ ଦଶ-କୋଡ଼ିଏ ମିନିଟ୍ ଭିତରେ ବିଶ୍ୱବିଦ୍ୟାଳୟ ଗାଡ଼ି ଆଣି ଠିଆ କରାଇଲେ । ଆମେ ମେଡ଼ିକାଲ୍ କଲେଜ୍ ଗଲୁ । ସେମାନଂକ ଭିତରୁ ଜଣେ ଆମ ସାଂଗରେ ଗଲେ ।

ମୋ ପୁଅକୁ ଡାକ୍ତର ଦେଖୁଥା'ନ୍ତି । ହଷ୍ଟେଲ୍‌କୁ ଆହୁରି ପଂଦର କି କୋଡ଼ିଏ ପିଲା ୩ଗୋଟି କାର୍‌ରେ ଯାଇ ପହଂଚିଲେ । ଡାକ୍ତର ଟିକେ ଡରିଗଲେ, ସେମାନେ ଡାକ୍ତରଂକୁ କହିଲେ ଆପଣ ଟ୍ରିଟ୍‌ମେଂଟ୍ କରନ୍ତୁ । ଆମେ ଆପଣଂକୁ ଡିଷ୍ଟର୍ବ କରିବୁନି ।

ପାହାନ୍ତିଆରେ କରିବୁ ତ । ପାହାନ୍ତିଆରେ ମୋ ପୁଅ ସୁସ୍ଥ ହେଲା, ସମସ୍ତେ ସାଂଗ ହୋଇ କ୍ୟାଂପସ୍ ଫେରିଲୁ । ସେମାନଂକ ଏ ମହାନ୍ ଗୁଣ ପାଇଁ ମୁଁ ତାଂକୁ ଧନ୍ୟବାଦ ଦେଇଛି । କୃତଜ୍ଞତା ଜଣାଉଛି ।

ଏ ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗ ଏକ ମହାନ ପବିତ୍ର ଗୀତା । ଏ ପୀଠର ସୁନାମ ବଜାୟ ରଖିବା ନିମନ୍ତେ ଯୋଗ୍ୟ ହେବାର ଆଶୀର୍ବାଦ ମୁଁ ପୂର୍ବସୂରୀଙ୍କ ଠାରୁ କାମନା କରୁଛି । ମୋ ସାକ୍ଷାତ୍‌କାର ପରୀକ୍ଷା ସମୟର କୁଳପତି ପ୍ରଫେସର୍ ଡ. ଏମ୍.କ୍ୟୁ.ଖାନ୍ ଓ ବିଷୟ ବିଶେଷଜ୍ଞ ପ୍ରଫେସର୍ ଶରତଚଂଦ୍ର ପ୍ରଧାନ, ପ୍ରଫେସର୍ ନୀଳାଦ୍ରି ଭୂଷଣ ହରିଚଂଦନ ଓ ଦିବଂଗତ ଡକ୍ଟର ଗୋବିଂଦ ଚଂଦ୍ର ଉଦ୍‌ଗାତା ମଧ୍ୟ ଏ ଅବସରରେ ଆଶୀର୍ବାଦ କରନ୍ତୁ । ଏ କାମନା କରୁଛି ।

•

*ପ୍ରାଧ୍ୟାପକ, ଓଡ଼ିଆ ବିଭାଗ*
*ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ*

# ଏ ବିଭାଗ ଓ ମୁଁ

**ଡ. ସମୀର ଭୋଇ**

ପଚାଶ ବର୍ଷ ଗୋଟିଏ ବିଭାଗ ପାଇଁ ଘଟଣା ବହୁଳ, ଅନେକ କୃତିତ୍ୱ ଓ ସାଫଲ୍ୟରେ ଅବିସ୍ମରଣୀୟ । ବିଭାଗ ତା'ର ପଚାଶ ବର୍ଷ ପୂର୍ତ୍ତି ଉପଲକ୍ଷେ ଏକାନ୍ତ ନିଷ୍ଠା ଓ ଶୁଚିତାର ସହିତ ସୁବର୍ଣ୍ଣ ଜୟନ୍ତୀ ଉତ୍ସବ ପାଳନ କରୁଛି । ଏହି ଉପଲକ୍ଷେ ଆମ ବିଭାଗରେ ଉଦ୍‌ଘାଟନ ଉତ୍ସବ ସହିତ ଆମ ପରିବାରର ପ୍ରାଜ୍ଞ ଆଚାର୍ଯ୍ୟ ତଥା ଓଡ଼ିଶା ବାହାର ବିଶ୍ୱବିଦ୍ୟାଳୟ ପ୍ରାଜ୍ଞ ପ୍ରଫେସର୍‌ମାନଙ୍କୁ ଉପାୟନ ତଥା ସମ୍ବର୍ଦ୍ଧନା ଜ୍ଞାପନ କରିବା ଆଦି ବିଭିନ୍ନ ଚିତ୍ତାକର୍ଷକ କାର୍ଯ୍ୟକ୍ରମ ସହିତ ସାହିତ୍ୟାଲୋଚନା ମଧ୍ୟ ବିଭାଗ କରିଛି । ଏହି ଅବସରରେ ବିଭାଗ ମୁଖ୍ୟ ପ୍ରଫେସର୍ ପ୍ରସନ୍ନ କୁମାର ସ୍ୱାଇଁ ମୋର ସ୍ମୃତି ଓ ଅନୁଭୂତିରୁ ସଂକ୍ଷିପ୍ତ ଲେଖାଟିଏ ମାଗିଛନ୍ତି ।

ବୃତ୍ତି ସନ୍ଧାନର ମହକ ଖୋଜି ଭଞ୍ଜବିହାରରେ ପହଞ୍ଚିଲା ବେଳେ ଓଡ଼ିଆ ବିଭାଗର ବୟସ ଦୁଇ କୋଡ଼ି ଚାରି ବର୍ଷ । ସେତେବେଳେ ପ୍ରାଧ୍ୟାପକ ଡ.ସଦାନନ୍ଦ ନାୟକ ଥିଲେ ବିଭାଗର ମୁଖ୍ୟ । ଓଡ଼ିଆ ଏମ୍.ଏ. ଶ୍ରେଣୀରେ ସେ ବର୍ଷ ସର୍ବମୋଟ ୨୪ ଜଣ ଛାତ୍ରଛାତ୍ରୀ ନାମ ଲେଖାଇଥା'ନ୍ତି । ସେଥିମଧ୍ୟରୁ ପନ୍ଦର କୋଡ଼ିଏ ଜଣ ରୀତିମତ କ୍ଲାସ୍‌କୁ ଆସୁଥା'ନ୍ତି । ସେମାନଙ୍କ ପଠନର ସ୍ପୃହା ଥିଲା ଖୁବ୍ ଉନ୍ନତ । ସେତେବେଳେ ଓଡ଼ିଆ ବିଭାଗରେ ଅଧ୍ୟାପନା ଦାୟିତ୍ୱ ତୁଲାଉଥିଲେ ପ୍ରଫେସର୍ ବାଉରୀବନ୍ଧୁ କର, ପ୍ରଫେସର୍ ଅଶ୍ୱିନୀ କୁମାର ପଣ୍ଡା, ପ୍ରଫେସର୍ ଦେବୀପ୍ରସନ୍ନ ପଟ୍ଟନାୟକ, ପ୍ରାଧ୍ୟାପକ ଡ. ପ୍ରସନ୍ନ କୁମାର ସ୍ୱାଇଁ ଓ ଡ. ସଦାନନ୍ଦ ନାୟକଙ୍କ ଭଳି ବିଦ୍ୱାନ୍ । ପରେ ଏହି ଅଧ୍ୟାପକ ମଣ୍ଡଳୀ ସହ ଡ. ଦେବୀପ୍ରସାଦ ଶତପଥୀ ଓ ମୁଁ ନବାଗତ ଅଧ୍ୟାପକ ଭାବେ ସାମିଲ୍ ହୋଇଥିଲୁ ।

ପରମ୍ପରାର ପ୍ରବାହରେ ସମୟ ଗଡ଼ିଚାଲେ । ବିଭାଗ ମୁଖ୍ୟ ଡ. ନାୟକ ସମସ୍ତ ଶିକ୍ଷକଙ୍କ ଉପସ୍ଥିତିରେ ଆମ ଦୁଇ ଜଣଙ୍କୁ ସ୍ୱାଗତ ଜଣାଇ ଅଧ୍ୟାପକ ମଣ୍ଡଳୀ ଭିତରେ କିଏ କେଉଁ ବିଷୟ ପଢ଼ାଇବେ, ତା'ର ଖସଡ଼ା ପ୍ରସ୍ତୁତ କଲେ । ମୋତେ ପ୍ରାଚୀନ ସାହିତ୍ୟ, ପ୍ରବନ୍ଧ ଓ ସ୍ୱତନ୍ତ୍ର ପତ୍ର ଲୋକ ସାହିତ୍ୟ ପଢ଼ାଇବାର ଦାୟିତ୍ୱ ପ୍ରଦାନ କରାଗଲା । ସେହି ଦିନ ଠାରୁ ଆଜି ଯାଏଁ ଏସବୁର ଶିକ୍ଷାଦାନ କରି ଆସୁଅଛି । ପ୍ରାଚୀନ ଓଡ଼ିଆ ସାହିତ୍ୟ ପଢ଼ାଇଲା ବେଳେ ଓଡ଼ିଆ ଜାତିର ପ୍ରାଚୀନତା, ସାଂସ୍କୃତିକ ପ୍ରେକ୍ଷାପଟ, ଧର୍ମୀୟ ଭିତ୍ତିଭୂମି, ସାମାଜିକ ସ୍ଥିତି ସହ ଭାଷାର ବିକାଶ, ମୁଖ୍ୟଧାରା ଏବଂ ପ୍ରାଚୀନ କବିମାନଙ୍କର ଜୀବନଭୂମି ତଥା ସାରସ୍ୱତ କୃତି ଓ କୀର୍ତ୍ତି ପ୍ରସଙ୍ଗ ଅବତାରଣା କରେ । ଛାତ୍ରଛାତ୍ରୀମାନଙ୍କୁ ସମୟର

ପ୍ରେକ୍ଷାପଟରେ ସାହିତ୍ୟର କିପରି ଆତ୍ମିକ ଓ ଆଙ୍ଗିକ ବିକାଶ ଘଟିଛି, ତା'ର ସ୍ୱରୂପ କଳନା କରିବାକୁ ଆହ୍ୱାନ ଜଣାଇଥାଏ । ତଦ୍ଦ୍ୱାରା ସାହିତ୍ୟରେ ଜାତିର ନାଡ଼ି ବନ୍ଧନ ଓ ପ୍ରାଣ ସ୍ପନ୍ଦନ କିପରି ରହିଛି- ତାହା ଆଲୋଚନା କରେ ।

ବିଭାଗରେ ଅଧ୍ୟାପକ ରୂପେ ଯୋଗଦାନ ସମୟରେ ମୁଁ ପିଏଚ୍.ଡି ଡ଼ିଗ୍ରୀ ପ୍ରାପ୍ତ ହୋଇ ନଥିବା ଯୋଗୁଁ ଏମ୍.ଫିଲ୍ ଛାତ୍ରଛାତ୍ରୀଙ୍କୁ ଅଧ୍ୟାପନା ଓ ସେମାନଙ୍କ ଚର୍ଚ୍ଚା ନିବନ୍ଧ (Dissertation)ର ନିର୍ଦ୍ଦେଶନା ଦାୟିତ୍ୱରୁ ନିବୃତ୍ତ ଥିଲି । ତଥାପି ମୋତେ ଯେଉଁ ଦାୟିତ୍ୱ ପ୍ରଦାନ କରାଯାଇଥିଲା, ଆନନ୍ଦ ସହକାରେ ସେସବୁ ସୁଚାରୁ ରୂପେ ତୁଲାଇ ଆସୁଛି । ସ୍ନାତକୋତ୍ତର ପ୍ରଥମ ବର୍ଷ ଠାରୁ ଏମ୍.ଫିଲ୍. ଛାତ୍ରଙ୍କ ଯାଏଁ ପ୍ରତ୍ୟେକ ଛାତ୍ରଛାତ୍ରୀଙ୍କର ପଠନର ସ୍ପୃହା କିପରି ବଢ଼ିବ ଏବଂ ଲେଖାଲେଖି ପ୍ରତି ସେମାନେ ମନୋନିବେଶ କରିବେ, ସେଥିପାଇଁ ଅନୁପ୍ରେରଣା ଦେଉଛି । ଛାତ୍ରଛାତ୍ରୀ ତଥା ଗବେଷକ ଗବେଷିକାମାନଙ୍କର ସର୍ଜନଶୀଳତାର ବିକାଶ ଲାଗି ଯଥାଯଥ ଦିଗ୍‌ଦର୍ଶନ ଦେଇ ପ୍ରେରଣା ପ୍ରଦାନ କରୁଛି । ଫଳତଃ ଛାତ୍ରଛାତ୍ରୀମାନେ ସର୍ଜନଶୀଳ ହୋଇ ଅଗ୍ରସର ହେବାକୁ ଶ୍ରେୟ ମଣିଛନ୍ତି ।

ଏଠାରେ ଯୋଗଦାନ ପର ଠାରୁ ଅଧ୍ୟୟନ ଓ ଅଧ୍ୟାପନାକୁ ସଖା ସହୋଦର ଭାବେ ବରଣ କରିବା ସହ ଗବେଷଣାକୁ ତପସ୍ୟା ଭାବେ ଗ୍ରହଣ କରିଛି । ମନୀଷା, ଅନ୍ତର୍ଦୃଷ୍ଟି ଓ ଅନୁସନ୍ଧାନ ଦ୍ୱାରା ଗବେଷକ ସିଦ୍ଧି ଲଭିବା ପଥରେ ହିଁ ଅଗ୍ରସର ହୋଇପାରେ । ଏଣୁ ଗବେଷକ ମାତ୍ରେ ଗବେଷଣା ପ୍ରତି ମନୋନିବେଶ କଲେ ସିଦ୍ଧି ପ୍ରାପ୍ତି ଅନିବାର୍ଯ୍ୟ । ଏ ସମସ୍ତ କାରକକୁ ଧ୍ୟାନ ଦେଇ ଗବେଷଣାରତ ତରୁଣ ତରୁଣୀମାନଙ୍କୁ ଆଗେଇ ଯିବାକୁ କହି ବସେ । ଗବେଷକମାନଙ୍କର ବିଷୟ ଅବବୋଧ ତ୍ରୁଟି ଓ ଉପାଦାନ ସଂଯୋଜନା ବିଲକ୍ଷଣ ଲକ୍ଷିତ ହେଲେ ସେମାନଙ୍କୁ ସହାୟତା କରେ ।

ଶେଷରେ ମୁଁ ବିଭାଗର ସମୁଜ୍ଜ୍ୱଳ ଭବିଷ୍ୟତର ସ୍ୱପ୍ନ ଦେଖି ସେହି ଉଦ୍ଦେଶ୍ୟରେ କର୍ତ୍ତବ୍ୟ ସମ୍ପାଦନ କରୁଛି । ଏ ବିଶ୍ୱବିଦ୍ୟାଳୟ ଯଦି ଏକ ବିଦ୍ୟାମନ୍ଦିର ହୁଏ, ଆମ ଓଡ଼ିଆ ବିଭାଗ ସେ ମନ୍ଦିରର ମୁଖଶାଳା ସଦୃଶ । ମୁଖଶାଳା ଯେତେ ସୁଶୋଭିତ ହୋଇପାରିବ, ବିଶ୍ୱବିଦ୍ୟାଳୟର ଶାସ୍ତ୍ରୀୟ ଭୁଙ୍ଗିମା ସେତିକି ଉଜ୍ଜ୍ୱଳ ହୋଇ ଉଠିବ । ମୁଖଶାଳାର ସେହି ସୁଶୋଭିତ ସ୍ୱପ୍ନ ଆମକୁ ଆଗାମୀ ଦିନମାନଙ୍କ ପାଇଁ ଚିର ସ୍ମରଣୀୟ ରଖୁ, ଏହା ହିଁ କାମନା ।

●

*ଅଧ୍ୟାପକ, ଓଡ଼ିଆ ବିଭାଗ*

*ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ*

# ମେଘାଚ୍ଛନ୍ନ ସ୍ମୃତି ମୁକୁଳିତ

ଡ. ମାଳବିକା ରାୟ

ପଚାଶ ବର୍ଷ ତଳର ସ୍ମୃତି ! ସହସା ବିସ୍ମୃତିର ବନ୍ଧ ସବୁ ଭାଙ୍ଗିଗଲା ବେଳେ ସେଦିନର କଥା ସବୁ ବନ୍ୟା ପରି ଏକାଥରେ ପ୍ଲାବିତ କରିଦେଲା । ରୌଦ୍ରୋଜ୍ଜ୍ୱଳ ପରିଚ୍ଛନ୍ନ ନୀଳାକାଶ ତଳେ ଝଟକି ଉଠିଲା ସର୍ବପ୍ରଥମେ ଓଡ଼ିଆ ବିଭାଗର ସୁରମ୍ୟ ନବନିର୍ମିତ କୋଠା । ଆମ କ୍ଲାସ୍ ରୁମ୍, ସେମିନାର କକ୍ଷ, ଅଧ୍ୟାପକମାନଙ୍କ ପ୍ରକୋଷ୍ଠ, ଲାଇବ୍ରେରୀ, ଲମ୍ବା କରିଡ଼ର, ପ୍ରଶସ୍ତ ବାଲକୋନି, ସବୁ ରାଜରାସ୍ତା ଦିଗରେ ଉନ୍ମୁକ୍ତ; ଯେଉଁଠି ଅଧିକାଂଶ ସମୟରେ ଭରାଦେଇ ଯାନବାହନ ଚଳାଚଳ ଓ ଚଳମାନ ଜନସ୍ରୋତକୁ ଲକ୍ଷ୍ୟ କରିଥାଉ । ଖୋଲା ଝର୍କା ଦେଇ ପ୍ରବେଶ କରୁଥାଏ ପ୍ରଚୁର ଆଲୋକ ଓ ପବନ । ମେଲା ଆକାଶ । ଖୋଲା ଛାତ । ଦଶ ଜଣ ପୁଅ । ଚାରି ଜଣ ଝିଅ । ଭାସିଆସୁଛି କଳକାକଳୀ । କାହାର ପଣତରୁ ଚେନାଏ, କାହାର ଆଖିର ଚାହାଣି, ମୃଦୁ ପଦପାତ, ଏକତ୍ର କଳରବ, କଳକାକଳୀ । କାହାର ଦୁଷ୍ଟାମୀ, କାହାର ଲାଜଲାଜ ମଧୁର ମୃଦୁ ହସ ବାକ୍ ବିତଣ୍ଡା ହୋହଲ୍ଲା । ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଓଡ଼ିଆ ସାହିତ୍ୟ ବିଭାଗର ପ୍ରଥମ ବ୍ୟାଚ । ସମୂହ ଗୋଷ୍ଠୀ, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର, ତରୁଣ ତରୁଣୀ ପୁଞ୍ଜ ଫୁଲବନେ ପ୍ରଜାପତି ରଙ୍ଗରେଣୁ । ମୃଦୁଳା ରାୟ, ଲିଲି ତ୍ରିପାଠୀ, ସ୍ୱରାଜ୍ୟଲକ୍ଷ୍ମୀ ବକ୍ସି ଓ ମତେ ମିଶାଇ ଚାରିଜଣ ଛାତ୍ରୀ । କୈଳାସ ତ୍ରିପାଠୀ ନହନହକା ହାଲ୍‌କା ପତଳା ଶରୀର । ହସଟି ମଧୁର । ଅନ୍ତରଙ୍ଗ ଓ ମୁହଁକୁ ବେଶ୍ ମାନେ । ଖୁବ୍ ମେଳାପୀ ସ୍ନେହୀ । ସବୁ କାମକୁ ଆଗଭର । ଶରତ ବିଷୋୟୀ ସୁଗୋଲ ସୁଢ଼ଳ ଡ଼ଉଲଡ଼ାଉଲ ନଧର କଳେବର । ମୃଦୁକଥା ଅଳ୍ପହସ ମୃଦୁସ୍ୱର । ନରମ ବ୍ୟବହାର । ସପ୍ରତିଭ । ସଚେତନ । ସଲ୍ଲଜ, ଭଦ୍ର, କୌତୁକିଆ ପରିହାସ ପ୍ରିୟ ରାମନାରାୟଣ ସାହୁ । ଟି.ସତ୍ୟନାରାୟଣ ଆଚାରୀ ଚଟୁଳ, ହୃଷ୍ଟପୁଷ୍ଟ ଚଗଲା ଚଗଲା ଭାବକୁ ସଂଯତ ରଖିବାର ପ୍ରଚେଷ୍ଟା, ପରିହାସ ପରିପୂର୍ଣ୍ଣ ହସ ସଦାବେଳେ । ଜଗନ୍ନାଥ ଗମ୍ଭୀର, ଗମ୍ଭୀର କିନ୍ତୁ ମେଳାପୀ । ଟିକେ ବିଳମ୍ବରେ ବାଲେଶ୍ୱରରୁ ପଧାରିଲେ ଅନନ୍ୟ ବିପିନ ବିହାରୀ ବିଶ୍ୱାଳ । ସୌଜନ୍ୟପୂର୍ଣ୍ଣ ସନ୍ତର୍ପଣ ଆଚାର ବ୍ୟବହାର । ପରିଧାନ ଧୋବ ଫରଫର ଧୋତି ପଞ୍ଜାବୀ, କାନ୍ଧରେ ଚାଦର, ଗହଳ କୁଞ୍ଚିତ ତୈଳାକ୍ତ ସଯତ୍ନ ବର୍ଦ୍ଧିତ ଏବଂ ବିନ୍ୟସ୍ତ ଘନକୃଷ୍ଣ କେଶରାଶି । ବହଳ ନିଶ । ଗୋରା ତକତକ । କି ଖରା କି ବର୍ଷା, ଶୀତ କି ହେମନ୍ତ, ହାତରେ ସଦା ଶୋଭାବନ୍ତ ବଙ୍କୁଲି ବାଡ଼ିଟିଏ ଭଳି କଳାରଙ୍ଗର ଛତାଟିଏ ।

ଡାହାଣ ହାତରେ ଧୋତି କୁଞ୍ଚିକୁ ସମ୍ଭାଳି ସମ୍ଭାଳି, ବାମ ହସ୍ତରେ କାନ୍ଧ ଉପରର ସୁଦୃଶ୍ୟ ଚାଦରକୁ ସଜାଇ ସଜାଇ ଏବଂ ଛତାଟି ଧରି ଶ୍ରେଣୀଗୃହରେ ପ୍ରବେଶ ମାତ୍ରକେ ଆସୁ ଆସୁ ବଡ଼ପାଟିରେ କହିଉଠିଲା ବୁଢ଼ା ଭାଇ (ଶ୍ରୀନିବାସ ମହାନ୍ତି) 'କବିବର ରାଧାନାଥ ରାୟ' । ତା'ପରେ ସ୍ୱଭାବ ସୁଲଭ ଦୁଷ୍ଟବୁଦ୍ଧିରେ ଚିତ୍କାର କରି କହିଚାଲିଲା ମତେ ଦେଖାଇ "ଏଇ ଗେହ୍ଲୀ ନାଁ ଦେଇଛି ରାଧାନାଥ ରାୟ ।" ଗେହ୍ଲୀ ପ୍ରସଙ୍ଗ ବାରାନ୍ତରେ । ଉଚ୍ଚାରିତ ହୋଇଥିବ ନାଁଟି ବୁଢ଼ାଭାଇ ପାଖରୁ.....ମୁଁ ମଧ୍ୟ ଅସ୍ପଷ୍ଟ ଉଚ୍ଚାରଣ କରିପାରିଥାଏ...ମନେ ନାହିଁ । କାରଣ ଏକା ସାଙ୍ଗରେ ଅନେକଙ୍କର ସହମତି ଥିଲା 'ରାଧାନାଥ ରାୟ' ନାମକରଣ ସହ । ଲକ୍ଷ୍ମୀନାରାୟଣ ସାମନ୍ତରାୟ ମିଶି ମଧ୍ୟ ମିଶିବା ପରି ମନେ ହେଉ ନଥିଲେ । ସ୍ୱତନ୍ତ୍ରତା ଜାରି ରଖିବା ପରି ମନେ ହେଉଥିଲେ । ଉପେନ୍ଦ୍ର ଥିଲେ କୁହାଳିଆ....ପ୍ରଗଲ୍‌ଭ । ବାଳକ ସୁଲଭ । ଜଣେ କଟକିଆ ସେଠାରେ ତା'ର ପ୍ରଚୁର ପ୍ରାଣସ୍ପର୍ଶତାରେ ଉଚ୍ଛୁଳା ବାତାବରଣ ସୃଷ୍ଟି କରିପାରୁଥିଲା । ସ୍ଥିର ହୋଇ ଗୋଟିଏ ଜାଗାରେ ବସି ରହିବା ପିଲା ନୁହେଁ । ତୀକ୍ଷ୍ଣ ଧାରୁଆ ଆଖି, ନାକ, ମୁହଁ ଓ ଖଣ୍ଡାଧାର ପରି ମାର୍ଜିତ ଶରୀର । ନାଟ୍ୟ କଳାକାର । ଅଭିନେତା, ନିର୍ଦ୍ଦେଶକ, ନିୟମିତ ମଞ୍ଚ ଅଭିନେତା ହୋଇ ମଧ୍ୟ କୌଣସି ନୀତିଗତ କାରଣରୁ ଓହରି ଆସି ଓଡ଼ିଆ ଏମ୍.ଏ ଶ୍ରେଣୀରେ ଯୋଗ ଦେଇଥିଲେ । ଆପେ ଆପଣାଙ୍କୁ ସମସ୍ତଙ୍କ ଠାରୁ ସିନିଅର୍ ଘୋଷଣା କରି ଘୋଷିତ ଓ ଅଘୋଷିତ ବୁଢ଼ାଭାଇ ହୋଇ ବସିଗଲେ । 'ବୁଢ଼ା' ତାର ଡାକ ନାମ । ଅନ୍ୟ ସମସ୍ତେ ଗଣା ହେବୁ ଶାନ୍ତ, ସୁଧାର, ବିଚରା 'ଗୋମାତା' ଶ୍ରେଣୀର । ଏକା ବୁଢ଼ାଭାଇ ହିଁ ଥିଲା ବ୍ୟତିକ୍ରମ । ଅତ୍ୟନ୍ତ ସୁଧାର, ଭଦ୍ର, ସ୍ନେହୀ, ପରୋପକାରୀ ହେବା ସତ୍ତ୍ୱେ ତା'ର ପ୍ରାଣଚଞ୍ଚଳତା, ହ୍ୟୁମର, ସୁନ୍ଦର ମଧୁର ନିଷ୍କମ୍ପ ହସ, ନିର୍ମଳ ଆପଣାର ପଣ, ସ୍ୱଚ୍ଛନ୍ଦ, ସରସ, ସରଳ କୃତ୍ରିମତାଶୂନ୍ୟ ଖୋଲାପଣରେ ସେ ଥିଲା କ୍ଲାସର ଅକ୍ସିଜେନ୍ । ନିକୁଞ୍ଜ ଛୋଟରାୟ ସମସ୍ତଙ୍କର ପ୍ରିୟ । ନାୟକ ନାୟକ ହାବଭାବ ଅଭିମାନ ରାଗରୁଷା ଟିକେ ଅଧିକ । ମୋଟ ଉପରେ ଏ ଚଉଦଜଣିଆ ଓଡ଼ିଆ ସାହିତ୍ୟ ବିଭାଗରେ ବିଭିନ୍ନ କ୍ଷେତ୍ର, ପ୍ରକୃତି ଓ ପ୍ରବୃତ୍ତି ମଧ୍ୟରୁ ଆସି ଏକଜୁଟ ହୋଇଥିଲେ ମଧ୍ୟ; ଏକ ଅଦ୍ଭୁତ ସରଳ ପ୍ରାଣ ଓ ସହଜ ଭାବ ସଭିଙ୍କ ଭିତରେ ସୌମ୍ୟ ସଖ୍ୟ, ସୌହାର୍ଦ୍ଦ୍ୟ, ସୌଜନ୍ୟ ଓ ଭାବପ୍ରବଣତାର ଏକତା ସୂତ୍ରରେ ବାନ୍ଧି ଦେଇଥିଲା । ଅଧ୍ୟାପକଗଣ ଥିଲେ ବିଦ୍ୱାନ, ପଣ୍ଡିତ, ପ୍ରାଜ୍ଞ, ଅତ୍ୟନ୍ତ ଛାତ୍ରବତ୍ସଳ, ସମ୍ବେଦନଶୀଳ ।

ସାମାନ୍ୟ ବିଳମ୍ବରେ ବିଭାଗ ମୁଖ୍ୟ ଭାବେ ଯୋଗଦେଲେ ଋଷିପ୍ରତିମ ଡ.କୁଞ୍ଜବିହାରୀ ତ୍ରିପାଠୀ । ପ୍ରାତଃ ସ୍ମରଣୀୟ । ବିଲାତ ଫେରନ୍ତା ଜ୍ଞାନତପସ୍ୱୀ । ସୁଟ୍ ଟାଇ

ପରିହିତ ସାହେବୀ ପୋଷାକ ତଳେ ଭାରତୀୟ ଋଷି ପରମ୍ପରାର ଅନନ୍ୟ ଉଦ୍‌ଗାତା । ବହୁ ଭାଷାରେ ପଣ୍ଡିତ, ଭାଷାବିଜ୍ଞାନ ଓ ଧ୍ୱନିବିଜ୍ଞାନର ଆଚାର୍ଯ୍ୟ, ଶିଖର ପୁରୁଷ । ପାଲି ଧମ୍ମପଦ, କୁମାର ସମ୍ଭବମ୍, ଶିଳାଲିପି, ଶିଳାଲେଖ ପାଠ, ଭାଷାବିଜ୍ଞାନ ଓ ଧ୍ୱନିବିଜ୍ଞାନ ଥିଲା ଆମର ପାଠ୍ୟକ୍ରମ । ସେଇ ପ୍ରଥମ ମୋର ଅନୁଭବ ହୋଇଥିଲା ଯେ, ଜଣେ ଶ୍ରେଣୀ ଶିକ୍ଷକ ମଧ ଦୀକ୍ଷାଗୁରୁ, ମନ୍ତ୍ରଦାତା, ଜ୍ଞାନଗୁରୁ ଓ ଜୀବନର ମାର୍ଗଦର୍ଶକ ହୋଇପାରନ୍ତି । ଧବଳକାନ୍ତି ସନ୍ଥ ପୁରୁଷ ଜଣେ । ଅକ୍ରୋଧୀ, ଅମାନୀ, ଶୁଭ୍ରତା ଓ ଶୁଚିତାର ଅମଳ ବିଗ୍ରହ । ଜହ୍ନରାତିରେ ମଲ୍ଲୀଫୁଲର ହସ ପରି ହସ । ଶୁଭ୍ର ଦନ୍ତପଙ୍‌କ୍ତି, ଶୁଭ୍ରହସ, ଶ୍ୱେତକେଶ ଓ ଶ୍ୱେତଶ୍ମଶ୍ରୁ । ଶିଶୁର ହସ । ଈଶ୍ୱରଙ୍କ ହସ ପରି ହସ । ଏ ଜ୍ଞାନ ତପସ୍ୱୀ, ପ୍ରଜ୍ଞାଗୁରୁ ପ୍ରଥମ କ୍ଲାସରୁ ମତେ ଭେଦିଗଲେ ।

ପ୍ରତିଟି ପାଠ୍ୟ ବିଷୟ ସୁଧା ଧାରା । ସାର୍‌ଙ୍କର ସହଜପଢ଼ା ଥିଲା ଅବିଶ୍ୱାସ୍ୟ । ଜୀବନର ସାରାତ୍‌ସାର ଉପଲବ୍‌ଧି ସବୁ ଅକୃପଣ ଭାବେ ବିତରଣ କରିଯାଉଥିଲେ । ସାର୍‌ଙ୍କ ନିଜ ଜୀବନର ବିଦ୍ୟା, ଶିକ୍ଷା, ଜ୍ଞାନ, ଉପଲବ୍‌ଧି, ଦର୍ଶନ, ଚିନ୍ତନ ଓ ଜୀବନଚର୍ଯ୍ୟା ସବୁକିଛି ମିଳିମିଶି ଏକାକାର । ତାହା ହିଁ ଥିଲା ଚମତ୍‌କାର । ସାର୍‌ଙ୍କ ସ୍ପନ୍ଦନର ତରଙ୍ଗ ଥିଲା ବିଦ୍ୟୁତ୍‌ବାହୀ । ତୃଷିତ; ଜଳାଧାରର ସନ୍ଧାନ ପାଇଗଲା ପରି ମୋର ସବୁ ଶୋଷ, ସବୁ ପ୍ରଶ୍ନ ସେହିଠାରେ ହିଁ ପ୍ରଶମିତ ହେଉଥିଲା । 'ଧମ୍ମପଦ'ର ଯମକ ବଗ୍‌ଗ ଆଦି ପାଠ୍ୟ ସମସ୍ତ ଜୀବନବେଦ ହୋଇଉଠିଲେ । "ଆଜୀବନ ବୁଡ଼ି ରହିଥିଲେ ମଧ ସୂପର ସ୍ୱାଦ ଚଟୁ ପାଏନାହିଁ ।" 'ଭାରବାହୀ' ବଳିବର୍ଦ୍ଧ ଜାଣେ ନାହିଁ ପିଠିରେ ବୋଝ ବୋହୁଥିବା ଆଖୁରସର ମିଷ୍ଟତା ।" ଗାୟତ୍ରୀ ମଧ ଶିଖାଇବା, ଉଚ୍ଚାରଣ, 'ଅଉମ୍' 'Aum'ର ଶରୀର ଭେଦରେ ଉଦ୍‌ଗମ ଓ ମୁଖଗହ୍ୱରର ବିଭିନ୍ନ ସ୍ଥାନରେ ତା'ର 'ଧ୍ୱନି' ନିୟନ୍ତତାର ଭେଦ । ମାନବ ମସ୍ତିଷ୍କରେ ତା'ର ପ୍ରଭାବ ସଂଚାର ଓ କ୍ରିୟା ଓ ପ୍ରତିକ୍ରିୟା... ସବୁକିଛି ଅମୃତ ଭଳି ପିଇଯାଉଥିଲି । ବାଳୁତବୁଦ୍ଧି ଛାଡ଼ ଏଡ଼େ ଅବୋଧ ମୁଁ କେଜାଣି କାହିଁକି ଧର୍ମପୁସ୍ତକ ଆଧ୍ୟାତ୍ମିକ ପୁସ୍ତକ ସବୁ ମତେ ପିଲାଦିନୁ ଆକୃଷ୍ଟ କରୁଥିଲେ । ରାମକୃଷ୍ଣ ପରମହଂସ ଓ ବିବେକାନନ୍ଦଙ୍କ ପରେ (ବିବେକାନନ୍ଦ ମୋର ସର୍ବସମୟର ହିରୋ, ନାୟକ) ସଦ୍ୟସଦ୍ୟ ହାତରେ ପଡ଼ିଥିଲା ମୋର ସ୍ୱାମୀ ଶିବାନନ୍ଦଙ୍କ ଲିଖିତ ପୁସ୍ତକ- ଇଂରାଜୀରେ 'Divine life' । ଦୁଇ ବର୍ଷ ତଳୁ ଦିନରାତି ସେ ବହି ମୋର ସହଚର ଥିଲା । କିଛି ଅଂଶ ଯାର ଅଧାପଢ଼ା ରହିଯାଉଥିଲେ ...କ୍ଲାସକୁ ନେଇ ଯାଉଥିଲି ଶେଷ କରିବା ପାଇଁ । ଏମିତି ନିଶା ଥିଲା ସେସବୁ ମୋ ପାଇଁ । ଅବଶ୍ୟ ଅନ୍ୟ କେହି ନୁହେଁ, ନିକୁଞ୍ଜ ଦି'ଆଖିରେ ସହ୍ୟ କରିପାରୁନଥିଲା ସେ ପୁସ୍ତକସବୁ । ମୋର ବିରକ୍ତିର କାରଣ ଥିଲା ଏସବୁ । କିନ୍ତୁ କି

ମୂର୍ଖ....ମୁଁ 'ଗୁରୁଦିବସ' ସେପ୍ଟେମ୍ବର ୫ ତାରିଖ ରେ ସାର୍‌ଙ୍କୁ ଉପହାର ଦେଇଥିଲି, ସେ ବହି । ସାର୍ ମଧ୍ୟ ଏ ନିର୍ବୋଧ ବାଳିକାକୁ କୌଣସିମତେ ଅପ୍ରତିଭ ହେବାକୁ ନଦେଇ ଆଶ୍ଚର୍ଯ୍ୟ ଚକିତ ହୋଇ ବହିଟି ଏମୁଣ୍ଡରୁ ସେମୁଣ୍ଡ ଖେଳାଇ ବହୁତ ଆନନ୍ଦ ଅନୁଭବ କରି କହିଲେ – "ଆଚ୍ଛା......ଏ ବହି ସବୁ ତୁମେ ପଢୁଛ ? ବଡ଼ ମଧୁର ଥିଲା ସାର୍‌ଙ୍କର ସାମାନ୍ୟ କୋମଳ ଅନୁନାସିକମୟ ସ୍ୱର । ମୁଁ ପୁରା ଆତ୍ମହରା ! ! ହଁ ସାର୍ ! ମୁଁ ଅଭ୍ୟାସ ବି କରୁଛି । "ଆଚ୍ଛା....ତା'ପରେ ମଲ୍ଲୀଫୁଲର ହସ ।" ଶିଶୁ ପରି ....ଈଶ୍ୱରଙ୍କ ହସ ପରି ହସ । "ନିଜ ହାତରେ ତୁମ ନାଁଟା ଲେଖି ମତେ ଏ ବହିଟି ଦିଅ ।" ଓହୋ...ବହିର ପ୍ରଥମ ପୃଷ୍ଠାରେ ସାର୍‌ଙ୍କୁ ଅର୍ପଣ କରିବାର ଔଦ୍ଧତ୍ୟ କରିନଥିଲି ଅନ୍ତତଃ ସେତିକି ସୁବୁଦ୍ଧି କେମିତି ଆସିଥିଲା କେଜାଣି ! ସାର୍- ମୋର ଗୋପନ ବୃତ୍ତିଟିକୁ ସମ୍ମୁଖକୁ ଆଣି ଧନ୍ୟ କରିଥିଲେ । ପାର୍ବତୀଙ୍କ ଅଗ୍ନିତପସ୍ୟା, "ଅପର୍ଣ୍ଣା ହେବାର କଠୋର ବ୍ରତ, 'ଉମା'ନାମର ଉଦ୍‌ବୋଧନ ଚିତ୍ରପତ୍ରିମା ହୋଇ ଉଠୁଥିଲେ । ଛଦ୍ମବେଶୀ ବୃଦ୍ଧ ମହାଦେବଙ୍କର ଆପଣା ସ୍ୱରୂପ ଉଦ୍‌ଘାଟନ ଅନ୍ତେ, ଏକପାଦ ଶୂନ୍ୟାରୋହୀ, ଆରେକ ପାଦ ଭୂମି ସଂଲଗ୍ନ ପାର୍ବତୀଙ୍କର 'ନ ଯଯୌ ନ ତସ୍ଥୌ' ଅବସ୍ଥା ଏବେ ବି ସେ କ୍ଲାସ୍‌ରୁମ୍‌ରେ ଉତ୍‌କୀର୍ଣ୍ଣ ଏବଂ ମୁଁ ସାମ୍ନାବେଞ୍ଚର ମଧ୍ୟଭାଗରେ ଏବେ ବି ବସିରହି ତାହାକୁ ଦେଖିପାରୁଛି ।

ଏହି ଅବସରରେ ଏକ କୌତୁକପ୍ରଦ ଲଘୁରସର ଅବତାରଣା ଅପ୍ରାସଙ୍ଗିକ ମନେହେବ ନାହିଁ ଭାବୁଛି । କ୍ଲାସ୍‌ରେ ପ୍ରଥମ ସାମ୍ନା ବେଞ୍ଚ ମଝିରେ ବସୁଥିଲି ପ୍ରାୟ । କିନ୍ତୁ ତ୍ରିପାଠୀ ସାର୍‌ଙ୍କ କ୍ଲାସରେ ଏ ନିୟମର ଉଲ୍ଲଙ୍ଘନ କେବେ ହୁଏ ନାହିଁ । ସାର୍ ମଧ୍ୟ ମୋ ମନୋଯୋଗିତାରେ ସ୍ୱାଭାବିକ ଭାବେ ଉତ୍ସାହିତ ହୋଇ ଏକ ଲୟରେ ପଢ଼ାଇଚାଲନ୍ତି । ଏଥିରେ ଆମ ସାଥୀ ଭାଇମାନେ ଯେତେ ନୁହେଁ, ବୁଢ଼ା ଭାଇ ଭୀଷଣ କ୍ଷୁବ୍ଧ ହେବାର ଏକ ମିଛିମିଛିକା ଗୋଳ ସୃଷ୍ଟି କରିବାର ପ୍ରହସନ ସୃଷ୍ଟିକରେ । ତାର ଅଭିନେତା ସୁଲଭ ଢଙ୍ଗଢ଼ଙ୍ଗରେ ମଧୁର ସରସ ବାତାବରଣଟିଏ ସୃଷ୍ଟିକରେ ଏକ ବ୍ୟାଜ ପ୍ରତିବାଦରେ । ଦିନେ ହଠାତ୍ ଜୋର କରି ମତେ ନେଇ ତା'ସ୍ଥାନରେ ବସାଇଦେଲା ସବା ପଛ ବେଞ୍ଚରେ (ସେ ବହୁତ ଡେଙ୍ଗା ଥିଲା) ଏବଂ ମୋ ସ୍ଥାନଟି ସ୍ୱୟଂ ଅଧିକାର କରିନେଲା । ତ୍ରିପାଠୀ ସାର୍‌ଙ୍କ ଦୃଶ୍ୟ ଅନ୍ତରାଳକୁ ଚାଲିଗଲି । ସାର୍ ଓ ମୋ ମଧ୍ୟରେ ଡେଙ୍ଗାଡେଙ୍ଗା ପୁଅମାନଙ୍କ ଘେରା ପ୍ରାଚୀର । ମୃଦୁଳା, ସ୍ୱରାଜ୍ୟ, ଲିଲି ନିରାପଦରେ ଏକପାଖିଆ ହୋଇ ସବୁକାଳେ ବସନ୍ତି । ମତେ ହୁକୁମ୍, "ସାର୍‌ଙ୍କ ଗେହ୍ଲାଝିଅ 'ଗେହ୍ଲୀ', ଆଜିଠୁ ତୋ'ସ୍ଥାନ ଏଇଠି । ତୋର ଚିରାଚରିତ ସ୍ଥାନ ମୋ ଦ୍ୱାରା ଅଧିକୃତ ।" ସାର୍ ପ୍ରବେଶ କଲେ । ଉପସ୍ଥାନ ନେଲାବେଳେ ସାମ୍ନାରେ ପାହାଡ଼ ଶ୍ରେଣୀକୁ ଭେଟିଲେ ଏବଂ ମିଁ ମିଁ ସ୍ୱରରେ ମୋର

ଉପସ୍ଥିତି ଘୋଷଣାକୁ ଟିକେ ଟିକେ ଏପାଖ ସେପାଖ ଉଣ୍ଡି ପରଖିନେଲେ । ମୁଖମଣ୍ଡଳରେ ଏକ ନିର୍ମଳ ଆଭା ଉକୁଟି ଉଠିଲା । ଦିବ୍ୟପ୍ରଭା । ବିଚ୍ଛୁରିତ ଚନ୍ଦ୍ରକିରଣର ହସ ଖେଳାଇ ଖେଳାଇ କ୍ଲାସ୍‌ଟି ସାରିଲେ । ଅଭ୍ୟାସଗତ ଭାବେ ସାର୍ ଯେତେଥର ଝୁଙ୍କି ପଛ ବେଞ୍ଚକୁ ଲକ୍ଷ୍ୟ କରିବାକୁ ଚେଷ୍ଟା କରୁଥାନ୍ତି; ସାର୍ ଯେଉଁଦିଗକୁ ଢ଼ଳନ୍ତି ବୁଢ଼ାଭାଇ ସେହି ଦିଗକୁ ଢ଼ଳି ଅନ୍ତରାୟ ସୃଷ୍ଟି କରୁଥାଏ । ଏମିତି ସାରା ପିରିୟଡ୍ ଚାଲିଲା । ଅତିକଷ୍ଟରେ ଭାଇ ଭଉଣୀମାନେ ମୋର ହାସ୍ୟ ସମ୍ବରଣ କରିବାର ଚେଷ୍ଟାକରି ଶେଷ ପର୍ଯ୍ୟନ୍ତ ସଫଳ ହୋଇପାରିଥିଲେ । ଏକ ନିରୀହ ମେଷ ଶାବକ ବଳି ପଡ଼ିବାର କାତର ବଦନ ନେଇ ମୁଁ ବସି ରହିଥାଏ । ଶେଷରେ ଚନ୍ଦ୍ରପ୍ରଭାର ରଜତଶୁଭ୍ର ହସ ବିଚ୍ଛୁରିତ କରି ସାର୍ ପ୍ରସ୍ଥାନ କଲେ । ବିନା କୌଣସି ପ୍ରଶ୍ନ ବା ମନ୍ତବ୍ୟରେ । ପର କ୍ଲାସରେ ଛଦ୍ମ ଗାମ୍ଭୀର୍ଯ୍ୟ ସହକାରେ ବୁଢ଼ାଭାଇ ସ୍ୱସ୍ଥାନକୁ ଫେରି ଯାଇ ମତେ ପୁନର୍ମୂଷିକ ହେବାକୁ ଛାଡ଼ିଦେଲା । ଏଇଭଳି ମଧୁର ଆମୋଦ ଆମ କେତେ ଜଣଙ୍କର ଅନ୍ତରଙ୍ଗ ନିର୍ମଳ ସମ୍ପର୍କର ସ୍ମାରକୀ ।

ତ୍ରିପାଠୀ ସାର୍‌ଙ୍କ କେତୋଟି ଉପଦେଶ ଏ ପର୍ଯ୍ୟନ୍ତ ମୋ ଭିତରେ ଅନୁରଣିତ ହୋଇଚାଲିଛି । କିଛି ରଖିପାରିଛି କିଛି ରଖିପାରିନାହିଁ । ଘଟଣାଟି ଏହିପରି – କଟକର ମୌସୁମୀ କଲ୍‌ଚରାଲ ଆସୋସିଏସନ୍ 'ଓଡ଼ିଶାର ସର୍ବଗୁଣସମ୍ପନ୍ନା' ପୁରସ୍କାର ଓ ସମ୍ମାନ ଘୋଷଣା କରି ପତ୍ରଦ୍ୱାରା ମୋତେ ଏକ ନିର୍ଦ୍ଦିଷ୍ଟ ଦିନ ସଭାରେ ଉପସ୍ଥିତ ରହିବାର ଅନୁରୋଧ ଜଣାଇଥିଲେ । ସ୍ୱାକ୍ଷର ଥିଲା ସଭାପତିଙ୍କ ସ୍ଥାନରେ ଡ. ହରେକୃଷ୍ଣ ମହତାବଙ୍କର ଏବଂ ସଂପାଦକଙ୍କ ସ୍ଥାନରେ ତତ୍‌କାଳୀନ ପ୍ରଜାତନ୍ତ୍ର ସମ୍ପାଦକ ଶ୍ରୀ ଶ୍ରୀହର୍ଷ ମିଶ୍ରଙ୍କର । ପୂର୍ବବର୍ଷ ମୋ ଜୀବନର ପ୍ରଥମ ପୁରସ୍କାର ବିଷୁବ ମିଳନରେ 'ପ୍ରଜାତନ୍ତ୍ର ପୁରସ୍କାର' ଗଳ୍ପ ପାଇଁ ମତେ ମିଳିଥିଲା । ପ୍ରଥମ ସ୍ୱୀକୃତି ମୋ ରଚନାର । କିନ୍ତୁ ଏ ପତ୍ର ପାଇ ଅଳ୍ପ ବୟସର ମୋର ଅବୋଧପଣ ବା ନିର୍ବୋଧତା ଯାହା ହେଉ ନା କାହିଁକି; ହତଚକିତ ମୁଁ "ଏ ସମ୍ମାନର ମୁଁ ଯୋଗ୍ୟା ନୁହେଁ ଏବଂ ଆପଣମାନେ ଯୋଗ୍ୟତମାର ସନ୍ଧାନ କରନ୍ତୁ" ଜଣାଇ ତତ୍‌କ୍ଷଣାତ ଫେରନ୍ତା ଡ଼ାକରେ ପ୍ରତ୍ୟୁତ୍ତର ପଠାଇ ଦେଇଥିଲି । ତୁରନ୍ତ ପତ୍ରର ଉତ୍ତର ଆସିଲା "ଆମର ଅନୁସନ୍ଧାନ ଶେଷ ହୋଇଛି । ତୁମ ମନୋନୀତ ନାମଟି ଯଦି ପଠାଇପାର; ଯାହାର ଅନ୍ତତଃ ନଅ/ଦଶଟି ବିଭାଗରେ ପ୍ରତିଭାର ପୂର୍ଣ୍ଣ ପ୍ରଦର୍ଶନ ହୋଇପାରିଛି; ତାହା ଆମ ଦ୍ୱାରା ମଧ୍ୟ ଗୃହୀତ ହେବ ।" ପ୍ରଥମ ପତ୍ରଟିରେ କୃତିତ୍ୱର ଦଶଟି ବିଭାଗର ନାମୋଲ୍ଲେଖ ସହିତ ମତେ ଏ ସମ୍ମାନ ମିଳୁଛି ବୋଲି ଉଲ୍ଲେଖ ଥିଲା । ମୋର ବିହ୍ୱଳ ଅବସ୍ଥା କଟିବା ଆଗରୁ ହିଁ ସିଧାସଳଖ ବିଭାଗ ମୁଖ୍ୟଙ୍କ ନିକଟକୁ ସଭାପତି ଓ ସମ୍ପାଦକଙ୍କ ସ୍ୱାକ୍ଷରରେ, ବିସ୍ତାରିତ ବିବରଣୀ ଜଣାଇ ପତ୍ର ଆସିଥିଲା ଯେ – "ମାଳବିକାକୁ ବୁଝାନ୍ତୁ ।

ପିଲାଲୋକ ସେ । ଆକସ୍ମିକ ଭାବରେ ତା'ର ଏଭଳି ନିଷ୍ପତ୍ତିରେ ନିର୍ଦ୍ଧାରିତ ସଭା କାର୍ଯ୍ୟକ୍ରମର ତାରିଖ ଆମକୁ ଘୁଞ୍ଚାଇବାକୁ ପଡ଼ିଛି । ପରବର୍ତ୍ତୀ ଅମୁକ ତାରିଖରେ ତା'ର ଉପସ୍ଥିତି ନିଶ୍ଚୟ ରହିବ । ଏହା ଆପଣଙ୍କ ଠାରୁ ଆଶା କରାଯାଏ ।"

ସାର୍ ରୁମ୍‌କୁ ଡ଼ାକି ତାଙ୍କ ସ୍ୱଭାବ ସୁଲଭ କୋମଳ ମଧୁର ମୃଦୁ ଅନୁନାସିକ ସ୍ୱରରେ ମତେ ଯେପରି ବୁଝାଇଲେ, ଆଜି ଭାଷା ମୋର... କିନ୍ତୁ 'ଭାବ' ସାର୍‌ଙ୍କର ।

"ସମ୍ମାନ ଖୋଜି ଖୋଜି ଆସେ ମାଳବିକା, ଖୋଜିଲେ ସେ ମିଳେନାହିଁ । ଛୋଟ ବଡ଼ ଯେ କୌଣସି ସ୍ୱୀକୃତିକୁ ମଥାପାତି ନେବା ଶ୍ରେୟସ୍କର । ତୁମେ ନିଜେ ନିଜର ବିଚାରକ ନୁହେଁ । ଗୁରୁତ୍ୱପୂର୍ଣ୍ଣ ସିଦ୍ଧାନ୍ତର ଅବମାନନା କରି ଅଜାଣତରେ ତୁମ ଦ୍ୱାରା ଗୁରୁଜନମାନଙ୍କର ଅବମାନନା ହୋଇଯାଇଛି । ନିଜକୁ ଅକିଞ୍ଚିତ୍‌କର ମନେକରିବା ମଧ୍ୟ ଏକ ଅପରାଧ । ଏକଥା ମନେରଖିବ ।" ଏକଥା ମନେ ରହିଛି- ଏଇତ ...ତା'ର ପ୍ରମାଣ । କିଛି ପାଳନ କରିବାରେ ଅନେକ ଶିଥିଳତା ତଥାପି ରହିଛି ।

ସାର୍ ପୁଣି କହୁଥିଲେ ପ୍ରତିଭା ପ୍ରଦର୍ଶନର କୌଣସି ସୁଯୋଗକୁ ହାତଛଡ଼ା କରିବ ନାହିଁ, ତା'ର ସଦୁପଯୋଗ କରିବ । ସେଥିରେ ମଧ୍ୟ ମୁଁ ଉତ୍ତୀର୍ଣ୍ଣ ହୋଇପାରି ନାହିଁ । ତେବେ ସେଦିନ ସାର୍‌ଙ୍କ ପାଇଁ କଟକ ନାରୀସେବା ସଦନରେ ସେ ଉତ୍ସବରେ ବିଶିଷ୍ଟ ବୈଜ୍ଞାନିକ ଡ.ପ୍ରାଣକୃଷ୍ଣ ପରିଜାଙ୍କ ହସ୍ତରୁ ନତମସ୍ତକ ହୋଇ ଗ୍ରହଣ କରିବାର ଫଟୋଟି, ସାର୍‌ଙ୍କ ଆଶୀର୍ବାଦକୁ ହିଁ ସୂଚାଇ ଦିଏ । ଏକଥା ସତ, ବାଳୁତପଣରେ ତାହାର ମର୍ମ ବା ଗୁରୁତ୍ୱ କିଛି ଅନୁଭବ କରିନଥିଲି । ପୁଲକ, ଆନନ୍ଦ ବି ସେମିତି କିଛି ନଥିଲା । ସାର୍‌ଙ୍କ ନିର୍ଦ୍ଦେଶାନୁସାରେ ସେ ଉପହାରର ସନ୍ତକଟିକ ସାର୍‌ଙ୍କ ପାଇଁ ଆଣିଥିଲି ଦେଖାଇବାକୁ । ଦେଖେ ତ- ଇତିମଧ୍ୟରେ ସମସ୍ତ ଓଡ଼ିଆ ଓ ଇଂରାଜୀ ସମ୍ବାଦପତ୍ରମାନଙ୍କରେ ପ୍ରକାଶିତ ସେଦିନ ଉତ୍ସବର ଫଟୋ ଓ ପୂର୍ଣ୍ଣ ବିବରଣୀ ସଂଗ୍ରହ କରି ସାର୍ ଏକ ସ୍ୱତନ୍ତ୍ର ଫାଇଲ୍ ପ୍ରସ୍ତୁତ କରିଛନ୍ତି; ଏହି ଉଦ୍ଦେଶ୍ୟରେ ଯେ, ଏହା ପରେ ବିଭାଗର ସମସ୍ତ ଛାତ୍ରଛାତ୍ରୀମାନଙ୍କର ସମସ୍ତ କୃତିତ୍ୱର ନିଦର୍ଶନ ଓ ବିବରଣୀ ଏଥିରେ ପଞ୍ଜିକୃତ ହେବ ।

ଷଷ୍ଠ ବର୍ଷ ଶେଷ ପରୀକ୍ଷା ନିକଟତର । ଏହି ସମୟରେ ବିଶ୍ୱବିଦ୍ୟାଳୟ-ନାଟ୍ୟ ସଂସଦର ବାର୍ଷିକୋତ୍ସବର ନାଟକରେ ମୁଖ୍ୟ ନାୟିକା ଭୂମିକାରେ ଅବତୀର୍ଣ୍ଣ ହେବା ମୋ ପକ୍ଷେ ଅସମ୍ଭବ । ମୋର ଅସମ୍ମତି ସମ୍ପୃକ୍ତ ଅଧିକାରୀଙ୍କୁ ଜଣାଇଦେଲି । ସାର୍ ମଧ୍ୟ ମୋତେ ଏଥିରେ ସମର୍ଥନ ଜଣାଇଥିଲେ । କିନ୍ତୁ ହଠାତ୍ କୁଳପତି ଶ୍ରୀ ରଘୁନାଥ ପ୍ରସାଦ ପାଢ଼ୀ, ଜଣେ ଅତ୍ୟନ୍ତ ସଜ୍ଜନ ଉତ୍ତମ ପ୍ରଶାସକ ଓ ଛାତ୍ରବତ୍ସଳ; ସାର୍‌ଙ୍କୁ ଅନୁରୋଧ କଲେ, ମତେ ରାଜି କରାଇବା ପାଇଁ । ସାର୍ ମଧ୍ୟ ହଠାତ୍ ନିଷ୍ପତ୍ତି ନେଲେ ମତେ ଜୀବନର ଆଉ ଏକ

ବାସ୍ତବିକ ଦିଗ ପ୍ରତି ଦୃଷ୍ଟି ଆକର୍ଷଣ କରିବା ପାଇଁ । "ଏଭଳି ଅଭାବିତ ଘଟଣା ଏକ ସଙ୍ଗେ ତୁଲେଇବାକୁ ଜୀବନରେ ବାରମ୍ବାର ସାମ୍ନା କରିବାକୁ ପଡ଼ିବ । ଜୀବନର ଦାବି ଅସୁମାରୀ । ଅନେକ କର୍ତ୍ତବ୍ୟ ରହିଥାଏ । ଏକାସାଙ୍ଗରେ ତୁଲାଇବାକୁ ପଡ଼ିଥାଏ । ଛାତ୍ରଜୀବନ ପରି ଜୀବନ ସଳଖ ସୁନ୍ଦର ନୁହେଁ । ଆଜି ଠାରୁ ଆହ୍ୱାନର ସମ୍ମୁଖୀନ ହୋଇ ତୁମ ଜୀବନ ଯୁଦ୍ଧ ଆରମ୍ଭ ହେଉ । କେତୋଟି ନମ୍ବର ପରୀକ୍ଷାର ଜୀବନର ମୂଲ୍ୟାୟନ ନୁହେଁ । ବିରୋଧାଭାସ ଭିତରେ ଜୀବନକୁ କିପରି ମୂଲ୍ୟ ଦେଇପାରିଛ, ତାହା ହିଁ ଜୀବନ ।"

ତାହା ହିଁ ହେଲା । ମନୋରଞ୍ଜନ ଦାସଙ୍କର ନାଟକ 'ଅରଣ୍ୟଫସଲ' ମଞ୍ଚସ୍ଥ ହେଲା । ଏବେ ବି ସେ ଗ୍ରୁପ୍ ଫଟୋ ସତେଜ ରହିଛି । ସେଥିରେ ମଧ ପ୍ରଥମ ପୁରସ୍କାର ମତେ ମିଳିଲା । ଶ୍ରୀନିବାସ ମହାନ୍ତି (ବୁଢ଼ାଭାଇ) ଥିଲା ଏହାର ନିର୍ଦ୍ଦେଶକ । ଏଥିରେ ମଧ ମୁଁ ନିର୍ଲିପ୍ତ ଥିଲି । ମୋ ଭିତରେ ସଦାସର୍ବଦା ଏକ ଅଦ୍ଭୁତ ନିଶ୍ଚଳ ଅଚଞ୍ଚଳତା ମତେ କେଉଁଥିରେ ଅଭିଭୂତ ହେବାକୁ ଦେଇନାହିଁ । କିନ୍ତୁ ଖୁସି ଲାଗୁଥିଲା ଦେଖି –ସାର୍‌ଙ୍କ ଖୁସି, କୁଳପତିଙ୍କ ଆଶ୍ୱସ୍ତି, ସାଙ୍ଗସାଥୀ ଦର୍ଶକମାନଙ୍କର ଭାବାବେଗ ଏବଂ ସାର୍‌ଙ୍କ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇପାରିଥିଲି, ସେଥିପାଇଁ । ସେଦିନ ସାର୍‌ଙ୍କର ଜୀବନବେଦ ମୋର ବୋଧଗମ୍ୟ ନଥିଲା । କିନ୍ତୁ ଏବେ ! ପଳେ ପଳେ ତିଳେ ତିଳେ ସେ ବାଣୀ ସହିତ ମୋର ଅନ୍ତରଙ୍ଗ ପରିଚୟ । ଜୀବନ ଜୀଇଁବାର ଘନିଷ୍ଠ ନିବିଡ଼ତା ।

ବିଶ୍ୱବିଦ୍ୟାଳୟ ବାର୍ଷିକ କ୍ରୀଡ଼ା ଉତ୍ସବ । ଝିଅମାନଙ୍କର ଗ୍ରୁପ୍‌ରେ ପ୍ରତିଯୋଗିତା ପାଇଁ ଆମନ୍ତ୍ରଣ । ଏନ୍.ସି.ସି. ସ୍ୱାଧୀନତା ଦିବସ ଓ ଗଣତନ୍ତ୍ର ଦିବସମାନଙ୍କରେ ଦିଲ୍ଲୀ ପର୍ଯ୍ୟନ୍ତ ବର୍ଷ ବର୍ଷ ଧରି ଅଂଶଗ୍ରହଣ କରାହୋଇଛି, ଶୃଙ୍ଗ ଆରୋହଣ, ବନ୍ଧୁକ ଚାଳନା ପାଇଁ ସିଲ୍‌ଡ ମଧ ଲାଭ ହୋଇଛି । କିନ୍ତୁ ଡିଆଁଡେଇଁ, ଦୌଡ଼ାକୁଦ, ଶହେ ଦୁଇଶହ ମିଟର ବାଧା ଦୌଡ଼ ! ବଲ୍ଲମ, ବର୍ଚ୍ଛା ଫୋପାଡ଼ିବା, ଲୁହା ଚକ୍ରଟି ଫିଙ୍ଗିବା, ଲମ୍ବଡ଼ିଆଁ, ଉଚ୍ଚଡ଼ିଆଁ ଏସବୁ ସ୍କୁଲରେ ଖେଳ ପିରିୟଡରେ ଥିଲା ବାଧ୍ୟତାମୂଳକ । ଏସବୁ ତ ରୁଚି ସମ୍ମତ ସଙ୍ଗୀ ହୋଇନାହାନ୍ତି । ନୃତ୍ୟ, ଗୀତ, ଅଭିନୟ ଲେଖାଲେଖି ପରେ ସମୟ ହିଁ ଥିଲା କାହିଁ ? ତେଣୁ ମିଶିବାର ହିଁ ନଥିଲା ଏଥିରେ ! ପୁଣି....ସେଇ ସାର୍‌ଙ୍କୁ ଆସି କାହିଁକି ସମସ୍ତେ ଧରନ୍ତି ଯେ ! ଅଗତ୍ୟା ଦିନେ ନାହିଁ କାଳେ ନାହିଁ ସିଧା କ୍ଲାସ୍‌ରୁ ବାହାରି ପ୍ରଥମ ଦିନ Hits, ପରଦିନ ଫାଇନାଲ୍‌ରେ ଯୋଗଦାନ ସେଇ ଶାଢ଼ୀପିନ୍ଧା ଅବସ୍ଥାରେ । Athletic Costume ବେଶ, Canvas Shoe ବାସ୍ । କେତେଜଣ ବା ଝିଅ ପିଲା ବାହାରିଥିବେ ସେଇ ଅଳ୍ପସଂଖ୍ୟକଙ୍କ ଭିତରୁ; ଅତି ବେଶିରେ କୋଡ଼ିଏ ଜଣ ! ଆରେ...ଦେଖୁ ଦେଖୁ କେଉଁ ବିଭାଗରେ ପ୍ରଥମ, ତ କେଉଁଥିରେ ଦ୍ୱିତୀୟ ଅବା ତୃତୀୟ । ଥରକୁ ଥର ବିଜୟ

ମଞ୍ଚ Victory Stand ର ବିଭିନ୍ନ ପାବଛରେ ଅବସ୍ଥାନ ଆରୋହଣ ଅବତରଣ ପ୍ରକ୍ରିୟାରେ ଦିନ ଶେଷରେ ସବୁ ନମ୍ବର ମିଶାଇ ଯିଏ ହେଲେ ବିଜୟିନୀ Champion ବୀରାରମଣୀ; ସିଏ ଏଇ ଅଧମା ଅନିଚ୍ଛୁକ ପ୍ରତିଯୋଗିନୀ ! ହସିବି ନା କାନ୍ଦିବି ? ସନ୍ଧ୍ୟାପରେ କୁଣ୍ଡ ଭର୍ତ୍ତି କପ୍, ସିଲଡ୍, ଚାମ୍ପିୟନ ଟ୍ରଫି ଧରି ପହଞ୍ଚିଲା ପରେ ମାମା (ମା') ହସି ହସି ଗଡ଼ିଗଲେ । ବାପା ବି ପରେ ଟିକେ ମୃଦୁ ହସିଲେ । ଭାଇଭଉଣୀ ଘେରିଯାଇ ବହେ ନାଚିଗଲେ ।

ଆକସ୍ମିକ, ଅନାହୂତ, ଅକଳ୍ପନୀୟ, ଅଭାବିତ ଏ ଘଟଣା ସବୁ କ୍ଷଣିକ ନିଷ୍ପତ୍ତିରେ ସଂଘଟିତ ହୋଇଥିଲା । ନାଁ...ଥିଲା ଏଥିରେ ପୂର୍ବ ପରିକଳ୍ପନା, ଯୋଜନା, ଆୟୋଜନ ବା ବାସନା କି ଆକାଂକ୍ଷା । ସେଥିପାଇଁ ବୋଧହୁଏ ପଚାଶ ବର୍ଷର ଉଜ୍ଜ୍ୱଳ ଅତୀତ ଭିତରୁ ସେମାନେ ବିସ୍ମୃତିର ଅନ୍ଧକାର ଗର୍ଭକୁ ଚାଲିଯାଇଥିଲେ । ଚେତନ ମନରେ ଏମାନଙ୍କର କୌଣସି ଆଲୋଡ଼ନ ନଥିଲା । ନିରୀହ, ନିର୍ମଳ ଭାବପୂର୍ଣ୍ଣ ଦୁଇବର୍ଷର ସ୍ମୃତି ରୋମନ୍ଥନ କାଳରେ ଧୀରେ ଧୀରେ ଧୀର ପାଣି ଭିତରୁ ସବୁ ଚହଟି ଉଠିଲେ । ଅତଳ ଭିତରୁ ଶୁଭିଲା ଉଦ୍‌ବେଳ ସ୍ୱର 'ଆମେ ଏଠି', 'ମୁଁ ଏଠି' । ଆମକୁ ଚିହ୍ନ । ସ୍ୱୀକୃତି ଦିଅ । ଆଲୋକକୁ ନିଅ । ଅଲିଭା ଆମେ । ଲିଭିଯାଇଥିବା ମୁଁ । ତୁମ ସହିତ ଅଭିନ୍ନ ଅଙ୍ଗାଙ୍ଗୀ ଜଡ଼ିତ । ଆମେ ହିଁ ତୁମେ । ସାଙ୍ଗରେ ନିଅ । ସାଉଁଟି ନିଅ । "ଆମେ".... "ତୁମେ" ।

ଶ୍ରୀ ନାରାୟଣ ଶତପଥୀ ସାର୍ ପଢ଼ାଉଥିଲେ ନାଟକ 'ଭାତ' ଓ କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ । ନାଟ୍ୟକଳାରେ ଗଭୀର ରୁଚି ଥିଲା ସାରଙ୍କର । ନାଟକ ଓ କବିତା ରଚନା ସହିତ ରଙ୍ଗମଞ୍ଚ ଓ ସିନେମାର କଳାକାର ମଧ୍ୟ ସେ ଥିଲେ । ଗଞ୍ଜାମ କଳା ପରିଷଦ ସହିତ ଥିଲା ତାଙ୍କର ଘନିଷ୍ଠ ସମ୍ପର୍କ । ସାରଙ୍କର ଏକ ନାଟକରେ ମୋର ଏକ ଲିରିକ୍ ମଧ୍ୟ ସ୍ଥାନିତ ହୋଇଥବାର ମନେପଡୁଛି । କ୍ଲାସ୍‌ରେ ସାର୍ ଏକ ଜୀବନ୍ତ ନାଟକ । ଚରିତ୍ରମାନେ ଆତଯାତ ହୁଅନ୍ତି । ସବୁକିଛି ଅଭିନୀତ, ବାସ୍ତବ, ରୂପାୟିତ । ଦୀର୍ଘଦେହୀ, ଶାଣିତ ଚେହେରା, ଉଦାସ ମୂର୍ତ୍ତି, ଆଖିରେ ଅତିକ୍ରାନ୍ତ କୃଷ୍ଣହ୍ରଦର ନିବିଡ଼ ବିଷାଦ । ଅଥଚ କଣ୍ଠସ୍ୱରରେ ନାଟକୀୟ ସଂଳାପର ପ୍ରତିଟି ଉଚ୍ଚାରଣ ଭାବଦୀପ୍ତ ଉଚ୍ଚାଙ୍ଗ । 'ଚମ୍ପୂ' କାବ୍ୟକୁ ଯେ ଜଣେ ଜୀବନ୍ତରାସରେ ପରିଣତ କରିପାରେ, ସାର୍ ତା'ର ଉଜ୍ଜ୍ୱଳ ଦୃଷ୍ଟାନ୍ତ । ଏବେ ବି କାନରେ ବାଜୁଛି ସେ ସ୍ୱର, ସେ 'ପଦ'; ଦୃଶ୍ୟହେଉଛି ସେ ଭାବଭଙ୍ଗୀ, ଅନନୁଭୂତ ସେ ଆବେଗଦୀପ୍ତ ଅବୟବର ମୂର୍ତ୍ତିମାନ ଅଭିନୟ । "ଗଲାଣିତ ଗଲା କଥାରେ ସଙ୍ଗାତ, ଗଲାଣି ତ ଗଲା କଥା । ଗୁପତେ ସିନା ମୁଁ ତତେ ପଚାରିଲି ବଳି ପଡ଼ିବାରୁ ବ୍ୟଥା !" ପୁଣି "ଖେଳା ଲୋଳା ଖଞ୍ଜନାକ୍ଷୀ କି ସାହସ କଲୁରେ !" ଏବେ ଏତକ ଖାଲି କହ "ଥିବି କି ଛାଡ଼ିବି ପ୍ରାଣ ।" "ଝଗଡ଼ି ମାତ୍ରକ ହେଲ ହେ ଶ୍ୟାମ" । ଶେଷରେ ଯାହା ଇଚ୍ଛା ତୋର

ତାହା କର ।" ଶତପଥୀ ସାର୍ ଥିଲେ ନିଜେ ହିଁ ଏକ ଜୀବନ୍ତ ଦୃଶ୍ୟକାବ୍ୟ ଓ ଶ୍ରବ୍ୟକାବ୍ୟ । ମୋର ଅଧ୍ୟାପନା ଜୀବନକୁ ସାର୍‌ମାନଙ୍କର ସମସ୍ତ ଅବଦାନ ଯେ ଚେତନରୁ ଅବଚେତନ ପର୍ଯ୍ୟନ୍ତ ପରିବ୍ୟାପ୍ତ, ଏହା କହିବା ବାହୁଲ୍ୟ ଏବଂ 'ଚମ୍ପୂ' କାବ୍ୟ ମଧ୍ୟ ମୋର ଅଧ୍ୟାପନା ପରିସରମଧ୍ୟକୁ ସିଧାସଳଖ ପ୍ରବେଶ କରିଥିବାରୁ, ସାର୍‌ଙ୍କର ମୂର୍ତ୍ତ ଅସ୍ତିତ୍ୱକୁ କେବେହେଁ ଭୁଲିପାରିନାହିଁ ।

ଶ୍ରୀ ସୁଦର୍ଶନ ସାର୍ । ଯଥାର୍ଥରେ ସୁଦର୍ଶନ । ଦୀର୍ଘ, ସୁଠାମ, ସୌମ୍ୟ, ସ୍ନେହସ୍ନିଗ୍ଧ ଗଭୀର ପ୍ରକୃତି ଓ ବ୍ୟବହାର । ତରୁଣ ଶ୍ୟାମଳ ଶାଳତରୁ । ସବୁଠାରୁ ଈର୍ଷଣୀୟ ଥିଲା ସାର୍‌ଙ୍କର ଗହଳ କୁଞ୍ଚିତ କେଶରାଶି । ଗଦ୍ୟ ସାହିତ୍ୟର ଇତିହାସ । ସମଗ୍ର ଓଡ଼ିଆ ସାହିତ୍ୟର ଇତିହାସ, ସଂସ୍କୃତିର କ୍ରମପରିଣାମ ଭଳି କଠିନ ପ୍ରାୟ ରସହୀନ ବିଷୟ ସବୁକୁ ପାଣି ପରି ସରଳ ଅଥଚ ସରସ କରି ଉପସ୍ଥାପନ କରୁଥିଲେ । ଭାବ ଭଙ୍ଗୀ ସହଜ, ମନୋରମ । ସମଗ୍ର ଓଡ଼ିଆ ସାହିତ୍ୟର ଇତିହାସ ତାଙ୍କର ଜିହ୍ୱାଗ୍ରେ ନୃତ୍ୟ କରୁଥିଲା । ଅତି ରମଣୀୟ ରସମୟ ଥିଲା ସେ କ୍ଲାସ । ପ୍ରାଚୀନ ସାହିତ୍ୟ, ଭଞ୍ଜ ସାହିତ୍ୟ କିଛି ବାଦ୍ ଯାଉନଥିଲା । ପ୍ରାଞ୍ଜଳ ଓ ପରିଚ୍ଛନ୍ନ ବାକ୍ୟାଂଶ ଥିଲା ସାର୍‌ଙ୍କର ବୈଶିଷ୍ଟ୍ୟ ।

ଶ୍ରୀ ସୀତାରାମ ମହାପାତ୍ର ସାର୍....ଛାତ୍ରବତ୍ସଳ ଦରଦୀ ସରଳ ମଣିଷ ଜଣେ । ରସାପ୍ଲୁତ ହୃଦୟରେ 'ରସକଲ୍ଲୋଳ'ର ପାଠ ସହିତ ମିଶିଯାଉଥିଲେ । ସବୁଠାରୁ ବଡ଼କଥା ସାର୍‌ମାନଙ୍କ ପାଖରେ ଜଣେ ଅକୁତୋଭୟ ଓ ସହଜ ହୋଇପାରେ । ସାର୍‌ମାନଙ୍କ ଦିଗ୍‌ଦର୍ଶନ ଓ ପ୍ରେରଣାରେ ସେମିନାର୍ ଗଢ଼ି ଉଠିଲା । ପ୍ରବନ୍ଧ ପ୍ରସ୍ତୁତି ଶିକ୍ଷା ଲାଭ ହୋଇପାରିଲା । ତା'ସହିତ ଆନନ୍ଦର ପରଶ ପାଇଁ ଆରମ୍ଭ ଓ ସମାପ୍ତିରେ ଏକକ ବା ଦଳଗତ ସଙ୍ଗୀତ ଗାନ ଏବଂ ପ୍ରବନ୍ଧ ପ୍ରସ୍ତୁତି କରିଥିବା ଶିଷ୍ୟ / ଶିଷ୍ୟାଙ୍କ ତରଫରୁ ଜଳଯୋଗର ବ୍ୟବସ୍ଥା ମଧ୍ୟ ଥିଲା । ସେମିନାର୍ ଦିନଟି ଉତ୍ସବମୟ ମନେ ହେଉଥିଲା । ସେମିନାର୍ ଦାୟିତ୍ୱକୁ ସୁଚାରୁ ରୂପେ ପରିଚାଳନା କରୁଥିଲେ କୈଳାସ ତ୍ରିପାଠୀ । 'ମନ୍ମୟୀ' ହାତଲେଖା ପତ୍ରିକାର ଯୁଗ୍ମ ସମ୍ପାଦକର ଦାୟିତ୍ୱ ଥିଲା ନିକୁଞ୍ଜ ଛୋଟରାୟ ଓ ମୋ ଉପରେ । ଏକଥା ମଧ୍ୟ ଭୁଲିଗଲେ ଚଳିବ ନାହିଁ ଯେ ସେମିନାର୍ ସନ୍ଦର୍ଭ ସହିତ ବନ୍ଧୁମାନଙ୍କ ସହଯୋଗ ଓ ଉଚ୍ଛ୍ୱାସ ହେତୁ, ମନ୍ଦିରଠୁ ମୁଖଶାଳା ବଳିଯିବା ପରି ...ଜଳଯୋଗର ଆୟୋଜନ ଦିନକୁ ଦିନ ମହାଭୋଜିର ଆକାର ଧାରଣ କରିଥିଲା ଏବଂ ଏଥିରେ କାହାର ଆପତ୍ତି ବା କୁଣ୍ଠା ନଥିଲା ।

ବଣଭୋଜି ପାଇଁ କେତେ ସ୍ଥାନ ନ ବୁଲିଛୁ ! ତପ୍ତପାଣି, ବୁଦ୍ଧଖୋଲ, ଚନ୍ଦ୍ରଗିରି, ତାରାତାରିଣୀ, ଗୋପାଳପୁର ଇତ୍ୟାଦି । ଭୋଜି ଓ ଯାନବାହନ ଆୟୋଜନରେ ଶ୍ରୀନିବାସ

ମହାନ୍ତି (ବୁଢ଼ାଭାଇ), କୈଳାସ ତ୍ରିପାଠୀ କୌଣସି ତ୍ରୁଟି ରଖୁ ନଥିଲେ । ଆମର ସୌଭାଗ୍ୟ ଯେ, କୁଳପତି ଶ୍ରୀ ରଘୁନାଥ ପ୍ରସାଦ ପାଢ଼ୀ ମଧ୍ୟ ଥିଲେ ଅତ୍ୟନ୍ତ ସଦୟ । ଚାହିଁବା ମାତ୍ରେ ସମସ୍ତ ସୁବିଧା ଓ ଆୟୋଜନ ପାଇଁ ତତ୍‌କ୍ଷଣାତ୍ ତତ୍ପରତା ପ୍ରକାଶ କରୁଥିଲେ । ଶିକ୍ଷା ସହ ପରିଭ୍ରମଣ (Study tour) ଅବସରରେ ଡ.ତ୍ରିପାଠୀଙ୍କ ସମେତ ସବୁ ସାର୍ ଓ ଆମେ ସମସ୍ତେ ସପ୍ତାହ ବ୍ୟାପୀ ଭ୍ରମଣର ସୁଯୋଗ ପାଇଥିଲୁ । ଶିଳାଲେଖ, ଲିପିପାଠ ପାଇଁ ଲଳିତଗିରି, ରତ୍ନଗିରି, ଖଣ୍ଡଗିରିର ହାତୀଗୁମ୍ଫା, ରାଣୀଗୁମ୍ଫା, କୋଣାର୍କ, ପୁରୀ ବେଳାଭୂମି, ଜଗନ୍ନାଥ ମନ୍ଦିର ଦର୍ଶନ । କଟକରେ ତ୍ରିପାଠୀ ସାର୍‌ଙ୍କ ଘରେ ଆମେ ଚାରିଜଣ ଝିଅଙ୍କର ରାତ୍ରୀଯାପନ ଅବସରରେ ମ୍ୟାଡ଼ାମ୍ ତ୍ରିପାଠୀଙ୍କର ସରସ ପ୍ରାଣଖୋଲା ଉଦାର ମୁକ୍ତହସ୍ତ ଆତିଥ୍ୟ, ପାନାହାରର ବ୍ୟବସ୍ଥା ବ୍ୟବହାର, ସାର୍‌ଙ୍କ ଝିଅମାନଙ୍କର ଆମର ସୁବିଧା ପାଇଁ ଆୟୋଜନ କିଛି କମ୍ କଥା ନଥିଲା । ବୁଲିବା ସମୟରେ ମୋର ରିଷ୍ଟୱାଚ କେଉଁଠି ଖସିପଡ଼ିବା, ସାଙ୍ଗମାନେ ଟର୍ଚ୍ଚ ଲାଇଟ୍‌ରେ ଖଣ୍ଡଗିରିର ଅନ୍ଦି କନ୍ଦି ଖୋଜିବୁଲିବା, ସୁଦର୍ଶନ ସାର୍‌ଙ୍କ ବିଶ୍ୱାସ.... ପ୍ରଫେସରଙ୍କ ପଇସା ସଚ୍ଚା ପଇସା 'ମାଳବିକା' ବାପା ଦେଇଛନ୍ତି ଘଣ୍ଟା ମାନେ ନିଶ୍ଚୟ ମିଳିବ ।" ନିଶ୍ଚୟ ମିଳିଲା ମଧ୍ୟ । ଏକ କଥାରେ – ଏକ ନବଗଠିତ ବିଶ୍ୱବିଦ୍ୟାଳୟର କୁଳପତିଙ୍କ ଠାରୁ ଆରମ୍ଭ କରି ଅନ୍ୟାନ୍ୟ ସମସ୍ତ ବିଭାଗର ଅଧ୍ୟାପକ, ଛାତ୍ରଛାତ୍ରୀ ଏପରିକି ସହଯୋଗୀ ସହକାରୀ କର୍ମଚାରୀ 'ପାଳ' ପିଅନ ପର୍ଯ୍ୟନ୍ତ ସମସ୍ତଙ୍କ ଭିତରେ ପରସ୍ପର ସ୍ନେହ, ସୌହାର୍ଦ୍ଦ୍ୟ, ସଖ୍ୟ, ମୈତ୍ରୀ, ବିଶ୍ୱାସ ପରସ୍ପର ନିର୍ଭରତା....ଏସବୁ କିପରି ସମ୍ଭବ ହେଉଥିଲା ? ଆଜିର ଶିକ୍ଷାୟତନର ଅବସ୍ଥା ଦେଖିଲେ ମନେହୁଏ....ସେ ଥିଲା ଏକ ବିରଳ ସଂଯୋଗ । ମାହେନ୍ଦ୍ର ବେଳା, ଅମୃତ ଲଗ୍ନ ।

ଆମ ବ୍ୟାଚ୍‌ର ୪୮ ବର୍ଷ ପାଳନ ଅବସରରେ ହଠାତ୍ କାହା ମନରେ କିପରି ଜାଗିଲା ଜଣା ନାହିଁ– ଗତବର୍ଷ ୨୦୧୭ ଫେବୃୟାରୀ ୧୫ ତାରିଖରେ ଭୁବନେଶ୍ୱରର ଜୟଦେବ ବାଟିକା ଉପବନରେ ବନ୍ଧୁ ମିଳନରେ ଆୟୋଜନ ଏକ ଅଭୁତପୂର୍ବ ଆନନ୍ଦମୟ ପରିବେଶ ସୃଷ୍ଟି କରିଥିଲା । ଯାହାର ସ୍ପନ୍ଦନ ପରବର୍ତ୍ତୀ ଦୁଇମାସ ପର୍ଯ୍ୟନ୍ତ ଆମ ସମସ୍ତଙ୍କୁ ଆଛନ୍ନ କରି ରଖିଥିଲା । ନିକୁଞ୍ଜ, କୈଳାସ ଓ ଶରତ ବିଷୋୟୀ ଥିଲେ ଉଦ୍ୟୋକ୍ତା, ଜଣେ ଦି'ଜଣଙ୍କୁ ଛାଡ଼ିଦେଲେ; (ଯେପରିକି, ନିକୁଞ୍ଜ, ସ୍ୱରାଜ୍ୟ ଓ ଥରେ ଅଧେ ଶତପଥୀ ସାର୍‌ଙ୍କୁ ଭୁବନେଶ୍ୱରରେ ପଲକ ମାତ୍ର ଦେଖିବା ଭିନ୍ନ) ଅନ୍ୟ ସଭିଏଁ ପରିସ୍ପରକୁ ଭେଟିଲୁ ଅଠଚାଳିଶି ବର୍ଷ ପରେ । ସେ କି ମହାଲଗ୍ନ – ମହାନନ୍ଦ–ମହାଯୋଗ । 'ମିନି' ପୁସ୍ତିକାଟିଏ ଜନ୍ମ ନେଇଥିଲା.....ବନ୍ଧୁ ମିଳନର 'ସ୍ମାରକୀ'ଟି ମଧ୍ୟ । ଅତି ଚମତ୍କାର । ଭୋଜିର ଆସ୍ୱାଦନ ମଧ୍ୟ । କି କଳ କାକଳୀ, କି କଳରୋଳ, ହସର ଝରଣା, କୋଳାକୋଳି, ଘେନାଘେନିର

ରସମୟ ମାଦକତା ! ! ବିପିନ୍ ବିହାରୀ ଆଉ ଆଗ ପରି ନଥିଲେ ସତର୍କ କି ସନ୍ତର୍ପଣ । ଆଶ୍ଚର୍ଯ୍ୟ ତାଙ୍କର ଦୈହିକ ପରିବର୍ତ୍ତନ ଆଦୌ ହୋଇନାହିଁ । ବରଂ ....ସ୍ୱଭାବରେ ସେ ଶତଦଳ ପରି ପାଖୁଡ଼ା ମେଲାଇ ଫୁଟିଯାଇଛନ୍ତି । ସେ ଏବେ ଅତି ସହଜ, ମୁକ୍ତ, ଅବାଧ ଅନାୟାସ । ପଚାଶ ବର୍ଷ ତଳର ସ୍ୱପ୍ନ ତାଙ୍କର 'ବିନ୍ଦୁ ଓ ବଳୟ', ଅନୁଷ୍ଠାନ ଓ ସାହିତ୍ୟିକ ସ୍ୱପ୍ନ ସବୁ ସଫଳ ହୋଇଛି ।

୨୦୧୭ ମସିହାର ବନ୍ଧୁମିଳନରେ ଯୋଗଦେବାପାଇଁ ଆମ ଗହଣରେ ଡ. କୁଞ୍ଜବିହାରୀ ତ୍ରିପାଠୀ ଓ ଡ. ସୀତାରାମ ମହାପାତ୍ର ସାର୍ ନଥିଲେ । ବ୍ରହ୍ମପୁରରୁ ପୂର୍ବରାତ୍ରିରୁ ଆସି ଯୋଗ ଦେଇଥିଲେ ସୁଦର୍ଶନ ସାର୍ । ଡ. ନାରାୟଣ ଶତପଥୀ ସାର୍ ତ ବହୁକାଳୁ ଭୁବନେଶ୍ୱର ବାସିନ୍ଦା । କଦବା କ୍ୱଚିତ୍ ନାରାୟଣ ସାର୍‌ଙ୍କ ସହିତ ସଭାସମିତିରେ ଭେଟ ହୋଇଯାଏ । ସଭାମଞ୍ଚ ମଧ୍ୟରୁ ଓହ୍ଲାଇ ପ୍ରେକ୍ଷାଳୟ ମଧ୍ୟରୁ ମୁଁ ଧାଇଁଯାଏ ସାର୍‌ଙ୍କୁ ଭେଟିବା ପାଇଁ । ସାର୍ କିନ୍ତୁ ସେତିକି ସମୟ ମଧ୍ୟରେ ଧରି ସାରିଥାନ୍ତି ନିଷ୍କ୍ରାନ୍ତ ପଥ । ପ୍ରାୟ ଗୋଡ଼ାଇ ଗୋଡ଼ାଇ ଭିଡ଼ ଠେଲି ଧାଇଁଯାଇ ସାର୍‌ଙ୍କୁ ପଛରୁ ଧରିପାରେ । ପାଦ ଛୁଇଁ ପ୍ରଣାମ କରି ଉଠି ସାରିବା ପରେ ସାର୍ ନିରେଖି ଦେଖନ୍ତି – "ଏ କିଏ" । ହସ ଖେଳିଯାଏ ମୁହଁସାରା । ଭଲମନ୍ଦ ପଚାରନ୍ତି ।

ସେତେବେଳକୁ ଅନେକ ଦିନୁ ସାର୍ ନିଷ୍ପାପର ସାଧନା କ୍ଷେତ୍ରରେ ହୋଇ ସାରିଥା'ନ୍ତି ଗୃହୀ ସନ୍ନ୍ୟାସୀ । ଖଣ୍ଡିଏ ଧୋତି ମାତ୍ର; ଏବଂ ଉପରାର୍ଦ୍ଧରେ ବେହରଣ ଉତ୍ତରୀୟ ଭିନ୍ନ ଆଉ କିଛି ନଥାଏ । ତା'ରି ଭିତରୁ କିନ୍ତୁ ମୁଁ ଦେଖୁଥାଏ ଓ ଶୁଣିପାରେ କ୍ଲାସରୁମ୍‌ର ସାହେବୀ ପୋଷାକ ପିନ୍ଧା ସାର୍‌ଙ୍କର ସେଇ ଉଦାତ୍ତ କଣ୍ଠସ୍ୱର ।

ସୁଦର୍ଶନ ସାର୍‌ଙ୍କ ସହିତ କିଛି ମୁହାଁମୁହିଁ, ସେଇ ବ୍ରହ୍ମପୁର ଛାଡ଼ିବା ଦିନୁ, ୪୮ ବର୍ଷ ପରେ ଜୟଦେବ ବାଟିକାରେ ! "ସାର୍- ଏ କ'ଣ- ଏମିତି କେମିତି ?" ମୋର ଭୀତ ଆର୍ତ୍ତ ଚିତ୍କାର ! ଏକ ପ୍ରଚଣ୍ଡ ଧକ୍‌କା, ଶକ୍ତ ଝଟ୍‌କା ମୋ ପାଇଁ । ମୋର ଦୃଷ୍ଟି ଅନୁସରଣ କରି ମୁହୂର୍ତ୍ତକେ ସାର୍ ଅନୁମାନ କରିନେଲେ ।

"ସବୁଦିନ କ'ଣ ସବୁକିଛି ରହେ ମାଳବିକା ?" – ପ୍ରସନ୍ନ ଓ ଉଜ୍ଜ୍ୱଳ ଦିଶୁଥିଲା ସାର୍‌ଙ୍କ ମୁଖମଣ୍ଡଳ ।

କଥା କ'ଣ କି ! – ସବୁଠାରୁ ସୁ-ଦର୍ଶନ, ଆକର୍ଷଣୀୟ, ଅତୀବ ଈର୍ଷଣୀୟ ଗହଳ କେଶରାଶିର ଢେଉଢେଉକା ଯେଉଁ ଚିରହରିତ୍ ଅରଣ୍ୟଟି ସାର୍‌ଙ୍କୁ ମୁକୁଟପ୍ରାୟ ଘେରି ରହିଥିଲା- ସେ ସୁନ୍ଦରବନଟି ନିଶ୍ଚିହ୍ନ । ସୁଗୋଲ ଚିକ୍‌କଣ ମଥାଟି ଦେଖି ମୋର ଭୀତ ଆର୍ତ୍ତ ଚିତ୍କାର । ପ୍ରକୃତିସ୍ଥ ହେଲା ପରେ କହିଲି- "ସାର୍, ବ୍ରହ୍ମପୁର ବା ଏଠୁ

କେତେ ଦୂର । କେତେ ଯିବା ଆସିବା କରୁଥିବେ କଟକ, ଭୁବନେଶ୍ୱର । ଅଥଚ ୪୮ ବର୍ଷ ଲାଗିଗଲା ଆପଣଙ୍କୁ ଦେଖିବା ପାଇଁ ?"

ଆହୁରି ଖୋଲାହସରେ ଉଦ୍‌ଭାସିତ ହୋଇଗଲା ସାରା ମୁହଁ ସାର୍‌ଙ୍କର । "ତୁମକୁ ତ ସବୁବେଳେ ଦେଖୁଛୁ । ଟି.ଭି.ରେ, ଖବରକାଗଜର ସ୍ତମ୍ଭରେ, ଫଟୋ, ଭିଡ଼ିଓ ସବୁଥିରେ ।"

ଦୃଷ୍ଟି ନଇଁଗଲା ସାର୍‌ଙ୍କ ପାଦତଳେ ।

ସାର୍ ଅବିକଳ ସେମିତି ଥିଲେ । ସେଇ ପ୍ରାଣୋଚ୍ଛଳତା, ସ୍ପଷ୍ଟ କଥା, ଅକପଟ ଅଭିବ୍ୟକ୍ତି ସହିତ ଚକ୍ଷୁତାରକାର ସେଇ ବାଦାମୀ ରଙ୍ଗର ଝିକ୍‌ମିକ୍ ଦ୍ୟୁତି.. ସେମିତି ଥିଲା.. ବା ତା'ଠାରୁ ଅଧିକ ଖୋଲା.. ଅନାୟାସ ।

ତରୁଛାୟା ଘେରା ସେ ବାଟିକା ଭିତରେ ଅନ୍ତରଙ୍ଗ ଏକ ଛୋଟିଆ ସଭାଟିଏ ବ୍ୟାନର୍ ସହ ଆୟୋଜନ କରିଥିଲେ ନିକୁଞ୍ଜ, ଶରତ, କୈଳାସଆଦି । ସାର୍‌ମାନଙ୍କୁ ସମ୍ବର୍ଦ୍ଧନା, ମାନପତ୍ର ପାଠ; ଆମ୍ଭମାନଙ୍କ କୃତଜ୍ଞତା ଓ ଭକ୍ତି ଅର୍ପଣ ପରେ ମାଇକ୍ ଧରିଲେ ସୁଦର୍ଶନ ସାର୍ ।

ସେ କି ଅନର୍ଗଳ ସ୍ମୃତିର ପ୍ରପାତ.. ସ୍ନେହର ଝରଣା ! ସ୍ମୃତିରୁ ବିସ୍ମୃତିକୁ ଚାଲିଯାଇଥିବା ଗୋଟି ଗୋଟି ଚିତ୍ର ଜୀବନ ପାଇଗଲା ଯେମିତି ! ସେମିନାରରେ ମୋର ପ୍ରବନ୍ଧ ପାଠ ଦିନ ନିୟମ ଅନୁସାରେ ମାମା (ମା') କାଳେ ଏତେ ମାତ୍ରାରେ ପୁରୀ, ତରକାରୀ, ଖିରୀ, କାକରା ପିଠାପଣା ପଠାନ୍ତି ଯେ କ୍ରମେ ସାମାନ୍ୟ ଜଳଯୋଗଟି କମ୍ପିଟିସନ୍ ରୂପରେ ମହାଭୋଜିର ଆକାର ନେଇଥିଲା । ସେଥିରେ କାହାର ବା କ'ଣ ଆପତ୍ତି ଥାଇପାରେ ?

"ମାଳବିକାର ଆଖି"- ଚମକି ଚାହିଁଲି । କହି ଚାଲିଥିଲେ ସାର୍- ଏକଲୟ ଏକସୁରରେ କ୍ଲାସ୍‌ରେ ପଢ଼ାଇବା ପରି ।

"ସବୁଥିରେ, ଖାତାପତ୍ର, ବ୍ଲାକ୍‌ବୋର୍ଡ୍, ଡେସ୍କ, ଏପରିକି ପରୀକ୍ଷା ଖାତା, ମାର୍ଜିନ ଭିତରେ ବି ମାଳବିକାର ହାତଅଙ୍କା ଟଣାଟଣା ରମଣୀୟ ଆଖିର ଚିତ୍ର । ଏବେ ବି ପୁରୁଣା କାଗଜପତ୍ର, ଖାତା ଭିତରେ ସେ ଆଖିର ଚିତ୍ର ସେମିତି ରହିଛି ।

ଲିଲି ପାଳି ଧରିଲା- "ମୋ ପୁରୁଣା ବହିଖାତାର ପୃଷ୍ଠାରେ ପୃଷ୍ଠାରେ ଆଖିର ଚିତ୍ର ।"

ସ୍ୱରାଜ୍ୟ ଲମ୍ବେଇଲା- "ଯଦି କେଉଁଦିନ ମାଳବିକା ପାଖରେ ବସି ଯାଇଥିବି କ୍ଲାସ୍‌ରେ- କିଛି ନ ପାଇଲେ ମୋ ପାପୁଲି ଖୋଲି ହୋଇଯାଇଥିବା କଜ୍ଜଳଲୋଚନା ଲମ୍ବା ଲମ୍ବା ଆଖିର ଚିତ୍ରରେ – ଡଟ୍‌ପେନ୍‌ରେ ଅଙ୍କା ।"

ସ୍ନେହ ପ୍ରେମରେ ମୁଁ ଓଦା ସରସର । ନିରୁତ୍ତର ।

ସତରେ ମୁଁ କାହିଁକି ଏମିତି ଥିଲି ?

ମନେ ପଡ଼ିଗଲା ତାଜା ହୋଇ ସୁଦର୍ଶନ ସାର୍‌ଙ୍କ କଥାରେ... ଆମ ଷ୍ଟଡ଼ିଟୁର୍‌ର କାହାଣୀ ।

ତ୍ରିପାଠୀ ସାର୍‌ଙ୍କ କଟକ ଘରେ ଆମେ, ଝିଅମାନଙ୍କର ରାତ୍ରି ରହଣି- ଦିନସାରା ଶିଳାଲେଖ ଲିପି ଉଦ୍ଧାର । ଅନ୍ୟମାନଙ୍କର ବ୍ୟବସ୍ଥା କେଉଁଠି ଥିଲା ମନେ ନାହିଁ । ଭୋଜନ ବ୍ୟବସ୍ଥା ସମସ୍ତଙ୍କର କିନ୍ତୁ ସାର୍‌ଙ୍କ ଘରେ । ମାଡାମ୍‌ଙ୍କ ହାତପରଷା ଏବଂ ସୁନ୍ଦରୀ ସୁତନୁକା କନ୍ୟାମାନଙ୍କର ଅତିଥି ସତ୍କାର । ସକାଳୁ ସକାଳୁ ବାହାରି ଯାଉଥିଲୁ- କେବେ ଚଣ୍ଡୀଖୋଲ ଦେଇ ରତ୍ନଗିରି, ଲଳିତଗିରି ଆଦି... ପୁଣି କେବେ ଧଉଳିଗିରି ଦେଇ ପୁରୀ... ସମୁଦ୍ରବେଳା- ଜଗନ୍ନାଥ ଦର୍ଶନ । ପୁଣି ଖଣ୍ଡଗିରି, ଉଦୟଗିରି, ହାତୀଗୁମ୍ଫା, ରାଣୀଗୁମ୍ଫା ।

ସକାଳୁ ସକାଳୁ ମାଡ଼ାମ୍ ଆମକୁ ସତର୍କ କରାଇ ଦିଅନ୍ତି- ସାର୍‌ଙ୍କ ପ୍ରତି ସହର୍ଷ କଟାକ୍ଷ କରି ଯେ "ଭରାପେଟ ସମସ୍ତେ ଜଳଖିଆ କରି ଯାଅ । ସାର୍‌ଙ୍କ ସଙ୍ଗେ ବାହାରକୁ ମାନେ ଦିନସାରା ଖାଇବାକୁ ମିଳିବ ନାହିଁ ।"

ହସି ହସି ସୁଦର୍ଶନ ସାର୍ କହି ଚାଲିଥିଲେ- "ସତରେ ସେଦିନ ଦିନସାରା କିଛି ଖାଇବାକୁ ମିଳିନଥିଲା । ସନ୍ଧ୍ୟାରେ ଘରକୁ ଫେରି ସେଇ ମାଡାମ୍‌ଙ୍କ ହାତପରଷା ଭୁରିଭୋଜନ ।"

କଥା କ'ଣ କି- ଋଷିପ୍ରତିମ ସାର୍‌ଙ୍କର ଭୋକଶୋଷ ନଥାଏ । ତେଣୁ ରାସ୍ତାକଡ଼ର ଢାବା , ଭୋଜନାଳୟଗୁଡ଼ିକ ତାଙ୍କ ଆଖିରେ ପଡ଼େନାହିଁ ।

ସାର୍ ଆଦୌ ବଜାର ଜିନିଷ ଛୁଅଁନ୍ତି ନାହିଁ । ତେଣୁ କାହା କାହାକୁ ବି ଯାଚନ୍ତି ନାହିଁ । ଆମ ପେଟରେ କିନ୍ତୁ ଚୁହା ଦୌଡୁଥାଏ । ପୁଅ ସାଙ୍ଗମାନେ ହୋଟେଲ ଦୂରରୁ ଦେଖି- "ହାଁ ହାଁ ଗାଡ଼ି ରଖ, ଗାଡ଼ି ରଖ..." କହୁ କହୁ ଚକ ଯାଇ ଦି'କୋଶ ଦୂରରେ । ପରବର୍ତ୍ତୀ ଭୋଜନାଳୟ ପାଖେଇ ଆସିଲେ ବି ସେଇ ଦଶା- "ରହ ରହ- ରଖ ରଖ" - ଗାଡ଼ି ଆସି କଟକରେ ପହଞ୍ଚେ । ଶୁଖିଲା ମୁହଁ... ଖାଲି ପେଟରେ କି ପାଠ ପଢ଼ିଥାଉ କିଛି ମନେ ନଥାଏ ।

"ମନେ ଅଛି ମାଳବିକା ତୁମ ରିଷ୍ଟ୍‌ୱାଚ୍ ହାତରେ ନାହିଁ ବୋଲି ତୁମେ ଘରକୁ ଫେରି ଦେଖିଥିଲ ।"

"ହଁ ସାର୍- ସାଙ୍ଗମାନେ ବ୍ୟସ୍ତ ବିବ୍ରତ ହୋଇପଡ଼ିଲେ ।" ଏତେ ଜାଗା ବୁଲା ହେଇଛି- କେଉଁଠି ପଡ଼ିଯାଇଛି- କେମିତି ଜାଣିବ ? ଜଣେ କେହି ମନେପକେଇ କହିଲା-

"ଖଣ୍ଡଗିରି ପାହାଚ ଚଢ଼ିଲା ବେଳେ ମାନବିକା ହାତରେ ଘଣ୍ଟା ଥିବାର ଦେଖିଛି ।" ସେଇଟା ତ ଶେଷ ଲକ୍ଷ୍ୟସ୍ଥଳ ଥିଲା- ତେଣୁ ନିକୁଞ୍ଜ, ଶରତ, କୈଳାସ ସହିତ ସମସ୍ତେ ଟର୍ଚ୍ଚ, ପେଟ୍ରୋମାକ୍ସ ଯୋଗାଡ଼ କରି ପାହାଚ ଉପର ଯାଏ ଦଉଡ଼ି ଗଲେ । ଫିକା ଜହ୍ନ ରାତି, କାକର ପଡୁଛି- ପାଦତଳର ମାଟି ଓଦା- ଶେଷରେ ଶିଶିର ଭିଜା ଘାସ ଉପରେ.. ଫିକାଚନ୍ଦ୍ରକୁ ଛାତିରେ ଜାକି ଧରି ଚକ୍‌ଚକ୍ କରି ଶୋଇ ରହିଥିଲା ମୋର କୁନି ଏଚ୍.ଏମ୍.ଟି. ହାତଘଣ୍ଟାଟି । ୧୯୭୦ ମସିହାରେ- ଏକୋଇଶି ବାଇଶି ବର୍ଷ ଝିଅର ଜନ୍ମଦିନରେ ଅଳ୍ପଦିନ ତଳେ ଦେଇଥିବା ବାପାଙ୍କର ସ୍ନେହ ଆଶୀର୍ବାଦର ଉପହାର.. ବହୁତ ବଡ଼କଥା ଥିଲା ।

ପ୍ରଥମରୁ ସୁଦର୍ଶନ ସାର୍ କହିଥିଲେ- "ଅଧ୍ୟାପକର ସଚ୍ଚା ପଇସା ମାଳବିକା, ଘଣ୍ଟା କେବେ ହଜିବନି- ନିଶ୍ଚୟ ମିଳିବ ।" ମିଳିଥିଲା ବି ।

ଅକ୍ଷୟ ସ୍ମୃତିର ଭଣ୍ଡାର ସୁଦର୍ଶନ ସାର୍ । ଉଜ୍ଜ୍ୱଳ, ମେଧାବୀ, ବିଦ୍ୱାନ, ପଣ୍ଡିତ, ଛାତ୍ରବତ୍ସଳ ଅବିସ୍ମରଣୀୟ ସୁଦର୍ଶନ ଆଚାର୍ଯ୍ୟ ସାର୍ ।

ଆମ ଭିତରୁ ତିନି ଜଣ ଗତ ହୋଇଥିଲେ । ଶ୍ରୀନିବାସ, ଜଗନ୍ନାଥ ଓ ଉପେନ୍ଦ୍ର ନାହାକ । ରାମନାରାୟଣ ମୁମୂର୍ଷୁ ପ୍ରାୟ ଶଯ୍ୟାଶାୟୀ ଥିଲେ । ପରେ ନିକୁଞ୍ଜ, ଶରତ, କୈଳାସ ଆଦି ସୁଦର୍ଶନ ସାର୍‌ଙ୍କ ସହିତ ହିଞ୍ଜିଳିକାଟୁ ତାଙ୍କ ଘରେ ପହଞ୍ଚି - ଏ ସମସ୍ତ ସନ୍ତକ ଭେଟି ଦେଇଥିଲେ ।

ସେଭଳି ଅବସ୍ଥାରେ ସାର୍ ଓ ଘନିଷ୍ଠ ବନ୍ଧୁ କେତେଜଣଙ୍କର ସାନ୍ନିଧ୍ୟ କି ଅପାର ଆନନ୍ଦ ଦେଇନଥିବ ତାକୁ ! 'ମିନି ପୁସ୍ତିକା'ଟି ଅର୍ପିତ ହେଲା । 'ସ୍ମୃତିଫଳକ'ଟିକୁ ଗ୍ରହଣ କରିବା ଅବସରରେ ରାମନାରାୟଣ କାଳେ ସେହି ମୁମୂର୍ଷୁ ଅବସ୍ଥାରେ ମଧ୍ୟ ପ୍ରଥମ ମୁହଁ ଖୋଲି ଉଚ୍ଚାରିଥିଲେ 'ମାଳବିକା ଆସିଥିଲା' ? କେମିତି ଦିଶୁଛି ସେ ? କେମିତି ଅଛି ?" ସୁଦର୍ଶନ ସାର୍ କାଳେ ତତ୍‌କ୍ଷଣାତ୍ ଉତ୍ତର ଦେଇଥିଲେ ମୁହୂର୍ତ୍ତେ ବିଳମ୍ବ ନକରି ଯେ- "ମାଳବିକା ଯେମିତି ଥିଲା ସେମିତି ଅଛି, ଅବିକଳ ସେମିତି ଦିଶୁଛି । କିଛି ବଦଳିନି ।" ବହୁତ ଭଲ ଅଛି । "ନିକୁଞ୍ଜ ଠାରୁ ଏ ପ୍ରସଙ୍ଗ ଶୁଣି ଫୋନ୍‌ରେ ମୁଁ ରୁଦ୍ଧବାକ୍ । ଧାର ଧାର ଲୁହ ବହିଗଲା ହୃଦୟ ଫଟାଇ । କିଏ ବେଶୀ କନ୍ଦାଇଲା ମତେ ? ରାମନାରାୟଣ ନା ସୁଦର୍ଶନ ସାର୍ ?" ସହସା ଅଞ୍ଜଳି ଭରା କୃତଜ୍ଞତା ଧୌତ ଉଚ୍ଛ୍ୱାସ ଢ଼ାଳି ହୋଇଗଲା ସୁଦର୍ଶନ ସାର୍‌ଙ୍କ ପାଇଁ । "ସାର୍....ଆମ୍ଭମାନଙ୍କଠୁ ଆପଣମାନେ ବହୁତ ଭଲ । ବ.....ହୁ.....ତ ଭଲ । ଶିଶୁ ଭଳି ଆମକୁ ଛାତିରେ ଜାକି ଧରି ପାଳି ଚାଲିଛନ୍ତି ଏପର୍ଯ୍ୟନ୍ତ ! ଆଜିଯାଏଁ ! ପଚାଶବର୍ଷର ଫରକ ! କିଛି ମାନେ ରଖେ ନାହିଁ ଆପଣଙ୍କ ପାଇଁ ?"

ତା'ର ଅଳ୍ପ କେତେଦିନ ପରେ ରାମନାରାୟଣ ପରଲୋକ ଗମନ କରିଥିଲେ ।

କଟକ ରେଭେନ୍ସାରେ ଅବସ୍ଥାପିତ ଥିବା ଅବସ୍ଥାରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରୁ ଉତ୍ତୀର୍ଣ୍ଣ ଛାତ୍ର ଓ ଉପସ୍ଥିତ ଅଧ୍ୟାପକମାନଙ୍କ ଠାରୁ କେତେଥର ମିଳିଛି ଏ ସମ୍ବାଦ ଯେ, "ସବୁ ସାର୍‌ମାନେ ଆପଣଙ୍କ ବ୍ୟାଚ୍‌ଟିକୁ ବହୁତ ମନେପକାନ୍ତି । ସବୁବେଳେ ଝୁରିହୁଅନ୍ତି । ପ୍ରାୟତଃ ଧ୍ୱନିତ ହୁଏ ଏଇ ସ୍ମୃତିଚାରଣଟି ଯେ "First batch was the golden batch" । ସେ ସୁନାଝରା ଦିନଗୁଡ଼ିକ ସୌରଦୀପ୍ତ ହୋଇ ରହିଛି ଯଦି, ତାହା କେବଳ ଆମ ଗୁରୁକୁଳଙ୍କ ପାଇଁ । ଆମେ ତ ଥିଲୁ ସର୍ବେ ନଗଣ୍ୟ ଅବୋଧ ଶିଶୁ ।

ନିଶୀଥର ଅନ୍ଧକାର ପଟରେ ନକ୍ଷତ୍ର ଓ ଗ୍ରହ ପରି ଅମ୍ଳାନ ଜ୍ୟୋତିରେ ଝଟକୁଛନ୍ତି ଆମ ଗୁରୁକୁଳ । ସେ ଦୁଇବର୍ଷର ନିରୀହ ସ୍ମୃତି, ପଚାଷବର୍ଷ ତଳର, ପ୍ରେମବନ୍ଧା: - ଏକ ପାହାନ୍ତା ପହର । ସ୍ନିଗ୍ଧ ଭୋରବେଳା । ଲିଚୁକୋଳି ଓ ତାଳସଜର ଆକାଶ । ମୃଦୁ ନୀଳ ଆଭା । ବିଶ୍ୱ ଜାଗିଉଠି ନାହିଁ । କଳରୋଳ ନାହିଁ । ନାହିଁ କାକଳି କି କଳରବ । ଏକ ପ୍ରଗାଢ଼ ପ୍ରସାରିତ ପ୍ରଶାନ୍ତ ନିରବତା । କୁଆଁତାରର ଶାନ୍ତ ଦୀପ୍ତ, ଚକ୍ଷୁ, ନିର୍ନିମେଷ । ଅନନ୍ତ ଆଦିଠାରୁ ପରିବ୍ୟାପ୍ତ ଏକ ନୀଳିମ ମହିମା । ଅଖଣ୍ଡ ମଣ୍ଡଳାକାର ।

ଅଖଣ୍ଡ ମଣ୍ଡଳାକାରମ୍ ବ୍ୟାପ୍ତମ୍ ଯେନ ଚରାଚରମ୍<br>
ତତ୍‌ପଦମ୍ ଦର୍ଶିତମ୍ ଯେନ<br>
ତସ୍ମୈଶ୍ରୀ ଗୁରୋବେ ନମଃ ।

•

*ଶିବମ୍, ତୁଳସୀପୁର*<br>
*କଟକ-୮*

# ମୋ' ଶିକ୍ଷାୟତନ, ଶିକ୍ଷକ ଓ ଶିକ୍ଷାକୁ ପ୍ରଣାମ

**ଡ. ସ୍ୱରାଜ୍ୟଲକ୍ଷ୍ମୀ ମିଶ**

୧୯୬୮ରୁ ୨୦୧୮ – ଦୀର୍ଘ ପଚାଶ ବର୍ଷର ପ୍ରଲମ୍ବିତ ଯାତ୍ରା ପଥ । ଭାବିଲେ ଆଖି ପାଏନା । ଏଇ ସମୟଖଣ୍ଡରେ ଯେତେ ସବୁ ସ୍ମୃତି ଅନୁଭୂତି ଅବଚେତନ ଭିତରେ କ୍ରମଶଃ ସମୟ ଓ ସଂସାରର ପଥର ଚାପାରେ ଫସିଲ ହୋଇ ଯିବା ପୂର୍ବରୁ...ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ, ଓଡ଼ିଆ ବିଭାଗର ମୁଖ୍ୟ ଡ. ପ୍ରସନ୍ନ କୁମାର ସ୍ୱାଇଁଙ୍କ ଅଚାନକ ଫୋନ୍‌କଲ୍ ପାଇ ସତରେ ସ୍ତମ୍ଭିତ ହୋଇଗଲି । ସ୍ୱାଭାବିକ ଭାବେ ଜଣେ ଦେହଧାରୀ ପାଇଁ ଏଇ ପଚାଶବର୍ଷର ସମୟ ତ କିଛି କମ୍ ନୁହେଁ ! !

ତଥାପି ମୁଁ ଅଛି ! ଫୋନ୍ ଧରିଲି ।

କିଞ୍ଚିତ ଭୂମିକା ସହ ନିଜ ପରିଚୟ ଦେଇ ସୁଖଦ ସମ୍ବାଦଟି ପରିବେଷଣ କଲେ ଡ. ସ୍ୱାଇଁ– "ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗର ପ୍ରତିଷ୍ଠାର ସୁବର୍ଣ୍ଣ ଜୟନ୍ତୀ ଏବର୍ଷ ପାଳନ ହେଉଛି । ସେଇ କ୍ରମରେ ଓଡ଼ିଆ ବିଭାଗରୁ ପ୍ରକାଶିତ ହେବାକୁ ଥିବା ସୁବର୍ଣ୍ଣ ଜୟନ୍ତୀ ମୁଖପତ୍ର ପାଇଁ ଆପଣଙ୍କଠାରୁ ଲେଖାଟିଏ ଆଶା କରୁଛି ଆମ ଓଡ଼ିଆ ବିଭାଗ । ଏଇ ବିଭାଗର ପ୍ରଥମ ବ୍ୟାଚ୍‌ର ଛାତ୍ରୀ ଆପଣ । ଅନେକ ସ୍ନେହ ଶ୍ରଦ୍ଧା ଆଉ ଆଗ୍ରହ ନେଇ ଏଇ ବିଭାଗକୁ ଧୋଇପୋଛି, ଝାଡ଼ିଝୁଡ଼ି, ସଜାଡ଼ି ଗଢ଼ିଛନ୍ତି ଆପଣମାନେ । କେତେ ଅଭାବ ଅସୁବିଧାର ସମ୍ମୁଖୀନ ବି ସେଦିନ ହୋଇଥିବେ ହୁଏତ ! ସେଇ ସ୍ମୃତି ଅନୁଭୂତିରୁ ପୃଷ୍ଠାଏ ଆମ ସଙ୍ଗେ ସେୟାର୍ କଲେ ମୁଖପତ୍ରଟି ପୂର୍ଣ୍ଣାଙ୍ଗ ରୂପ ନେବ...ଏଇ ଉଦ୍ଦେଶ୍ୟରେ ଆପଣଙ୍କୁ ଖୋଜିଲି...ଯାହାହେଲେ ବି ବିଭାଗର ପ୍ରଥମ ସନ୍ତାନର ଗୌରବ ତ ଆପଣମାନଙ୍କର ପ୍ରାପ୍ୟ ।"

ପୁଲକିତ ହେବା କଥା । କିନ୍ତୁ ମୋ ଭିତରେ ଛୋଟ ଆଲୋଡ଼ନଟିଏ ସୃଷ୍ଟି ହେଲା ଅଭିମାନର । ଡକ୍ଟର ସ୍ୱାଇଁଙ୍କର ବାର୍ତ୍ତାଳାପର ଅନ୍ତରଙ୍ଗପଣ ମୋର ସେହି ଅଭିମାନକୁ ମୁହୂର୍ତ୍ତକରେ ପୋଛି ଲିଭେଇଦେଲା ବି । ଅଭିମାନ ଏଇଥି ପାଇଁ ଯେ, ବିଗତ ପଚାଶ ବର୍ଷ ଭିତରେ ଥରେ ବି ଆମ ଓଡ଼ିଆ ବିଭାଗ ଆମ କାହାକୁ ମନେ ପକାଇ ପାରିନି...ଅଥଚ....

ତଥାପି ଖୁସି ଲାଗିଲା, ଅନ୍ତତଃ ଡକ୍ଟର୍ ସ୍ୱାଇଁ ତ ଖୋଜିଛନ୍ତି, ସେତିକି ଯଥେଷ୍ଟ । ତାଙ୍କ ଇଚ୍ଛାକୁ ସମ୍ମାନ ଦେଲି । କେତେ ସ୍ମୃତି ଅନୁଭୂତିର ସଚକିତ ମଗ୍ନ ମୁହୂର୍ତ୍ତସବୁ ସମୟ ପୃଷ୍ଠାରେ ଲିପିବଦ୍ଧ ହୋଇ ରହିଛି, ଡ. ସ୍ୱାଇଁ ତାକୁ ଯାହା ଉଖାରି ତେଜି ଦେଲେ ।

ମନେ ପଡ଼ିଲା ସେଦିନର କଥା । ଗ୍ରାଜୁଏସନ୍ ପରେ ଆଉ ଅଧିକା ପଢ଼ିବି ନ ପଢ଼ିବିର ଦ୍ୱନ୍ଦ୍ୱ ଭିତରେ ଯେତେବେଳେ ମନସ୍ଥ କଲି ପଢ଼ିବି ବୋଲି – ସେତେବେଳେ ମୋ ଘରକୁ ପାଖ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ (ସଦ୍ୟ ପ୍ରତିଷ୍ଠିତ) କୁ ହିଁ ମୋ ଉଚ୍ଚଶିକ୍ଷା ପାଇଁ ଅନୁକୂଳ ବୋଲି ଭାବିଥିଲି । ତେଣୁ ଦି' ତିନି ମାସ ଡେରିରେ ମୁଁ ଆଡ୍‌ମିସନ ନେଇଥିଲି ଓଡ଼ିଆ ବିଭାଗରେ । ବିଭାଗରେ ପ୍ରଥମ ପାଦ ଦେବା ଦିନ ବନ୍ଧୁ ୰ ଉପେନ୍ଦ୍ର ନାୟକ ଅନ୍ୟାନ୍ୟ ବିଦ୍ୟାର୍ଥୀମାନଙ୍କ ସହିତ ମୋର ପରିଚୟ କରାଇ ଦେଇଥିଲେ- ଭକ୍ତକବି ଗୋପାଳକୃଷ୍ଣଙ୍କ ଜନ୍ମମାଟିର ଝିଅ, ଗଜପତି କଲେଜରୁ ଗ୍ରାଜୁଏସନ୍ କରିଛନ୍ତି ।

ସେତେବେଳେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ନିଜସ୍ୱ କୋଠା ନଥିଲା । କ୍ୟାମ୍ପସ୍ ନଥିଲା । ଭଡ଼ାଘରେ ହିଁ ଚାଲୁଥିଲା ବିଭିନ୍ନ ବିଭାଗର ଶ୍ରେଣୀ, ଅଫିସ୍ ଏବଂ ବିଭାଗ ଠାରୁ ବହୁ ଦୂର କମାପଲ୍ଲୀ ଛକରେ ବିଶ୍ୱବିଦ୍ୟାଳୟର ଲାଇବ୍ରେରୀ । ବହିପତ୍ରର ଅସୁବିଧା ତ ଥିଲା ନିଶ୍ଚୟ । ତେଣୁ ଲାଇବ୍ରେରୀର ସାହାଯ୍ୟ ପ୍ରତ୍ୟେକ ମୁହୂର୍ତ୍ତେ ଆବଶ୍ୟକ ପଡୁଥିଲା । ଲାଇବ୍ରେରୀୟାନ୍ ୰ କବି ଗୋପାଳ ରଥ (ଆତ୍ରେୟ) ଚମତ୍କାର ମଣିଷ, ଗୁଣୀ, ଜ୍ଞାନୀ ଉଦାରମନର ମଣିଷ । ଅନେକ ସାହାଯ୍ୟ କରିଛନ୍ତି ମୋତେ । ବିଶ୍ୱବିଦ୍ୟାଳୟ ନୂଆ ହେଲେ ବି ତାର ସାହିତ୍ୟିକ ପରିବେଶ ଏବଂ ସାହିତ୍ୟାନୁରାଗୀମାନଙ୍କ ସାନ୍ନିଧ, ସମ୍ପୃକ୍ତି ମୋ ଉନ୍ମୁଖ ସାରସ୍ୱତ ତୃଷ୍ଣାକୁ ମେଣ୍ଟେଇବାରେ ଏକ ନୂତନ ଦିଗନ୍ତ ଖୋଲି ଦେଇଥିଲା । ଯାହା ପଲ୍ଲବିତ ହୋଇ ଆଜି ମୋତେ ନୂତନ ପରିଚୟଟିଏ ବଢ଼େଇ ଦେଇ ମୋ ଭିତରର ଆତ୍ମବିଶ୍ୱାସକୁ ଦୃଢ଼ୀଭୂତ କରିଛି । ଅବଶ୍ୟ ପଢ଼ା ସରିଲା ପରେ ପ୍ରଥମ ଦୁଇ ବର୍ଷ ମୁଁ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ଆଉ ଦି'ବର୍ଷ ଅଧିକା ରହିଛି ଓଡ଼ିଆ ବିଭାଗର ପ୍ରଥମ ରିସର୍ଚ୍ଚ ସ୍କଲାର୍ ହେଇ । ସରକାରୀ ଚାକିରିର ଅଫର ଆସୁଥିଲେ ବି ୟୁନିଭରସିଟିର ଲୋଭ ଛାଡ଼ି ହୋଇ ନଥିଲା । ଗବେଷଣା କରିବାର ବଳବତ୍ତର ଇଚ୍ଛା କିନ୍ତୁ ବେଶି ଦିନ ରହିନଥିଲା । ସଂସାର ଭିତରେ ଯୋଡ଼ି ହୋଇ ଚାଲି ଆସିଥିଲି ସରକାରୀ ଚାକିରି କରିବା ପାଇଁ । ସେଇ ଦେଢ଼ବର୍ଷ ଦୁଇବର୍ଷର ରହଣି ବେଳକୁ ବିଶ୍ୱବିଦ୍ୟାଳୟ ଉଠିଯାଇଥିଲା ତା' ନିଜସ୍ୱ କ୍ୟାମ୍ପସ୍ ରଙ୍ଗେଇଲୁଣ୍ଠାକୁ- ମୁଁ କିଛି ମାସ ସେଇ ଲେଡ଼ିଜ୍ ହଷ୍ଟେଲ୍‌ରେ ରହିଛି । ବିଶେଷ କରି ବର୍ଷାଋତୁଟା । ରଙ୍ଗେଇଲୁଣ୍ଠା ବର୍ଷାଋତୁର ଅନୁଭବ ସ୍ୱତନ୍ତ୍ର । ମୋ ଚେତନା ଭିତରେ ଆଜି ଯାଏଁ ସଂଜୀବିତ ହୋଇ ରହିଛି ବି । ଝାଉଁଗଛର ସାନ୍ଦ୍ରତା ଭିତରେ ଚମତ୍କାର ଦିଶେ ବର୍ଷା-ବିଶ୍ୱକବିଙ୍କ 'ବର୍ଷାବରଣ' କବିତା ମନେ ପଡ଼ିଯାଏ, ଭାରି ରୋମାଣ୍ଟିକ୍ । ଚାରି ଦଶକରୁ ଅଧିକ ହେଇଯିବ କ୍ୟାମ୍ପସ୍ ଆଉ ଦେଖିନି ।

ଆମର ଚଉଦ ଜଣିଆ ଓଡ଼ିଆ ବିଭାଗ । ଆମେ ଚାରିଜଣ ଝିଅ ମାତ୍ର । ସମସ୍ତଙ୍କ ଭିତରେ ସ୍ନେହ, ସୌହାର୍ଦ୍ଦ୍ୟର ଆପଣାପଣ । ସେଇ ସମ୍ପର୍କର ଡୋରି ଏ ଯାଏଁ ଛିଣ୍ଡିନି; ବରଂ ପାରିବାରିକ ସମ୍ପର୍କରେ ପରିଣତ ହୋଇଛି । ଶରତ (ବିଷୋୟୀ) ଭାଇ, ନିକୁଞ୍ଜ (ବାବି) ଭାଇ, ୰ ଉପେନ୍ଦ୍ର ଭାଇ ମୋ ପରିବାର ଅନ୍ତର୍ଭୁକ୍ତ । ପଞ୍ଚମବର୍ଷର ଶେଷ ପର୍ଯ୍ୟନ୍ତ ମୁଁ ମୋ ମାମୁଙ୍କ ଘରେ ରହିଥିଲି-ଷ୍ଟେସନ୍ ପାଖରୁ କଲେଜ ବହୁ ଦୂର । ତଥାପି ଥରେ ଥରେ ଚାଲି ଚାଲି ଆସେ । କେବେ କେବେ ସାଙ୍ଗରେ ମାଳବିକା ଥାଏ । ତା'ଘର ବି ସେଇ ପାଖାପାଖି । ଷଷ୍ଠ ବର୍ଷ କିନ୍ତୁ ମୁଁ ହଷ୍ଟେଲ୍‌ରେ ରହିଲି । ମେଡ଼ିକାଲ୍ ଲେଡ଼ିଜ୍ ହଷ୍ଟେଲ୍ ଆମକୁ ଆକୋମୋଡ଼େଟ୍ କରିଥିଲା । ସେଇ ହଷ୍ଟେଲ୍ ଅନୁଭୂତି ବି ଅବିସ୍ମରଣୀୟ ।

ଆଉ ଡିପାର୍ଟମେଣ୍ଟର କଥା । ଡିପାର୍ଟମେଣ୍ଟ ତ ନୁହେଁ, ଗୁରୁକୁଳାଶ୍ରମ । ଗୁରୁଛାତ୍ରର ଦୂରତା ଆଡ଼େଇ ସମସ୍ତେ ଏକ ପରିବାରର ଅନ୍ତର୍ଭୁକ୍ତ ହୋଇଯାଇଥିଲୁ । ପାଞ୍ଚ ଜଣ ପ୍ରଫେସର୍ ମୋ ପାଇଁ ସାଧାରଣ ଅଧ୍ୟାପକ ନଥିଲେ, ଥିଲେ ପ୍ରାତଃ ସ୍ମରଣୀୟ ଜ୍ଞାନାଲୋକର ଦୀପସ୍ତମ୍ଭ । ପ୍ରଫେସର୍ କୁଞ୍ଜବିହାରୀ ତ୍ରିପାଠୀ ପଢ଼ାଉଥିଲେ କାଳିଦାସ । ପଢ଼ଉ ପଢ଼ଉ ହଜିଯାଉଥିଲେ ଗବେଷଣା ଜଗତରେ । ସବୁବେଳେ ପ୍ରାୟ ସେ ବିଲାତୀ ପୋଷାକରେ ଥା'ନ୍ତି । କିନ୍ତୁ ଆତ୍ମା ତାଙ୍କର ସମ୍ପୂର୍ଣ୍ଣ ଭାରତୀୟ । ଋଷି ପ୍ରତିମ ପ୍ରବାଦ ପୁରୁଷ । ଲାଇବ୍ରେରୀ ଗଲା ବେଳେ ସାର୍‌ଙ୍କ ବସା ପଡ଼େ ବାଟରେ । ଦେଖିଲେ ପାଖକୁ ଡାକି ରିକ୍‌ସାରେ ବସାନ୍ତି- ପିଅନ ପାଳ ଗୋଡ଼ ତଳେ ବସେ । ଘରକୁ ଗଲେ ରାଶିଲଡୁ, ନଡ଼ିଆ ଲଡୁ ଦେଇ କୁହନ୍ତି-ଖାଅ ପେଟ ଭଲ ରହିବ । ମିସେସ୍ ତ୍ରିପାଠୀ ପଠେଇଛନ୍ତି । ଅମାୟିକ ଶିଶୁସୁଲଭ ଅବୋଧ ହସ ଲାଗିଥାଏ ସେଇ ଓଠରେ । ଡ. ସୀତାରାମ ମହାପାତ୍ର 'ଦାନାପାଣି', 'ରସକଲ୍ଲୋଳ' ପଢାଉଥିଲେ । ଛାତ୍ର ବତ୍ସଳ । ଡ. ନାରାୟଣ ଶତପଥୀ ଖୁବ୍ କମ ସମୟ ଥିଲେ । ଡକ୍ଟର ବେଣୀମାଧବ ପାଢ଼ୀ ଅଗାଧ ପାଣ୍ଡିତ୍ୟର ଅଧିକାରୀ, ନୀତିନିଷ୍ଠ ଜୀବନଶୈଳୀ, ମୁଁ ତାଙ୍କୁ ଖୁବ୍ ନିକଟରୁ ଦେଖିଛି । ବାପାଙ୍କ ବାଲ୍ୟବନ୍ଧୁ । ପରବର୍ତ୍ତୀ ସମୟରେ ସେ ଆମ ପରିବାରର ଅନ୍ତର୍ଭୁକ୍ତ ହୋଇଛନ୍ତି । ତେବେ ବନାନଟିଏ ଭୁଲ ହେଲେ, ପନ୍ଦର ମିନିଟ୍ ଶୋଧା ଖାଇବାକୁ ପଡ଼େ ତାଙ୍କଠୁ । ପାଖକୁ ଯିବାକୁ ଭୟ ଲାଗେ । ଥରେ 'ଝଙ୍କାର'ରେ ମୋର ଗୋଟାଏ ଗଳ୍ପ 'ଅନ୍ତରୀଣ ଯାତ୍ରା' ପଢ଼ି ସେ ମୋର ଏତେ ପ୍ରଶଂସା କରିଥିଲେ ଯେ ଜୀବନରେ ଭୁଲି ପାରିବିନି । ତେବେ ପ୍ରଶ୍ନ କରିଥିଲେ 'କେବେ ଉପନିଷଦ୍ ପଢ଼ିଛୁ ? ନହେଲେ ଏଇ ଗଳ୍ପର ମଞ୍ଜି କୋଉଠୁ ପାଇଲୁ ? ଖୁବ୍ ଭଲ ଲେଖିଛୁ ଗପଟା ।''

ମୋର ପରମ ସୌଭାଗ୍ୟ ଏଇଭଳି ଜ୍ଞାନ ତପସ୍ୱୀ ଆଚାର୍ଯ୍ୟମାନଙ୍କ ସାନ୍ନିଧ୍ୟ ପାଇବାର ଓ ସେମାନଙ୍କଠୁ ଶିକ୍ଷା ଲାଭ କରିବାର ସୁଯୋଗ ମୋତେ ଈଶ୍ୱର ଦେଇଛନ୍ତି ।

ମୋର ସ୍ୱତନ୍ତ୍ର ପେପର ଥିଲା 'ଭଞ୍ଜ ସାହିତ୍ୟ' । ଆଧୁନିକ ସାହିତ୍ୟ ପ୍ରତି ଦୁର୍ବଳତା ଥିଲା ସତ । ମୁଁ କିନ୍ତୁ ମଧ୍ୟଯୁଗୀୟ ରୀତି ସାହିତ୍ୟକୁ ବାଛିଥିଲି । କିଛି ଅଧିକା ଜାଣିବାର ସୁଯୋଗ ମିଳିବ ବୋଲି । କାରଣ ଡକ୍ଟର ସୁଦର୍ଶନ ଆଚାର୍ଯ୍ୟଙ୍କ କାବ୍ୟ ସାହିତ୍ୟର ତାତ୍ତ୍ୱିକ ଆଲୋଚନା, ପଢ଼େଇବାର ଶୈଳୀ ମୋତେ ଖୁବ୍ ଆକର୍ଷିତ କରିଥିଲା । ଶାନ୍ତଶିଷ୍ଟ ପ୍ରତିଭାଶାଳୀ ବ୍ୟକ୍ତିତ୍ୱ । ସଦା ଗମ୍ଭୀର, ନୀତିନିପୁଣ, ଖୁବ୍ କମ୍ କଥା କୁହନ୍ତି । ଛାତ୍ରବତ୍ସଳ, କେବେ ବିରକ୍ତି ପ୍ରକାଶ କରିବା ମୁଁ ଦେଖିନି । ଅଥଚ ତାଙ୍କ ପାଖରେ ଦୂରତ୍ୱବୋଧ ନଥିଲା କି ନାହିଁ । ସେଇ ଆପଣାପଣ ମୋତେ ସାହସ ଯୋଗାଇଥିଲା । ତାଙ୍କର ନିକଟବର୍ତ୍ତୀ ହେବା ପାଇଁ । ସାର୍ ମୋ ପାଖରୁ ଅନେକ ଆଶା ରଖିଥିଲେ । ମୁଁ ଗବେଷଣା କରେ । ମୋ ସାରସ୍ୱତ ସ୍ୱପ୍ନକୁ ଯେମିତି ସାକାର କରେ । ପରିଚୟଟିଏ ସୃଷ୍ଟି କରେ । ଜାଣେନା, ମୁଁ ସେମାନଙ୍କ ଅଭିଳାଷକୁ କେତେ ସାକାର କରିପାରିଛି । ତଥାପି ଆଜି ମୁଁ ଯୋଉଠି ଠିଆ ହୋଇଛି, ଯାହା ହୋଇଛି- ସବୁ କିଛି ତ ସେଇ ମହାନୁଭବ ପ୍ରଜ୍ଞା ପୁରୁଷମାନଙ୍କ ପାଇଁ । ସେଇମାନେ ମୋତେ ଦୃଷ୍ଟି ଦେଇଛନ୍ତି । ସେଇ ଶିକ୍ଷକ, ଶିକ୍ଷା ଏବଂ ଶିକ୍ଷାୟତନକୁ ମୋର ସହସ୍ର ପ୍ରଣାମ ।

ମୋ ବନ୍ଧୁମାନେ ତ ଜଣେ ଜଣେ 'ୟୁନିକ୍' । କଳାକାର ୰ ଶ୍ରୀନିବାସ ମହାନ୍ତି, ୰ ଉପେନ୍ଦ୍ର ନାୟକ (ଅଧ୍ୟାପକ), ୰ ରାମନାରାୟଣ ସାହୁ (ଅଧ୍ୟାପକ), ମାଳବିକା ରାୟଙ୍କ ସହିତ ଶୈଳବାଳାରେ ଏକାଠି ଅଧ୍ୟାପନା କରିଛି । ଡକ୍ଟର ଶରତ (ଭାଇ) ବିଷୋୟୀ (ବାବିଭାଇ), ନିକୁଞ୍ଜ ଛୋଟରାୟ (ଶିଳ୍ପପତି)- ଏମାନେ ସମସ୍ତେ ମୋର ପରିବାରର କହିଲେ ଭୁଲ ହେବନି । ବିପିନ ବିଶ୍ୱାଳ (ଅଧ୍ୟାପକ) ଭାରି ସ୍ନେହୀ, ମଣିଷକୁ ଖୋଜି ଖୋଜି ଘରେ ପହଞ୍ଚିଲା ଭଳି । ସବୁଠୁ ବେଶି ଦାୟିତ୍ୱସମ୍ପନ୍ନ ଆମ ବିଭାଗର ଗ୍ରନ୍ଥାଗାର ଏବଂ ସ୍ନାତକୋତ୍ତର ଶ୍ରେଣୀର ସମ୍ପାଦକ କୈଳାସ ତ୍ରିପାଠୀ । ପ୍ରତ୍ୟେକ ଶନିବାର ପାଠଚକ୍ର ହୁଏ । ଆଲୋଚନା ପରେ ଖାଇବା ଯୋଡ଼ି ହୋଇଥାଏ । ସେଠି କୈଳାସ ଭାଇର ଦାୟିତ୍ୱ ଓ ଉତ୍ସାହ ସବୁଠୁ ବେଶି କାମିକା ମଣିଷ । ଅନେକ ଭୋଜିଭାତ, ନାଟକ, ଷ୍ଟଡ଼ିଟୁର୍, ଓଡ଼ିଶା ଓ ଦକ୍ଷିଣ ଭାରତ ପରିଭ୍ରମଣ ଭଳି ଅନେକ ଅନୁଭୂତି ଆଜି ଯାଏଁ ମନରେ ସଂଜୀବିତ ହେଇ ରହିଛି ।

ପ୍ରଫେସର୍ ତ୍ରିପାଠୀ, ପ୍ରଫେସର୍ ମହାପାତ୍ର, ପ୍ରଫେସର୍ ପାଢ଼ୀ ଓ ପ୍ରଫେସର୍ ନାରାୟଣ ଶତପଥୀ ପାର୍ଥିବ ଜଗତରୁ ବିଦାୟ ନେଇଛନ୍ତି । ସେଇଭଳି ବିଦାୟ ନେଇଛନ୍ତି ବନ୍ଧୁ ଶ୍ରୀନିବାସ , ଉପେନ୍ଦ୍ର, ଜଗନ୍ନାଥ ଆଚାରୀ ଏବଂ ରାମନାରାୟଣ ବାବୁ । ଆଜିର

ଏଇ 'ପଛକୁ ଫେରି ଚାହିଁବା ବେଳା'ରେ ସେଇ ସ୍ୱର୍ଗତ ଆତ୍ମାମାନଙ୍କୁ ପ୍ରଣାମ ଜଣାଉଛି ଓ ଶ୍ରଦ୍ଧା ଜ୍ଞାପନ କରୁଛି ।

ପରିଶେଷରେ ସୁବର୍ଣ୍ଣ ଜୟନ୍ତୀର ଏଇ ଶୁଭ ଅବସରରେ ଅନେକ ଅନେକ ଶୁଭ କାମନା ସହ ଆଶା କରୁଛି, ମୋର ଏଇ ବିଶ୍ୱବିଦ୍ୟାଳୟ ଆହୁରି ଗୁଣୀ ମଣିଷଙ୍କୁ ସୃଷ୍ଟି କରୁ; ଆଗାମୀ ପିଢ଼ି ଆହୁରି ନୂଆ ନୂଆ ପରିଚୟ ସୃଷ୍ଟି କରି ଦେଶ ଓ ଜାତିର ମୁଖ ଉଜ୍ଜ୍ୱଳ କରନ୍ତୁ ଏବଂ ଓଡ଼ିଆ ଭାଷା ଓ ସଂସ୍କୃତିର ଉତ୍ତରୋତ୍ତର ଉନ୍ନତ ହେଉ । ଓଡ଼ିଆ ବିଭାଗ ସବୁବେଳେ ସକ୍ରିୟ ପ୍ରାଣୋଚ୍ଛଳ, ସ୍ୱାଭିମାନୀ -ବହୁ ସମ୍ଭାବନାର ଭବିଷ୍ୟତମାନଙ୍କୁ ଜନ୍ମ ହେଉ । ଆଜି ଏତିକି ।

●

*ବଳଗଣ୍ଡି, ପୁରୀ*

# ଅନୁଭୂତି : ମୁଠାଏ ସ୍ମୃତି

**ଡ. କୈଳାସଚନ୍ଦ୍ର ତ୍ରିପାଠୀ**

ଜୀବନର ଦୀର୍ଘ ରାସ୍ତାରେ ଚାଲୁ ଚାଲୁ ସାକ୍ଷାତ ହୁଏ କେତେ ଚିହ୍ନା - ଅଚିହ୍ନା ମୁହଁ । ସଭିଙ୍କୁ କି ମନେ ରଖି ହୁଏ ? କିନ୍ତୁ ମୋର ଜୀବନ ଚଲାପଥର ଅନୁଭୂତିରେ ମନେ ପଡ଼େ ୧୯୬୮ ମସିହାର ସ୍ମୃତିର ଏକ ଝଲକ । ସେ ଦିନର ସେତେବେଳେ ବ୍ରହ୍ମପୁରରେ ନୂତନ ହୋଇ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ହୋଇଥାଏ । ସେଦିନର ବିଶ୍ୱବିଦ୍ୟାଳୟ ନଥିଲା ବର୍ତ୍ତମାନର ଭଞ୍ଜବିହାର ପରିସରରେ । ତାହା ଥିଲା ବ୍ରହ୍ମପୁର ସହରରେ । ତା'ର ପରିଚିତି ଥିଲେ ସୁଦ୍ଧା ନଥିଲା ତା'ର ସ୍ୱତନ୍ତ୍ର କୋଠା- ଏଠି ସେଠି ହୋଇ ଗୁଡ଼ାଏ ଭଡ଼ା ଘରେ ଚାଲିଥିଲା ବିଶ୍ୱବିଦ୍ୟାଳୟ । ନୂଆରେ ଆରମ୍ଭ ହୋଇଥାଏ ଏମ୍.ଏ. (ଓଡ଼ିଆ)ର ପାଠ୍ୟକ୍ରମ ।

ବି.ଏ. ପାସ କରିବା ପରେ ମନରେ ଜାଗିଲା ବିଶ୍ୱବିଦ୍ୟାଳୟର ଛାତ୍ର ହେବାକୁ । ଏମ୍.ଏ. (ଓଡ଼ିଆ) ରେ ପଢ଼ିବାର ନିଶା । ମନରେ ଦେଖାଦେଲା କେତେ ଆଗ୍ରହ, ଉଲ୍ଲାସର ଉତ୍କଣ୍ଠା, ଆନନ୍ଦ-ବିଶ୍ୱାସ କରି ହୁଏନା, ରୋକି ପାରିଲିନି । ବିଶ୍ୱବିଦ୍ୟାଳୟର ଛାତ୍ର - ଅଜବ କୌତୂହଳ, ଅନେକ ଚେତନା, ନୂଆ ଅନୁଭୂତି, ଆକାଂକ୍ଷାର ରଙ୍ଗୀନ-ସ୍ୱପ୍ନ, ଅଦ୍ଭୁତ ଭାବନା, ପୁଣି କେତେ କ'ଣ ? ଜୀବନରେ ଅଧ୍ୟାପକ ହେବାର ମୂଳଦୁଆ, ଅଧ୍ୟାପନା ଜୀବନର ବାସ୍ତାୟିତ ପରିକଳ୍ପନା, ମୋ ଜୀବନ-ସ୍ୱପ୍ନର ସାର୍ଥକ ସ୍ୱାକ୍ଷର ।

ଆଜି ଫେରି ଚାହୁଁଛି ୫୦ବର୍ଷର ଅତୀତକୁ; ବିଶ୍ୱବିଦ୍ୟାଳୟର ଅତୀତ ପରିସର ଓ ପରିବେଶକୁ- ଦେଖାଯାଉଛି ଅନୁଭୂତିର ନରମ ପାଖୁଡ଼ା, ତା'ର ରୂପ-ରଙ୍ଗ ଓ ସୁରଭିକୁ । କେତେ ଆକର୍ଷଣ, କେତେ ମାୟା, ସ୍ନେହ-ମମତାର ଫଲ୍‌ଗୁ । ମନ ହେଉଛି ଅଧୀର, ଅସ୍ଥିର; ପ୍ରାଣ ହେଉଛି ଉଦ୍‌ବେଳିତ- ସତରେ ସେହି ଅତୀତ ଥରେ ପୁଣି କେମିତି ଫେରି ଆସନ୍ତା କି ? ହେଲେ ସେ କେବେ ଫେରି ଆସିବନି । କେତେ ଉତ୍ସାହ, କେତେ ଆପଣାର ଭାବ, କେତେ ନିଜର ସବୁ ଥିଲେ ସେମାନେ- ମୋ' ସହିତ ପଢୁଥିବା ତେର ଜଣ ଛାତ୍ରଛାତ୍ରୀ- ମାଳବିକା ରାୟ, ସ୍ୱରାଜ୍ୟଲକ୍ଷ୍ମୀ ବକ୍‌ସି, ମୃଦୁଳା ରାୟ, ଲିଲି ତ୍ରିପାଠୀ, ନିକୁଞ୍ଜ ଛୋଟରାୟ, ଶରତ ଚନ୍ଦ୍ର ବିଷୋୟୀ, ଲକ୍ଷ୍ମୀ ଚରଣ ସାମନ୍ତରାୟ, ବିପିନ୍ ବିହାରୀ ବିଶ୍ୱାଳ, ଉପେନ୍ଦ୍ର ନାୟକ, ଶ୍ରୀନିବାସ ମହାନ୍ତି, ଜଗନ୍ନାଥ ପାଣିଗ୍ରାହୀ, ବି.ସତ୍ୟନାରାୟଣ ଆଚାରୀ ଓ ରାମନାରାୟଣ ସାହୁ । ଆମ ଭିତରେ ନଥିଲା ସଂକୀର୍ଣ୍ଣତା, ଛଳନା ଅବା ନିଜ-ପର

ଭାବ । ସଭିଏଁ ଯେମିତି ଆମେ ଥିଲୁ ଗୋଟିଏ ପରିବାରର ସଦସ୍ୟ । ଆମ ଓଡ଼ିଆ ବିଭାଗ ଥିଲା ଆମ ଘର, ଆମ ସଂସାର, ଏକ ସ୍ୱତନ୍ତ୍ରତାର ପ୍ରତୀକ । କେତେବେଳେ ରାତି ପାହି ସନ୍ଧ୍ୟା ହୁଏ, ସକାଳ ଆସେ ମୁଁ ଜାଣିପାରୁ ନଥିଲି । ପ୍ରତିଟି ଦିନ ନିୟମିତ ଲାଗେ ନୂଆ ନୂଆ । ଖାଲି ଥିଲା ଆମର ପାଠପଢ଼ା, କଥାବାର୍ତ୍ତା, ହସ-ଖୁସି, ମିଳାମିଶା, କେବଳ ମମତାର ସୁଦୃଢ଼ ବନ୍ଧନ ।

ସେହି ଜ୍ଞାନପୀଠରେ ଆମର ଥିଲେ ପାଞ୍ଚ ଜଣ ଅଧ୍ୟାପକ । ଜୀବନର ଜନ୍ମ କେବଳ ମୃତ୍ୟୁ ପାଇଁ; ଯାହା ଏକାନ୍ତ ସତ୍ୟ । ତା'ରି ଭିତରେ ଅଛି ଆସିବା-ଯିବାର ଲୁଚକାଳି ଖେଳ, ହସ ଓ ଲୁହର ଏକ ଅବ୍ୟକ୍ତ ଅନୁଭୂତି । ଆଜି ଫେରି ଖୋଜିଲା ବେଳକୁ ମୋର ପୂଜ୍ୟ ଗୁରୁ ଡ. କୁଞ୍ଜବିହାରୀ ତ୍ରିପାଠୀ, ଡ. ସୀତାରାମ ମହାପାତ୍ର, ଡ. ବେଣୀମାଧବ ପାଢ଼ୀ ଓ ଡ. ନାରାୟଣ ଶତପଥୀ ହୋଇଛନ୍ତି ଅମର ପଥର ଯାତ୍ରୀ । ସେହି ପରମ ପୁରୁଷମାନଙ୍କ ପାଇଁ ମୋର ଗଭୀର ଭକ୍ତି ଶ୍ରଦ୍ଧାଞ୍ଜଳି ଜଣାଉଛି । ଆଉ ବଞ୍ଚି ରହିଛନ୍ତି କେବଳ ଡ. ସୁଦର୍ଶନ ଆଚାର୍ଯ୍ୟ । ଆଚାର୍ଯ୍ୟ ସାର୍‌ଙ୍କ ଦୀର୍ଘ ଜୀବନ ଓ ଆଶୀର୍ବାଦ ହିଁ କାମନା କରୁଛୁ ।

ମୋର ପାଞ୍ଚ ଜଣ ଅଧ୍ୟାପକ ଥିଲେ ଦେବତା ତୁଲ୍ୟ ମଣିଷ । ସେମାନେ ଥିଲେ ଜ୍ଞାନୀ, ଗୁଣୀ, ଆମ ସୁଖ-ଦୁଃଖର ସାଥୀ । ସେହି ଜ୍ଞାନ-ତପସ୍ୱୀମାନେ ମୋର ଚିର ନମସ୍ୟ । ସେଠି ମୁଁ ଦେଖିଲି ପୂଜ୍ୟପୂଜାର ଏକାନ୍ତ ସଂଯୋଗ, ଗୁରୁ-ଶିଷ୍ୟର ପବିତ୍ର ସମ୍ପର୍କ, ଅଧ୍ୟାପକ ଛାତ୍ରର ଅଦ୍ଭୁତ ପ୍ରୀତି, ଜ୍ଞାନ ଆହରଣର ପ୍ରଶସ୍ତ ଓ ପ୍ରକୃତ କ୍ଷେତ୍ର । ବାସ୍ତବିକ କହିବାକୁ ଗଲେ ସେଠି ହିଁ ମୁଁ ଅନୁଭବ କରିଥିଲି ଶିକ୍ଷା-ଶିକ୍ଷକ-ଶିକ୍ଷାୟତନର ଅପୂର୍ବ ସମନ୍ୱୟ ଓ ସଂଯୋଗ ।

ପ୍ରତ୍ୟେକ ଶନିବାର (ଛୁଟି ବ୍ୟତୀତ) ଦିନ ଆମର ହୁଏ ପାଠଚକ୍ର; ସାହିତ୍ୟ-ତର୍କ-ଆଲୋଚନା । ଅଧ୍ୟାପକମାନଙ୍କର ସତ୍ ଉପଦେଶ ଓ ସାହିତ୍ୟ ସମ୍ପର୍କୀୟ ପ୍ରେରଣା ପୁଣି ସମାଲୋଚନା । ପୁଣି ସେଥିରେ ଥାଏ ପ୍ରାରମ୍ଭିକ ଓ ଉଦ୍‌ଯାପନୀ ସଙ୍ଗୀତ, ଚା' ଜଳଖିଆ, ତା'ପରେ ନାଚଗୀତର ଆସର । ଏମ୍.ଏ. ପଢ଼ିବାର ଛାତ୍ର ଜୀବନରେ ସବୁ ସମୟ ଆମ ପାଇଁ ଯେପରି ଥିଲା ଜ୍ଞାନ-ସଂଗ୍ରହ, ମଉଜ-ମଜଲିସ୍, ନାଟକ-ଅଭିନୟ ଓ ଆନନ୍ଦ-ଉତ୍ସବର ଏକ ସାଙ୍କେତିକ ମୁହୂର୍ତ୍ତ । ସେହି ଦୁଇ ବର୍ଷ ଆମେ ପ୍ରତିଟି ଛାତ୍ର-ଛାତ୍ରୀ ଜୀବନକୁ ପ୍ରକୃତରେ ଉପଭୋଗ ଓ ଉପଯୋଗ କରିବାର ସୁବିଧା ଓ ସୁଯୋଗ ପାଇଥିଲୁ – ଏହା ନିଃସନ୍ଦେହରେ ସ୍ୱୀକୃତ ।

ପାଠଚକ୍ରର ସମ୍ପାଦକ ଭାବରେ ମୋର ଥିଲା ଗୁରୁ ଦାୟିତ୍ୱ । କହିବାକୁ ଗଲେ ମୁଁ ଥିଲି ସଭିଙ୍କର ବଡ଼ ଭାଇ । ତେଣୁ ପ୍ରତ୍ୟେକଙ୍କର ବିଶ୍ୱାସ ଥିଲା ମୋ ଉପରେ ।

ସମ୍ପାଦକ ଭାବରେ ସ୍ନାତକୋତ୍ତର ବିଭାଗର ଗ୍ରନ୍ଥାଗାରର ଦାୟିତ୍ୱ ଥିଲା ମୋ ଉପରେ । ଗ୍ରନ୍ଥାଗାରର ଅଭିବୃଦ୍ଧି ଓ ସୁରକ୍ଷା ଥିଲା ମୋର ଏକାନ୍ତ ଲକ୍ଷ୍ୟ । ଗ୍ରନ୍ଥାଗାରର ରକ୍ଷଣାବେକ୍ଷଣ ଓ ନିୟମିତ ପାଠଚକ୍ର ଆୟୋଜନକୁ ମୁଁ ଜୀବନର ପରମ କର୍ତ୍ତବ୍ୟ ବୋଲି ମାନି ନେଇଥିଲି- ଯାହା ପରବର୍ତ୍ତୀ ସମୟରେ ମୋର ଜ୍ଞାନର ପରିସୀମାକୁ ପରିବ୍ୟାପ୍ତ କରିବାରେ ଯଥେଷ୍ଟ ସାହାଯ୍ୟ କରିଛି ।

ଜଣେ ସମ୍ପାଦକ ଭାବେ ମୁଁ ଥିଲି ଖୁବ୍ ସକ୍ରିୟ । ଛାତ୍ର ଜୀବନର ସେହି ଦୁଇ ବର୍ଷ ଅବସରରେ ଅନେକ ଭୋଜି-ଭାତ, ନାଟକ-ଅଭିନୟ (ଶବବାହକମାନେ, ଅରଣ୍ୟ ଫସଲ), ଓଡ଼ିଶା ଓ ଦକ୍ଷିଣ ଭାରତ ପରିଭ୍ରମଣର ପର୍ଯ୍ୟାପ୍ତ ଅନୁଭୂତି ବର୍ତ୍ତମାନ ସୁଦ୍ଧା ମନରେ ମୋର ଜୀବନ୍ତ ଓ ସତେଜ ହୋଇ ରହିଛି ।

ଆଜି ଏହି ଉତ୍ତୀର୍ଣ୍ଣ ବୟସରେ ଠିଆ ହୋଇ ଅତୀତକୁ ଖୋଜି, ଛାତ୍ର ବନ୍ଧୁମାନଙ୍କର ହିସାବ-ନିକାଶ ଦେଖିଲା ବେଳକୁ ମୋର ସହପାଠୀ ଶ୍ରୀନିବାସ ମହାନ୍ତି, ଉପେନ୍ଦ୍ର ନାୟକ, ବି.ସତ୍ୟନାରାୟଣ ଆଚାରୀ, ଜଗନ୍ନାଥ ପାଣିଗ୍ରାହୀ ଓ ରାମ ନାରାୟଣ ସାହୁ ମାଟିରେ ହଜି ଯାଇଛନ୍ତି । ସେହିମାନେ ମୋ ମନର ସ୍ମୃତିରେ ଆବଦ୍ଧ । ସେହି ସବୁ ଅମର ଆତ୍ମାଙ୍କ ପ୍ରତି ସଦ୍‌ଗତି ଉଦ୍ଦେଶ୍ୟରେ ମୋର ବିନମ୍ର ପ୍ରଣତି ଜଣାଉଛି ।

ହସ-ଲୁହଭରା ଜୀବନରେ ତ ଥାଏ ଭୁଲା-ଅଭୁଲାର ମନ । ଆଉ ଆଜି ଅତୀତକୁ ଫେରି ଚାହିଁ ଖୋଜିଲା ବେଳକୁ ଦେଖାଦିଏ ସୁନେଲୀ-ସ୍ୱପ୍ନର କାହାଣୀ, ରଙ୍ଗ-ବେରଙ୍ଗର ଫେନାୟିତ ତରଙ୍ଗ, ସୁପ୍ତ-ମଧୁର ଅନୁଭୂତି, ମାୟା-ମମତାର ଅଛିଣ୍ଡା ଡ଼ୋରି । ମନ ପୁଣି ଫେରିଯାଏ ଅତୀତକୁ, ଖୋଜି ବସେ ସେଇ ଅଭୁଲା, ଅପାସୋରା ସ୍ମୃତିକୁ । ତେବେ ଅତୀତ କି ଫେରି ଆସେ ? ବୟସ ତ ଆଉ ଅପେକ୍ଷା କରି ରହି ନାହିଁ । ଅଥଚ ଆତ୍ମଗୋପନ କରି ରହିଥିବା ସେହି ସଞ୍ଚିତ ସ୍ମୃତି ହିଁ ଭବିଷ୍ୟତ ପାଇଁ ବଞ୍ଚି ରହିବାର ଅଭିନବ ପ୍ରେରଣା ଦିଏ, ସୁଖ-ସ୍ୱପ୍ନର ସମ୍ଭାର ଆଣିଦିଏ, ଜୀବନର ଅବଶିଷ୍ଟାଂଶ ପାଇଁ ଉତ୍ତାପ ଯୋଗାଏ । ପୁଣି ଜୀବନକୁ ଉପଭୋଗ କରିବାର ଉତ୍ସାହ ଭରି ଦିଏ ।

ଆଉ ଆଜି ଖୁବ୍ ଦୁଃଖ ଆସେ ମନରେ । ପରିଣତ ବୟସରେ ଏ ପରିପକ୍ୱ ଅବସ୍ଥା -ମନର ଫୁଲବଣରେ ଉଡ଼ି ବୁଲୁଥିବା ରଙ୍ଗ-ପରାଗ-ରେଣୁ ଝଡ଼ିଯାଇଛି, ପାଖୁଡ଼ାର କୋମଳତା ମଉଳି ଗଲାଣି । ଯୌବନର ସୌନ୍ଦର୍ଯ୍ୟ ନଷ୍ଟ-ବିନଷ୍ଟ ଆଉ ବୟସର ସୁରଭି ଉଭେଇ ଯାଇଛି । ଧୀରେ ଧୀରେ ଯେପରି ବୟସ ଉଡ଼ିବୁଲୁଛି ଆକାଶ ଦେହରେ - ଖୋଜି ବୁଲୁଛି ଶୀତଳତାର ନରମ ସ୍ପର୍ଶ । ଏଣେ ଶୁଭିଲାଣି ମଶାଣିର ଆହ୍ୱାନ- ସମୟ ହିଁ ତା'ର ସମାଧାନ କରିବ । ତେବେ ଯେଉଁମାନେ ଆଜି ବଞ୍ଚି ରହିଛୁ, ସେହିମାନଙ୍କ ନିରାମୟ

ଜୀବନ ହିଁ ମୁଁ କାମନା କରୁଛି । ଆମ ଅତୀତ ଜୀବନର ଅନୁଭୂତି ଓ ସ୍ମୃତି ଅଲିଭା ସାକ୍ଷୀ ଓ ସାଥୀ ହୋଇ ଚିର ଅମଳିନ ଭାବେ ରହିଥାଉ- ଏହା ହିଁ ପରମାନନ୍ଦଙ୍କ ନିକଟରେ ମୋର ନିବେଦନ ।

ପରିଶେଷରେ ଓଡ଼ିଆ ଭାଷା-ସାହିତ୍ୟର ସମୃଦ୍ଧି ହେଉ, ଓଡ଼ିଆ ଭାଷା ପ୍ରତି ପ୍ରତିଟି ଓଡ଼ିଆର ମମତା ଓ ସମ୍ମାନ ବୃଦ୍ଧି ପାଉ, ଭଞ୍ଜବିହାର ସ୍ନାତକୋତ୍ତର ଓଡ଼ିଆ ବିଭାଗର ସୁନାମ ବଜାୟ ରହୁ ଏବଂ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଭବିଷ୍ୟତ ବହୁ ବର୍ଣ୍ଣବିଭାରେ ଆଲୋକିତ ହୋଇ ଏକ ଅଭିନବ ଇତିହାସ ସୃଷ୍ଟି କରୁ- ଏହା ହିଁ ମୋର ହୃଦୟର ଅଭିଳାଷ ।

●

ବ୍ରହ୍ମପୁର

# ସ୍ମୃତିରୁ ଟୋପାଏ

**ଡ. ଶରତଚନ୍ଦ୍ର ବିଷୋୟୀ**

ଦୀର୍ଘ ସତୁରୀ ଉପରାନ୍ତ ପ୍ରଲମ୍ବିତ ଜୀବନ ପଥରେ ମାତ୍ର ଦୁଇଟି ବର୍ଷ (୧୯୬୮-୭୦) ସମୟ ପରିମାପରେ ଖୁବ୍ ସଂକ୍ଷିପ୍ତ । ତଥାପି, ଏହି କ୍ଳାନ୍ତ ଜୀବନ ଅପରାହ୍ଣରେ ସେ ଦୁଇଟି ବର୍ଷର ସ୍ମୃତି ଓ ଅନୁଭୂତି ତା'ର ପ୍ରଚଣ୍ଡ ସମ୍ମୋହନ ଶକ୍ତିରେ ମନ, ପ୍ରାଣ, ଚିନ୍ତା ଓ ଚେତନାକୁ ଆଚ୍ଛନ୍ନ କରିଦିଏ । ସେ ଏକ ଅବ୍ୟକ୍ତ ରୋମାଞ୍ଚକର ଅନୁଭୂତି । ଜୀବନଯାତ୍ରାରେ ସେ ସମୟ ଥିଲା ମଧୁବର୍ଷୀ ମଧୁମାସ । ସବୁ କିଛି ଥିଲା ମଧୁମୟ । ସବୁ ଥିଲା ସରସ -ସୁନ୍ଦର-ସବୁଜ ସତେଜ ଓ ଆଭିଜାତ୍ୟରେ ପରିପୂର୍ଣ୍ଣ, ସଂପୂର୍ଣ୍ଣ । ଜୀବନ ଥିଲା 'ଏକ ଅମାନିଆ ବନ ଝରଣା....' । ତାହା ଛଳ ଛଳ ନିର୍ମଳ । କଳ କଳ ନାଦରେ ବହିଯିବା ହିଁ ଥିଲା ତା'ର ଜୀବନ ଧର୍ମ । ସେଥିପାଇଁ କବି କଣ୍ଠରେ କଣ୍ଠ ମିଳାଇ ଗାଇବାକୁ ଇଚ୍ଛା ହେଉଥିଲା "ବିଶ୍ୱ ଦେଖ ମଧୁମୟରେ ଜୀବନ....' । ସଦ୍ୟ-ଗଢ଼ି ଉଠିଥିବା ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗ । ସାଧାରଣ ଦୃଷ୍ଟିରେ ଶିକ୍ଷାଦାନ ପାଇଁ ଉନ୍ମୁକ୍ତ ବିଭାଗଟିଏ ମାତ୍ର ହୋଇପାରେ । କିନ୍ତୁ ସେତେବେଳର ଅନୁଭବୀ ବିଦ୍ୟାର୍ଥୀ ପାଇଁ ସେ ଥିଲା ଏକ ପବିତ୍ର ଗୁରୁକୁଳାଶ୍ରମ । 'ଜ୍ଞାନ-ତପ-ସିଦ୍ଧ' ଗୁରୁମଣ୍ଡଳୀ । ବିଦ୍ୟା ଦାନରେ ଅକୁଣ୍ଠ ବ୍ୟାକୁଳତା । ନୀତି ଆଦର୍ଶ ଓ କର୍ତ୍ତବ୍ୟନିଷ୍ଠାର ସେମାନେ ଜଣେ ଜଣେ ଅତୁଳନୀୟ ବ୍ୟକ୍ତିତ୍ୱ । ସେମାନଙ୍କଠାରୁ ଯେଉଁ ପିତୃତୁଲ୍ୟ ସ୍ନେହ ଶ୍ରଦ୍ଧା ଓ ଆଦର ପାଇଛି ତାହା ଏବେ ମଧ୍ୟ ମୋର ସ୍ମୃତିର ଶଂଖାଳି । ସତ କହିବାକୁ ଗଲେ ସେମାନଙ୍କର ନୀତି ଓ କର୍ତ୍ତବ୍ୟନିଷ୍ଠାରୁ ମୋ ଭବିଷ୍ୟତ ପାଇଁ କାଣିଚାଏ ନେଇଥିଲି । କିନ୍ତୁ ସେମାନଙ୍କ ସାଧନାର ଏକ ସୂକ୍ଷ୍ମ ବିନ୍ଦୁ ମଧ୍ୟ ଆହରଣ କରି ନପାରି ଅବସୋସରେ ବ୍ୟଥିତ ହୋଇଛି ବରାବର ।

ଉତ୍ତରରେ ବାଲେଶ୍ୱରଠାରୁ ଦକ୍ଷିଣରେ ପାରଳାଖେମୁଣ୍ଡି; ଏହି ବିସ୍ତୀର୍ଣ୍ଣ ଓଡ଼ିଶା ଭୂମିରୁ ବହୁ ଆଶା ଆକାଂକ୍ଷା ଓ ଆବେଗ ନେଇ ବିଭାଗର ପ୍ରଥମ ବର୍ଷରେ ମୋଟ ଚଉଦ ଜଣେ ବିଦ୍ୟାର୍ଥୀ / ବିଦ୍ୟାର୍ଥୀନୀଙ୍କର ଏକତ୍ର (ବିଭାଗରେ) ସମାବେଶ । ଅସୂୟା ସୂଚକ ବ୍ୟଙ୍ଗ ବିଦ୍ରୂପ କଥା ଦୂରେ ଥାଉ, ହୃଦୟକୁ ଆଘାତ ଦେଲାଭଳି ପଦେ କଥା ମଧ୍ୟ କାହାରିଠାରୁ କେବେ ଶୁଣିନାହିଁ । ସେମାନଙ୍କୁ ଦେଇଛି ମୋ ହୃଦୟର ନିର୍ମଳ ଭ୍ରାତୃସ୍ନେହ ଓ ବନ୍ଧୁ ପ୍ରେମ । କିନ୍ତୁ ସେମାନେ ସେସବୁକୁ ଶହେ ଗୁଣରେ ଫେରାଇ ଦେଇ ମୋତେ ଋଣୀ କରିଦେଇଛନ୍ତି । ପରିଶେଷରେ ମୋର ଦିବଂଗତ ବନ୍ଧୁମାନଙ୍କୁ ପ୍ରଣାମ ଓ ଅନ୍ୟମାନଙ୍କ

ପାଇଁ ଜଗନ୍ନାଥଙ୍କ କରୁଣା ଭିକ୍ଷା କରୁଛି । ଆଜି ସେହି ବିଭାଗ ପଚାଶ ବର୍ଷ ପୂରଣ କରିସାରିଛି । ଗର୍ବରେ ଛାତି ଫାଟିପଡୁଛି । ସେ ଦିନର ଅତୀତକୁ ଫେରି ଚାହିଁଲେ ଭାବୁଛି କେତେ ପ୍ରଲମ୍ବିତ ତା'ର ଇତିହାସ । କେତେ ପଦଚିହ୍ନ ଯୋଡ଼ି ହୋଇଯାଇଛି ସେହି ଇତିହାସରେ । ଆଜି ନାନା ଦୃଷ୍ଟିରୁ ଏହି ବିଭାଗ ପରିପୂର୍ଣ୍ଣ- ପୂର୍ଣ୍ଣାଙ୍ଗ । ଅନେକ ସୁନାମ । ବିଭାଗର ସୁବର୍ଣ୍ଣ ଜୟନ୍ତୀ ପାଳନ ଅବସରରେ ଏହି ବିଭାଗକୁ ମୋର କୋଟି କୋଟି ପ୍ରଣାମ ।

●

ବ୍ରହ୍ମପୁର

# ଫେରି ଚାହିଁବାର ବେଳ

**ଶ୍ରୀ ବିପିନ ବିହାରୀ ବିଶ୍ୱାଳ**

ପରିବର୍ତ୍ତନ ସୃଷ୍ଟିର ନିୟମ । ପରିବର୍ତ୍ତନ ଆଦି-ମଧ୍ୟ-ଅନ୍ତ । ଏ ଲୀଳା ଅନବରତ ଲାଗି ରହିଛି । ସେହି କ୍ରମରେ ଆଜି ପଞ୍ଚଦଶନ୍ଧି ତଳର ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗରେ ପାଠପଢ଼ା ବେଳର ନିଆରା ସ୍ମୃତି ଓ ଅନୁଭୂତି ଏ ଜୀବଦ୍ଦଶାରେ ଭୁଲି ଯିବାର ନୁହଇ । ତେବେ ବହୁ ସ୍ମୃତି ଆଜି ମାନସ ପଟରେ ସ୍ପଷ୍ଟ ହୋଇ ଦେଖାଦେଉଛି । ଅନେକ ମଧ୍ୟ ଅସ୍ପଷ୍ଟ । ଦୂର ଅସ୍ପଷ୍ଟ, ନିକଟ ସ୍ପଷ୍ଟ- ବେଗ ଅସ୍ପଷ୍ଟ, ଅଚଳତା ସ୍ପଷ୍ଟ । ବୟସର ଦାବିରେ ବହୁବର୍ଷର ବ୍ୟବଧାନରେ ବହୁ ସ୍ମୃତି ଅନୁଭୂତି ଅସ୍ପଷ୍ଟ ହୋଇଯିବା ସ୍ୱାଭାବିକ । ସେ ବେଳ ଏ ବେଳ କେତେ ଅମେଳ ତାହା ସହଜରେ କହି ହେଉନାହିଁ ।

ସେବେଳର ପାଠପଢ଼ା ଜୀବନର ବନ୍ଧୁବାନ୍ଧବୀଙ୍କ ଆନ୍ତରିକତା, ସ୍ନେହ, ପ୍ରେମ, ଭଲପାଇବା କଥା ଚିନ୍ତା କଲା ବେଳକୁ ତାଜୁବ ଲାଗୁଛି । ମୁଁ ତିନି ମାସ ବିଳମ୍ବରେ ପି.ଜି. ଓଡ଼ିଆ ଶ୍ରେଣୀରେ କୁଳପତିଙ୍କ ସୁପାରିଶ କ୍ରମେ ଭର୍ତ୍ତି ହେବାର ସୁଯୋଗ ଲାଭ କରିଥିଲି । ଆଜି ବି ମନେ ପଡୁଛି ବଂଧୁମାନେ ବଡ଼ ସରାଗରେ ମୋତେ ଆପଣେଇ ନେଇଥିଲେ । କେହି କେହି ବି ବୋଧହୁଏ ମୋର ଚେହେରା ଦେଖି 'ରାଧାନାଥ ଆସିଗଲେ' ବୋଲି କହୁଥିଲେ । ମୁଁ ଆଜି ବି ମନଶ୍ଚକ୍ଷୁରେ ଦେଖୁଛି - ମାଳବିକା, ମୃଦୁଳା, ଲିଲି ଏବଂ ସ୍ୱରାଜ୍ୟଲକ୍ଷ୍ମୀଙ୍କୁ । ସେମାନେ ସଭିଏଁ ଶାଢ଼ି ପିନ୍ଧି ଆସୁଥିଲେ । ସେମାନଙ୍କ ମଧ୍ୟରେ ମାଳବିକା ରାୟ ଭାରି ଟିପ୍ ଟପ୍ ଥିଲେ । ମୋର ବଂଧୁ ନିକୁଞ୍ଜ ବାବୁ, ଲକ୍ଷ୍ମୀଚରଣ ବାବୁ ବି କମ୍ ସ୍ମାର୍ଟବାଜ୍ ନଥିଲେ । ବନ୍ଧୁ ଉପେନ୍ଦ୍ର ବାବୁ ସମସ୍ତଙ୍କ ମଧ୍ୟରେ ଗେଡ଼ା ମଣିଷ ଥିଲେ । ତାଙ୍କ କଥାରେ ବାଟୁଳି ବାଜୁ ନଥିଲା । ସେ ଆଜି ସ୍ୱର୍ଗବାସୀ, କୈଳାସ ବାବୁ ବଡ଼ ଢ଼େଙ୍ଗା ଓ ନହକା ମଣିଷଟିଏ । ରାମନାରାୟଣ ବାବୁ ସାଇ ଭକ୍ତ । ଆମ ପ୍ରଥମ ବ୍ୟାଚର ଅଧିକାଂଶ ବନ୍ଧୁ ପ୍ରାୟ ଅଧ୍ୟାପନା ବୃତ୍ତିକୁ ବରି ନେଇଥିଲେ । ନିକୁଞ୍ଜ ବାବୁ ଶିଳ୍ପପତି ହୋଇଥିଲେ ବି ଲାୟନ୍ସ କ୍ଲବର ଡ଼ିସ୍‌ଟ୍ରିକ୍‌ଟ ଗଭର୍ଣ୍ଣର ଭାବରେ ତାଙ୍କର ସର୍ବତ୍ର ସୁଖ୍ୟାତି ରହିଛି । ସେହିପରି ଲକ୍ଷ୍ମୀଚରଣ ସାମନ୍ତରାୟ ଓକିଲାତି ବ୍ୟବସାୟକୁ ବରି ନେଇ ବାଟ ଚାଲିଛନ୍ତି । ଶରତଚନ୍ଦ୍ର ବିଷୋୟୀଙ୍କର ଅଧ୍ୟାପକ ଜୀବନ ଭାରି ସ୍ୱଚ୍ଛ ଓ ନିର୍ମଳ । ସେ ସର୍ବଦା ହସ ହସ । ମୋ ଜାଣିବାରେ ମାଳବିକା ରାୟ, ସ୍ୱରାଜ୍ୟଲକ୍ଷ୍ମୀ, ଲିଲି ତ୍ରିପାଠୀ କୈଳାସ ତ୍ରିପାଠୀ, ରାମ ନାରାୟଣ ବାବୁ ଅଧ୍ୟାପନା ସହିତ

ସାରସ୍ୱତ ସାଧନାରେ ବେଶ୍ ନାମ କମାଇଛନ୍ତି । ସତ୍ୟନାରାୟଣ ବାବୁ ଡ଼ାକ ବିଭାଗରେ ଜଣେ ପଦସ୍ଥ ଅଫିସର ଥିଲେ । ଜଗନ୍ନାଥ ପାଣିଗ୍ରାହୀ ଆମକୁ ଛାଡ଼ି ଚାଲି ଯାଇଛନ୍ତି । ଆମେ ଯେଉଁମାନେ ଅଛୁ, ପ୍ରାୟତଃ ସମସ୍ତଙ୍କୁ ସତୁରି ଟପିଲାଣି । ସେବେକାର ଆବେଗ, ଉଚ୍ଛ୍ୱାସ, ମାଦକତା, ରୋମାଣ୍ଟିକ୍ ତେଜ ଆଉ କ'ଣ ଫେରିବ ?

ଏସବୁ ଆମ ମହାନ ଗୁରୁମାନଙ୍କ କୃପା ବୋଲି ମୁଁ ମନେକରେ । ସେମାନଙ୍କ ବିଷୟରେ ଲେଖିଲେ ବହୁପୃଷ୍ଠା ବ୍ୟାପି ଗ୍ରନ୍ଥ ହୋଇଯିବ । ସେମାନେ ଥିଲେ ଯଥାର୍ଥରେ ମନ୍ତ୍ରଦାତା ଯୋଗୀ । ସେମାନଙ୍କମଧ୍ୟରୁ ଆମ ପ୍ରଫେସର ପ୍ରଖ୍ୟାତ ଭାଷାବିତ୍ ଡ଼କ୍ଟର କୁଞ୍ଜବିହାରୀ ତ୍ରିପାଠୀ, ପ୍ରଖ୍ୟାତ ସଂସ୍କୃତ ବିଦ୍ୱାନ ଡ଼କ୍ଟର ବେଣୀମାଧବ ପାଢ଼ୀ ଏବଂ ଗୁରୁ ସୀତାରାମ ମହାପାତ୍ର ଆଜି ଇହଧାମରୁ ବିଦାୟ ନେଲେଣି । କେବଳ ଗୁରୁ ଡ଼କ୍ଟର ସୁଦର୍ଶନ ଆଚାର୍ଯ୍ୟ ଏବଂ ଗୁରୁ ଡ଼କ୍ଟର ନାରାୟଣ ଶତପଥୀ ଈଶ୍ୱରଙ୍କ କୃପାରୁ ବଞ୍ଚି ରହି ଆମକୁ ରାସ୍ତା ଦେଖାଇ ଚାଲିଛନ୍ତି । ବ୍ରତ ପ୍ରେରିତ ଆମ ଗୁରୁମାନେ ଯଥାର୍ଥରେ ଆମକୁ ଶିକ୍ଷାବ୍ରତୀ କରିବା ଲାଗି ଆପଣାକୁ ସମର୍ପଣ କରି ଦେଇଥିଲେ । ରାସ୍ତା ଚାଲିବାର ସାହସ ଦେଉଥିଲେ । ଚିରଦିନ ସେମାନେ ଆମ ହୃଦୟରେ ବଞ୍ଚି ରହିବେ । ଯଥାର୍ଥ ଗୁରୁଙ୍କର କ'ଣ ମୃତ୍ୟୁ ହୁଏ ?

ବଡ଼ ସୌଭାଗ୍ୟର ବିଷୟ, ଯେଉଁମାନେ ଆଜି ଆମେ ଈଶ୍ୱରଙ୍କ କୃପାରୁ ବଞ୍ଚିରହିଛୁ ସେମାନଙ୍କୁ ନେଇ ଏକ ଭାବ ମିଳନ ଏବଂ ସ୍ମୃତି ହେଜିବା ଲାଗି ଯେଉଁ ବନ୍ଧୁ ମିଳନର ଆୟୋଜନ କରିଥିଲେ ମୁଁ ସେମାନଙ୍କୁ ଆନ୍ତରିକ ଧନ୍ୟବାଦ ଦେଉଛି । ଏଭଳି ବନ୍ଧୁ ମିଳନର ଗୁରୁତ୍ୱ ଯଥେଷ୍ଟ ବେଶୀ । ଆମ ଓଡ଼ିଆ ବିଭାଗ ଆଜି ପଚାଶ ବର୍ଷରେ ପଦାର୍ପଣ କରିଛି । ଭାବିଲେ ଖୁବ୍ ଖୁସି ଲାଗୁଛି । ଖୁବ୍ ଦୀର୍ଘ ଓ ପଲ୍ଲବିତ ସେହି ସୁଦୀର୍ଘ ଯାତ୍ରାପଥ । ଆଜି ବିଭାଗରେ ଯେଉଁମାନେ ଅଧ୍ୟାପକ, ଛାତ୍ର, ଗବେଷକ, କର୍ମଚାରୀ- ସମସ୍ତଙ୍କୁ ଏହି ଅବକାଶରେ ଅଭିନନ୍ଦନ ଜ୍ଞାପନ କରୁଛି ଏବଂ ବିଭାଗର ଉତ୍ତରୋତ୍ତର ଉନ୍ନତି କାମନା କରୁଛି ।

●

*ବାଲେଶ୍ୱର*

# ଶ୍ରେଷ୍ଠ ତୀର୍ଥ: ଭଞ୍ଜବିହାର

ସୁଶ୍ରୀ ଅମିୟବାଳା ପଟ୍ଟନାୟକ

ସ୍ନାତକ ଶ୍ରେଣୀର ପରିସମାପ୍ତି ପରେ ପ୍ରାୟତଃ ଛାତ୍ରଛାତ୍ରୀ ଶିକ୍ଷାର ବିସ୍ତାରିତ ପରିଧି ଭିତରକୁ ପାଦ ବଢ଼ାଇଥା'ନ୍ତି, ସେମାନଙ୍କର ଅସରନ୍ତି ସ୍ୱପ୍ନ ଓ ସମ୍ଭାବନାକୁ ରୂପ ଦେବା ପାଇଁ । ଆଉ ଏକ ସ୍ୱପ୍ନିଳ ପୃଥିବୀ ତାଙ୍କୁ ହାତ ଠାରି ଡାକିଥାଏ । ସେହିପରି ଏକ ସୁଯୋଗ ପାଇଁ ମୁଁ ଅପେକ୍ଷା କରି ରହିଥିଲି । ତଥାକଥିତ ହିସାବ-ନିକାଶର ଗଣିତ ବୁଝି ପାରିନଥିବା ମୋ ପରି ଜଣେ ସର୍ଜନ ମନସ୍କା ଛାତ୍ରୀ ବାଛି ନେଇଥିଲା ଭଞ୍ଜବିହାରର ଭାଷା-ସାହିତ୍ୟ ବିଭାଗକୁ ।

ସାହିତ୍ୟର ଭାବଭୂମିରେ ମୋ ଜୀବନ ଗଢ଼ା ଯାଇଥିଲା ବୋଲି ବୋଧେ ଓଡ଼ିଆ ଭାଷା ସାହିତ୍ୟ ବିଭାଗର ପ୍ରତିଟି କାର୍ଯ୍ୟ, ପ୍ରତିଟି କଥା ମତେ ଚମତ୍କାର ଓ ଅପୂର୍ବ ଲାଗୁଥିଲା ଏବଂ ସେଠାରେ ହିଁ ମୋ ସାହିତ୍ୟିକ ଜୀବନର ଶିଳାନ୍ୟାସ ହୋଇଥିଲା । ଖଡ଼ି ଛୁଇଁଥିଲି ସେଦିନ ସେଠାରେ ସାହିତ୍ୟର ପ୍ରଥମ ବର୍ଣ୍ଣ ! ଓଡ଼ିଆ ବିଭାଗରେ ଓଡ଼ିଆ ଭାଷାର ଛାତ୍ରଛାତ୍ରୀମାନଙ୍କ ମଧ୍ୟରେ ଦେଖିଥିଲି - ଏକ କଳାତ୍ମକ ଆଗୁସାର ପଣ ଏବଂ ଏକ ନ୍ୟାୟୋଚିତ ସମର୍ପଣ ଭାବ ! ଭାଷା ସାହିତ୍ୟ ଅଧ୍ୟୟନ, ସାହିତ୍ୟ ସାଧନା - ଏକ ଯଜ୍ଞ ଲବ୍ଧ ପୁଣ୍ୟ ଫଳ ଠାରୁ କୌଣସି ଗୁଣରେ କମ୍ ନୁହେଁ; ଏକଥାକୁ ମନରେ ରଖି ସାହିତ୍ୟିକ ଜୀବନ ଆରମ୍ଭ କରିଥିଲି - ସ୍ୱପ୍ନ ଏବଂ ସଂକଳ୍ପ ଦୁହେଁ ମିଶି ଏକ ହୋଇଯାଇଥିଲେ ।

ଭଞ୍ଜବିହାର -ମୋର ଅସରନ୍ତି ସ୍ୱପ୍ନର ପ୍ରବାହ ! ପକ୍ଷୀଟିଏ ପରି ଉଡ଼ି ବୁଲୁଥିବା ମନ ତନ୍ନ ତନ୍ନ କରି ଦେଖୁଥିଲା ଭାଷା ସାହିତ୍ୟ ବିଭାଗର ଥାକ ଥାକ ତାଳପତ୍ର ପୋଥିର ଆଲମାରୀ । ଗ୍ରନ୍ଥାଗାର ଭିତରୁ ବାହାରି ଆସୁଥିଲେ ସାରଳା ଦାସ, ଜଗନ୍ନାଥ ଦାସ, ଉପେନ୍ଦ୍ର ଭଞ୍ଜ, କବିସୂର୍ଯ୍ୟ, ଦୀନକୃଷ୍ଣ, ଅଭିମନ୍ୟୁ ସାମନ୍ତସିଂହାର । ସାହିତ୍ୟକୁ ଜାଣିବା, ସାହିତ୍ୟ ପଢ଼ିବା ନିଶା ମତେ ଉଦ୍‌ବେଳିତ କରୁଥିଲା । ସବୁକଥା ଜାଣିବା ପାଇଁ ମୁଁ ଆତ୍ମହରା ହୋଇ ଉଠିଥିଲି । ଆଉ ସମୟର ନଈ ବହି ବହି ଚାଲିଥିଲା ।

ସେତେବେଳେ ଓଡ଼ିଆ ଭାଷା-ସାହିତ୍ୟ ବିଭାଗରେ ପ୍ରଫେସର ପଦପଦବୀ ମଣ୍ଡନ କରିଥିଲେ ଯଶସ୍ୱୀ ପଣ୍ଡିତ ଓ ମାନ୍ୟଗଣ୍ୟ ସାହିତ୍ୟିକ ପ୍ରଫେସର୍ କୁଞ୍ଜବିହାରୀ ତ୍ରିପାଠୀ, ପ୍ରଫେସର୍ କାହ୍ନୁଚରଣ ମିଶ୍ର, ପ୍ରଫେସର ବେଣୀମାଧବ ପାଢ଼ୀ, ପ୍ରଫେସର୍ ସୀତାରାମ ମହାପାତ୍ର ଏବଂ ପ୍ରଫେସର୍ ସୁଦର୍ଶନ ଆଚାର୍ଯ୍ୟ । ଏମାନଙ୍କର ପ୍ରଜ୍ଞାଶୀଳତାର

ପଟାନ୍ତର ନଥିଲା । ସେମାନଙ୍କ ଚିନ୍ତା ଓ ଚେତନାରେ ଆମେ ଉଦ୍‌ବୁଦ୍ଧ ହେଉଥିଲୁ....ମୁଗ୍ଧ ବିଭୋର ହେଉଥିଲୁ ।

ଝାଉଁବଣ ଫାଙ୍କରେ ଶିରିଶିରି ପବନ ବହି ଆସୁଥିଲା । ଓଡ଼ିଆ ବିଭାଗ ପାଦ ତଳେ ବିସ୍ତୀର୍ଣ୍ଣ ବାଲୁକାରାଶି, ଗୁଡ଼କଙ୍କ, ଶାମୁକା ବିଛାଇ ହୋଇ ପଡ଼ିଥିଲା- ରାତି ହୋଇ ଚାରିଆଡ଼ ନିସ୍ତବ୍ଧ ହୋଇଗଲେ ଗୋପାଳପୁର ସମୁଦ୍ର ଲହରୀର ଶବ୍ଦ ଶୁଣାଯାଉଥିଲା । ଚାରିଆଡ଼ ଏକ କାବ୍ୟିକ ଏବଂ ଛାୟା ଶୀତଳ ପରିବେଶ । ଚାନ୍ଦ ଉଇଁଲେ ଭଞ୍ଜବିହାର ହୋଇ ଯାଉଥିଲା ରହସ୍ୟ ରୋମାଞ୍ଚର ଅଳକାପୁରୀ ।

ପ୍ରାକୃତିକ ସୌନ୍ଦର୍ଯ୍ୟଭରା ଭଞ୍ଜବିହାରର ତୁଳନା ନଥିଲା ମୋ ପାଇଁ ସେଦିନ । ଆଜି ବି କେବେ କେମିତି ଦେଖିଲେ ଭଞ୍ଜବିହାରକୁ ବିସ୍ମୟ ଚକିତ ନୟନରେ ମୁଁ ଅନାଇ ରହୁଛି । ଏଠି ରାତ୍ର ଆସେ, ଭୋର ଆସେ । ମୋହାତୀତ ମୁହୂର୍ତ୍ତରେ ମାତା ଏବଂ ମାତୃଭାଷା ଏକ ଓ ଅଭିନ୍ନ ବୋଲି ଜାଣିଥିଲି; କିନ୍ତୁ ଭାଷା ଓ ସାହିତ୍ୟର ବିଶାଳତାକୁ ଶ୍ରେଣୀ ପ୍ରକୋଷ୍ଠରେ ବସି ଅନୁଭବ କରିବା ଏକ ନିଆରା କଥା ଥିଲା । ତା'ର କଳାତ୍ମକ ଅଭିବ୍ୟକ୍ତିକୁ ପ୍ରାଣ ପଣେ ଆହରଣ କରିବାରେ ତମାମ ସମୟ ବିତି ଯାଇଥିଲା ।

ଶୋକ...ଶ୍ଳୋକ, ପ୍ରଣୟ....ପ୍ରବଚନ କୋହଲା କୁହୁଡ଼ି ଭିତରେ କାବ୍ୟପୁରୁଷ ହୋଇ ଘୂରି ବୁଲୁଥିଲେ ।

ଆଜି ସେହି ମୋହମୁଗ୍ଧ ସମୟ ଅତିକ୍ରାନ୍ତ ।

ଆଜି ମୁଁ ଶିକ୍ଷୟିତ୍ରୀ, ଲେଖିକା । ଜୀବନକୁ ସବୁକିଛି ଦେଇ ଭର୍ତ୍ତି କରି ଦେଇଥିବା ଭଞ୍ଜବିହାର ଆଜି ନେପଥ୍ୟ ନାୟକ ।

ଭଞ୍ଜବିହାରର ଛାତ୍ରୀଟିଏ ହୋଇ ତା'ର ଲାଲ ପାଣିଚିଆ ଖରାରେ ଘୂରି ବୁଲିବା ଆଉ ଜୀବନରେ କଦାପି ସମ୍ଭବପର ହୋଇପାରିବ ନାହିଁ । ତଥାପି କେମିତି କେଜାଣି ଭଞ୍ଜବିହାର କେଉଁଠି ଟିକିଏ ଦରଜ ହୋଇ ଛାତି ଭିତରେ ଲଟକି ରହିଛି । ଯାହା ମତେ ଭଞ୍ଜବିହାରର ଭାଷା-ସାହିତ୍ୟ ବିଭାଗକୁ ସବୁବେଳେ ମନେ ପକାଇଦିଏ । ମନ ଭିତରେ କଳକଳ ଛଳଛଳ ହୋଇ ବହିଯାଏ ଅପାଶୋରା ସମୟର ନଈ । ଆଖି ଲୁହ ଛଳଛଳ ହୋଇଯାଏ ।

ଭଞ୍ଜବିହାରର ଓଡ଼ିଆ ଭାଷା ସାହିତ୍ୟ ବିଭାଗ ମୋ ପାଇଁ ଅବିସ୍ମରଣୀୟ । ସେ ମତେ ଦେଇଛି- ଅଜସ୍ର ସମ୍ମାନ-ସମ୍ବର୍ଦ୍ଧନା, ଆଉ ମୁଁ ତାକୁ ଦେଇଛି ମୋର ଶିକ୍ଷାକ୍ଷେତ୍ରର ମାନ୍ୟତା ! ତୀର୍ଥକ୍ଷେତ୍ରର ପ୍ରସିଦ୍ଧି !

ଗାଆଁ, ମାଆ ଆଉ ମାଟିର ଡାକରେ ସେ ମତେ ଉଚ୍ଛନ୍ନ କରିଛି । ତା'ରି ଭିତରୁ ମୋ ଆଡ଼କୁ ବହି ଆସିଛି ମମତାମୟୀ ମା'ର ସ୍ରୋତ !

ଭାଷା- ସାହିତ୍ୟ ବିଭାଗ ମତେ ସୁନ୍ଦର କରି ଗଢ଼ିଥିଲେ ବୋଲି ମୁଁ କେନ୍ଦ୍ର ସାହିତ୍ୟ ଏକାଡ଼େମୀର ଅଦ୍ୱିତୀୟା ଅନୁବାଦିକା ଭାବରେ ବିଜୟିନୀ ହୋଇପାରିଲି ୨୦୧୧ ମସିହାରେ । ୨୦୧୩ ମସିହାରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ସ୍ୱନକ୍ଷତ୍ର ଉତ୍ସବରେ ମତେ ଅଙ୍ଗବସ୍ତ୍ର ପ୍ରଦାନ କରି ସମ୍ମାନିତ କରିଥିଲେ ମହାମହିମ ରାଜ୍ୟପାଳ ତଥା ବିଶ୍ୱବିଦ୍ୟାଳୟ କୁଳାଧିପତି ଶ୍ରୀ ଏସ୍.ସି. ଜମିର୍ । ପୁରାତନ ଅଥଚ ସମ୍ଭ୍ରାନ୍ତ ସାହିତ୍ୟିକ ଅନୁଷ୍ଠାନ 'ପ୍ରଜାତନ୍ତ୍ର ପ୍ରଚାର ସମିତି'ରୁ ଶ୍ରେଷ୍ଠ ଅନୁବାଦିକା ପୁରସ୍କାର ପାଇ ମୋ ସାହିତ୍ୟିକା ଜୀବନ ଧନ୍ୟ ହୋଇଥିଲା । ସମ୍ବର୍ଦ୍ଧନା ଜ୍ଞାପନ କରିଥିଲେ – ଉତ୍କଳ ସାହିତ୍ୟ ସମାଜ, ଗଙ୍ଗାଧର ରଥ ଫାଉଣ୍ଡେସନ, ସାରଳା ସାହିତ୍ୟ ସଂସଦ ଏବଂ ଶେଷରେ ମୋ'ରି ବିଭାଗ-ଭଞ୍ଜବିହାର, ଓଡ଼ିଆ ବିଭାଗ ।

ଆଜି ଏସବୁ କଥାକୁ ମନେ ମନେ ବିଶ୍ଳେଷଣ କଲେ ମନେହୁଏ – ଅଲକ୍ଷ୍ୟରେ – ଭଞ୍ଜବିହାରର ଭାଷା-ସାହିତ୍ୟ ବିଭାଗ ହିଁ ରହି ରହି ମତେ ଉତ୍ସାହିତ କରିଥିଲା – ଅନୁପ୍ରେରିତ କରିଥିଲା, ସୁଯୋଗ୍ୟ କରିଥିଲା ।

ଭଞ୍ଜବିହାର : ଭାଷା ସାହିତ୍ୟ ବିଭାଗ ମୋର ପ୍ରିୟତମ ମିତ୍ର !
ଭଞ୍ଜବିହାର: ମୋର ସାଥୀ ସହୋଦର, ପଥ ପ୍ରଦର୍ଶକ ।
ଶାମୁକାରୁ ମୁକ୍ତା ହେବା ଅବସର ସେ ମତେ ପ୍ରଦାନ କରିଛି ।
ପ୍ୟୁପାରୁ କରିଛି ପ୍ରଜାପତି !
ପାଷାଣରୁ ଅହଲ୍ୟା କରିଛି ମତେ ଭଞ୍ଜବିହାର ଭାଷା-ସାହିତ୍ୟ ବିଭାଗ ।
ସେହି ପୁଣ୍ୟତିଥିକୁ ସ୍ମରଣ କରି – କବିତାଟିଏ ।

"ଏ ମାଟିକୁ ଛୁଇଁଦେଲେ ମନେ ପଡ଼ିଯାଏ ମୋର
ଫୁଲପକା ପିଲାଦିନ !
ଏ ମାଟି ଦେଇଛି ମତେ ଈଶ୍ୱରଙ୍କ ପରି କେତେ
ଅକୃପଣ ଦାନ !
ଏ ମାଟି କହିଛି ମୋର କାନେ କାନେ କେତେ କଥା
ଅକୁହା ବାରତା !
ଏ ମାଟି ଦେଇଛି ଆଜି କୋମଳ କୁସୁମ ହାର
କେୟୁର କଙ୍କଣ !

ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଭାଷା ଓ ସାହିତ୍ୟ ବିଭାଗ, ବ୍ରହ୍ମପୁର ମୋ ପାଇଁ ଅନନ୍ୟ ଓ ଅସାଧାରଣ ।

●

*ଚର୍ଚ୍ଚ ରୋଡ଼୍, ବ୍ରହ୍ମପୁର-୭୬୦୦୦୧*

# ସ୍ମୃତିର ଫଳକରେ ବିସ୍ମୃତିର ପ୍ରତିଲେଖ

ଡ. ହରପ୍ରସାଦ ମିଶ୍ର

ଓଡ଼ିଆରେ ବହୁ ପ୍ରଚଳିତ ଗୋଟିଏ ଉକ୍ତି ଅଛି – "ମଣିଷ ଯାହା ଚାହେଁ, ତା' ପାଏନା; ଯାହା ପାଏ, ତା' ଚାହେଁନା ।" ଅଧିକାଂଶ ବ୍ୟକ୍ତିଙ୍କ ଜୀବନରେ ଉକ୍ତିଟିର ସତ୍ୟତା ଅନୁଭୂତ ହେଉଥିଲେ ହେଁ, ଜଣେ ଜଣେ ଯୋଗଜନ୍ମାଙ୍କ ଜୀବନରେ ଏହାର ବ୍ୟତିକ୍ରମ ମଧ୍ୟ ପରିଲକ୍ଷିତ ହୋଇଥାଏ । ଏପରି ବ୍ୟତିକ୍ରମୀ ବ୍ୟକ୍ତିମାନେ ଉଚ୍ଚଭାଗ୍ୟ ନେଇ ଜନ୍ମ ହୋଇଥା'ନ୍ତି ବୋଲି ନିଶ୍ଚିତ ଭାବେ କୁହାଯାଇପାରେ । ଏଭଳି ଭାଗ୍ୟବାନ୍ ବ୍ୟକ୍ତିମାନଙ୍କ ମଧ୍ୟରୁ ମୁଁ ଯେ ଅନ୍ୟତମ ଥିଲି, ଏହା ଏଇ ମାତ୍ର ଅଧ୍ୟାପନା ଜୀବନରୁ ଅବସର ନେବା ପରେ ଯାଇ ହିଁ ମୁଁ ମୋ ଅତୀତ କର୍ମ-ପ୍ରବାହର ସ୍ମୃତିଚାରଣ ଅବସରରେ ସ୍ପଷ୍ଟ ଭାବେ ଅନୁଭବ କରିପାରିଛି । ପୁରୀର ଅନତି ଦୂରରେ ଥିବା ଏକ ଅଖ୍ୟାତ ପଲ୍ଲୀ ଗ୍ରାମରେ ଜନ୍ମଗ୍ରହଣ କରି ସମ୍ପୂର୍ଣ୍ଣ ଗ୍ରାମୀଣ ପରିବେଶରେ ପାଠପଢ଼ା ଆରମ୍ଭ ପୂର୍ବକ ମାଟ୍ରିକ୍ ପାଶ୍ କରିଥିବା ମୋ ପରି ସରଳ ଗ୍ରାମ୍ୟ-ବାଳକଟିଏ ପରବର୍ତ୍ତୀ ସମୟରେ ପୁରୀ ସାମନ୍ତ ଚନ୍ଦ୍ରଶେଖର ମହାବିଦ୍ୟାଳୟରେ ଉଚ୍ଚଶିକ୍ଷା ପାଇବା ଲକ୍ଷ୍ୟରେ ପ୍ରବେଶ କରିବା ଏବଂ ସେଠାରେ ଆଇ.ଏ. ଓ ଓଡ଼ିଆ ଅନର୍ସ ରଖି ସ୍ନାତକ ଶିକ୍ଷା-ସମାପ୍ତ କରିବା ଏହା ମୋ ପାଇଁ ନିହାତି ମାମୁଲି ବା ସାଧାରଣ ଘଟଣା ଥିଲା । ମାତ୍ର ସ୍ନାତକ ଶିକ୍ଷା ସମାପ୍ତ ହେବା ପରେ ପରବର୍ତ୍ତୀ ସମୟରେ ଯାହା ସବୁ ଘଟିଲା, ତାହା ମୋ ପାଇଁ ସମ୍ପୂର୍ଣ୍ଣ ଅପ୍ରତ୍ୟାଶିତ ଘଟଣା ଥିଲା ଏବଂ ତଦ୍ଦ୍ୱାରା ମୋ ପରବର୍ତ୍ତୀ ଜୀବନର ଗତିପଥ ସମ୍ପୂର୍ଣ୍ଣ ବଦଳିଯାଇଥିଲା ବୋଲି ଏବେ ମୁଁ ଆତ୍ମସମୀକ୍ଷାରୁ ଉପଲବ୍ଧ କରୁଛି । କାରଣ ବାଣୀବିହାରରେ ସ୍ନାତକୋତ୍ତର ଶିକ୍ଷାଲାଭ କରିବା ପାଇଁ ମନସ୍ଥିର କରିସାରିଥିବା ସତ୍ତ୍ୱେ, ଏଥି ନିମନ୍ତେ ଉଦ୍ଦିଷ୍ଟ ଅନୁମତି ପତ୍ର ବିଳମ୍ବରେ ଆସିବା ତଥା ଏହା ପୂର୍ବରୁ ଭଞ୍ଜବିହାରରେ ସ୍ନାତକୋତ୍ତର ଓଡ଼ିଆ ପଢ଼ିବା ପାଇଁ ଆଦେଶପତ୍ର ଆସି ପହଞ୍ଚିଯିବା – ଏହା ନିଶ୍ଚିତ ମୋ ପାଇଁ ବିଧି ନିର୍ଦ୍ଧାରିତ ଥିଲା । ଏହାକୁ ଶେଷରେ ମୁଁ ମାନିନେବାକୁ ବାଧ୍ୟ ହୋଇଥିଲି । ଫଳରେ ୧୯୭୬ ମସିହାରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଓଡ଼ିଆ ଏମ୍.ଏ. ଶ୍ରେଣୀରେ ନାମ ଲେଖାଇ ପାଠପଢ଼ିବାର ସୁଯୋଗ ପାଇଥିଲି । ଏଠାରେ ଯୋଗଦାନ କରିବା ପରେ ମୋ ଜୀବନର ଗତିପଥ ସମ୍ପୂର୍ଣ୍ଣ ଭାବେ ବଦଳି ଯାଇଥିଲା । ପରବର୍ତ୍ତୀ ସମୟରେ ମୋ ଜୀବନରେ ଯାହା ସବୁ ଘଟିଲା, ସେ ସବୁ ମୋ ପାଇଁ ସମ୍ପୂର୍ଣ୍ଣ ଅଭାବିତ ଘଟଣା ଥିଲା ବୋଲି ଏବେ ମୁଁ ଅନୁଭବ କରୁଛି ।

ଭଞ୍ଜବିହାରର ସୁରମ୍ୟ, ଶାନ୍ତ ପରିବେଶ ଜ୍ଞାନାର୍ଜନ ନିମନ୍ତେ ମୋ ପାଇଁ ବେଶ୍ ଅନୁକୂଳ ହୋଇଥିଲା । ସେଥିରେ ପୁଣି ପ୍ରଚଣ୍ଡ ଜ୍ଞାନୀ, ଗୁଣୀ, ଗୁରୁମାନଙ୍କ ନିଷ୍ଠାପର ଶିକ୍ଷାଦାନ ପ୍ରଣାଳୀ ମୋତେ ଗଭୀର ଭାବେ ଅନୁପ୍ରାଣିତ / ପ୍ରଭାବିତ କରିଥିଲା । ସେସବୁକୁ ମୁଁ ହାତଛଡ଼ା ନକରି ନିଜକୁ ସମ୍ପୂର୍ଣ୍ଣ ଭାବେ ସେହି ଶୈକ୍ଷିକ ବାତାବରଣ ଭିତରେ ସାମିଲ କରିନେବାକୁ ଉଦ୍ୟମ କରି ସେଥିରେ ଅନେକାଂଶରେ ସଫଳ ହୋଇଥିଲି । ଓଡ଼ିଆ ବିଭାଗରେ ଶିକ୍ଷାଦାନ କରୁଥିବା ଜ୍ଞାନୀ, ଗୁଣୀ ଗୁରୁମାନେ ସେତେବେଳେ ନିଜ ନିଜ କ୍ଷେତ୍ରରେ ବେଶ୍ ସୁନାମ ଅର୍ଜନ କରି ସମଗ୍ର ଓଡ଼ିଶାରେ ଖ୍ୟାତିଲାଭ କରିଥିଲେ । ଗୁରୁମାନଙ୍କ ମଧ୍ୟରେ ପ୍ରଫେସର ଡ. କାହ୍ନୁଚରଣ ମିଶ୍ର, ଡ. ବେଣୀମାଧବ ପାଢ଼ୀ, ଡ. ସୁଦର୍ଶନ ଆଚାର୍ଯ୍ୟ, ଡ. ସୀତାରାମ ମହାପାତ୍ର, ଡ. ଗଗନେନ୍ଦ୍ରନାଥ ଦାଶ, ଡ. ଶ୍ରୀନିବାସ ମିଶ୍ର ପ୍ରମୁଖ ପ୍ରଚଣ୍ଡ ପ୍ରଜ୍ଞାର ଅଧିକାରୀ ଥିଲେ ଓ ଶିକ୍ଷାଦାନ କ୍ଷେତ୍ରରେ ବେଶ୍ ପାରିଦର୍ଶିତାର ପ୍ରମାଣ ଦେଉଥିଲେ । ଏହାଛଡ଼ା ବିଭିନ୍ନ ସମୟରେ ଭିଜିଟିଙ୍ଗ୍ ପ୍ରଫେସର୍‌ମାନଙ୍କର ଆଗମନ ଘଟୁଥିଲା । ଏହି ସୂତ୍ରରେ ପ୍ରଫେସର୍ ଜୟକୃଷ୍ଣ ମିଶ୍ର, ଡ. କୁଞ୍ଜବିହାରୀ ତ୍ରିପାଠୀ, ଡ. ଖଗେଶ୍ୱର ମହାପାତ୍ରଙ୍କ ଜ୍ଞାନଗର୍ଭ ଅଭିଭାଷଣ ଶୁଣିବାର ବିରଳ ସୌଭାଗ୍ୟ ମିଳିବା ସହ ସେମାନଙ୍କ ନିକଟ-ସାନ୍ନିଧ ଲାଭର ଅପୂର୍ବ ସୁଯୋଗ ମିଳିଥିଲା । ଚାହୁଁ ଚାହୁଁ କେତେବେଳେ ଦୁଇବର୍ଷ ଅତିକ୍ରାନ୍ତ ହୋଇଗଲା, ତାହା ଜଣାପଡ଼ି ନଥିଲା । ସ୍ନାତକୋତ୍ତର ଓଡ଼ିଆ ପରୀକ୍ଷାରେ ସର୍ବୋଚ୍ଚ ନମ୍ବର ରଖି ଦୁଇ ଦୁଇଟା ସ୍ୱର୍ଣ୍ଣପଦକ ଲାଭ କରିବା ମୋ ପାଇଁ ସମ୍ପୂର୍ଣ୍ଣ ଭାବେ ବିରଳ ଗୌରବ ଥିଲା- ଯାହା ମୁଁ କେବେ ଭାବି ନଥିଲି । ସେହିପରି ୧୯୭୯ ମସିହାରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗରେ ନିୟମିତ ଶିକ୍ଷାର୍ଥୀଙ୍କ ପାଇଁ ଏମ୍.ଫିଲ୍ ପାଠ୍ୟକ୍ରମ ଖୋଲିଥିଲା । ସେଥିରେ ପ୍ରଥମ ବ୍ୟାଚ୍ ଛାତ୍ର ଭାବେ ମୁଁ ଏମ୍.ଫିଲ୍.ପଢ଼ିବାର ବିରଳ ସୁଯୋଗ ଲାଭ କରିଥିଲି । ଭଞ୍ଜବିହାରରୁ ଏମ୍.ଫିଲ. ଡିଗ୍ରୀ ହାସଲ କରିବାର ୨/୩ ମାସ ପରେ ଅର୍ଥାତ୍ ୧୯୮୧ ମସିହା ଅକ୍ଟୋବର ମାସରେ ମୋତେ ସରକାରୀ କଲେଜରେ ଓଡ଼ିଆ ଅଧ୍ୟାପକ ଭାବେ ଯୋଗଦାନ କରିବାକୁ ନିଯୁକ୍ତିପତ୍ର ମିଳି ଯାଇଥିଲା । ସେଇ ସୂତ୍ରରେ ମୁଁ ଫୁଲବାଣୀ 'ସରକାରୀ ମହାବିଦ୍ୟାଳୟ'ର ଓଡ଼ିଆ ବିଭାଗରେ ଯୋଗଦାନ କରିଥିଲି । ୧୯୮୨ ମସିହାରେ ପୁନର୍ବାର ଉଚ୍ଚତର ଗବେଷଣା ନିମନ୍ତେ ମୁଁ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ସହ ଅନୁବନ୍ଧିତ ହୋଇ ଭାଷା ଉପରେ ମୋର ଗବେଷଣା କାର୍ଯ୍ୟ ଆରମ୍ଭ କରିଥିଲି । ପୂଜ୍ୟ ଗୁରୁ ଡ. ଗଗନେନ୍ଦ୍ରନାଥ ଦାଶଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ମାତ୍ର ୨ବର୍ଷ ମଧ୍ୟରେ ଗବେଷଣା କାର୍ଯ୍ୟ ଶେଷ କରି ଧାର୍ଯ୍ୟ ସମୟସୀମା ମଧ୍ୟରେ ମୁଁ ନିବନ୍ଧ ଉପସ୍ଥାପନ କରିବାକୁ ସମର୍ଥ ମଧ୍ୟ ହୋଇଥିଲି । ଶେଷରେ ୧୯୮୫ ମସିହାରେ ବ୍ରହ୍ମପୁର

ବିଶ୍ୱବିଦ୍ୟାଳୟରୁ ଡକ୍ଟରେଟ୍ ଡିଗ୍ରୀ ଲାଭ କରିବାକୁ ସମର୍ଥ ହେଲି । ବୋଧହୁଏ, ମୋ ପୂର୍ବରୁ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ଭାଷା ସମ୍ପର୍କରେ କେହି ଗବେଷଣା କରି ନିବନ୍ଧ ଉପସ୍ଥାପନ କରି ନଥିଲେ । ଏ କ୍ଷେତ୍ରରେ ମୁଁ ମୋ ପୂଜ୍ୟଗୁରୁ ଡକ୍ଟର ଗଗନେନ୍ଦ୍ରନାଥ ଦାଶଙ୍କ ପ୍ରଥମ ସ୍କଲାର୍ ଭାବେ ଓଡ଼ିଆ ଭାଷା ଉପରେ ଗବେଷଣା କରିବାର ବିରଳ ସୌଭାଗ୍ୟ ଲାଭ କରିବାକୁ ସମର୍ଥ ହୋଇପାରିଥିଲି ।

ଶେଷରେ ମୁଁ ଏତିକି କହିବାକୁ ଚାହେଁ ଯେ, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗ ମୋ ପାଇଁ ଥିଲା ଯଥାର୍ଥରେ ଏକ ବିଦ୍ୟାମନ୍ଦିର, ତୀର୍ଥ-କ୍ଷେତ୍ର । ସେଇ ପବିତ୍ର ମାଟିରେ ପାଦ ଦେବା ପରେ ମୋ ଜୀବନର ରୂପାନ୍ତର ଘଟିଥିଲା । ମୁଁ ଯଥାର୍ଥରେ ଭିନ୍ନ ମଣିଷଟିଏ ହୋଇ ସେଠାରୁ ବାହାରିଥିଲି । ସେଇ ପରିବର୍ତ୍ତିତ ପ୍ରକାଶ୍ୟର ସୁଦୃଢ଼ ଭିତ୍ତିଭୂମି ଉପରେ ସଞ୍ଚରଣଶୀଳ ରହି ଦୀର୍ଘ ୩୬ ବର୍ଷ ଅଗଣିତ ଛାତ୍ରଛାତ୍ରୀଙ୍କୁ ବିଦ୍ୟାଦାନ କରି ଅଶେଷ ଯଶ, ଖ୍ୟାତି ଓ ଗୌରବର ଅଧିକାରୀ ହେବାକୁ ସମର୍ଥ ହୋଇପାରିଥିଲି । ମୋ' ମଣିଷ ପଣିଆର ସୁନୀଳ ବିସ୍ତୃତିରେ ଯେଉଁ ଭଞ୍ଜବିହାରର ପ୍ରତ୍ୟକ୍ଷ ଅବଦାନ ନିହିତ ଅଛି, ସେଇ ପବିତ୍ର ଭୂମିକୁ ମୁଁ ଶେଷରେ ପ୍ରଣିପାତ ଜଣାଇ ରହୁଛି ।

•

*ଗଜପତି ନଗର, ପୁରୀ*

# ତମକୁ ମିଛ, ମତେ ସତ

**ଡ. କମ୍ବୁପାଣି ସାମନ୍ତ**

ତତ୍‌କାଳୀନ କଲେଜ (ଏବେର କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ମହାବିଦ୍ୟାଳୟ)ରୁ ୧୯୭୨ ମସିହାରେ ଓଡ଼ିଆ ସମ୍ମାନ ସହ ସ୍ନାତକ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେବା ପରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ସ୍ନାତକୋତ୍ତର ଓଡ଼ିଆ ବିଭାଗରେ ଯୋଗଦେଲି । ବ୍ରହ୍ମପୁର ସହରର ଭଡ଼ାଘରୁ ରଙ୍ଗେଇଲୁଣ୍ଡା କ୍ୟାମ୍ପସକୁ ନୂଆ ନୂଆ ବିଶ୍ୱବିଦ୍ୟାଳୟ ସ୍ଥାନାନ୍ତରିତ ହୋଇଥାଏ । ଋଷିକୁଲ୍ୟା ଓ ଯୋଗେନ୍ଦ୍ର -ଦୁଇଟି ଛାତ୍ରାବାସ । ଦ୍ୱିତୀୟ ବର୍ଷ ଋଷିକୁଲ୍ୟା ଛାତ୍ରାବାସର ରୁମ୍ ନଂ-୨୦ ମୋତେ ମିଳିଲା । ଓଡ଼ିଆ ବିଭାଗରୁ ଖ୍ୟାତନାମା ପ୍ରଫେସର୍ ଡ. କୁଞ୍ଜବିହାରୀ ତ୍ରିପାଠୀ ଅବସର ନେଇ ସାରିଥାଆନ୍ତି । ଆମେ ତାଙ୍କୁ ବିଦାୟ ସମ୍ବର୍ଦ୍ଧନା ଜ୍ଞାପନ କରିଥିଲୁ । ବିଭାଗରେ ଜଣେ ପ୍ରାଧ୍ୟାପକ ଡ. ବେଣୀମାଧବ ପାଢ଼ୀ ଏବଂ ଦୁଇ ଜଣ ଅଧ୍ୟାପକ - ସୁଦର୍ଶନ ଆଚାର୍ଯ୍ୟ ଓ ସୀତାରାମ ମହାପାତ୍ର । କିଛି ଦିନ ପରେ ପ୍ରଫେସର୍ ପଦ ପୂରଣ ହେଲା । ଡ. କାହ୍ନୁଚରଣ ମିଶ୍ର ପ୍ରଫେସର୍ ନିଯୁକ୍ତ ହେଲେ ।

ବିଭାଗରେ ଗୋଟିଏ ଶନିବାର ସେମିନାର ହୁଏ ଏବଂ ପରବର୍ତ୍ତୀ ଶନିବାର ଦିନ ଡିବେଟ୍ । ଏମିତି ନିୟମିତ ଚାଲୁଥିଲା । ବଡ଼ ଆକର୍ଷଣୀୟ ଲାଗୁଥିଲା । ପ୍ରବନ୍ଧପାଠ ଓ ପ୍ରଶ୍ନୋତ୍ତର ତଥା ଆଲୋଚନାରେ ଅପରାହ୍ଣ ଗଡ଼ି ଯାଉଥିଲା । ଥରେ ସେମିନାର୍‌ରେ ପ୍ରବନ୍ଧ ପଢୁଥିବା ଛାତ୍ର ପ୍ରଶ୍ନୋତ୍ତର ବେଳେ ପ୍ରବନ୍ଧ ପାଇଁ ଉପାଦାନ ସଂଗ୍ରହ କରିଥିବା ଗୋଟିଏ ପୁସ୍ତକର ନାମ ଉଲ୍ଲେଖ କଲେ । ପ୍ରଶ୍ନକର୍ତ୍ତା ସେ ବହିଟି ପଢ଼ି ନଥିଲେ । ଡ. ବେଣୀମାଧବ ପାଢ଼ୀ ସାର୍ ତାଙ୍କ ଉଦ୍ଦେଶ୍ୟରେ କହିଲେ- "ତୁମେ ଏମ୍.ଏ. ପଢ଼ିଲଣି, ସେ ବହିଟା ପଢ଼ି ନାହିଁ ବୋଲି ସେ କେମିତି ଜାଣିବେ ?" ସାର୍‌ଙ୍କ ଏଇ ଧାଡ଼ିଏ କଥାରେ ଏମ୍.ଏ. ପଢୁଥିବା ଛାତ୍ରର କର୍ତ୍ତବ୍ୟ ସମ୍ପର୍କରେ ଯେଉଁ ଦୃଷ୍ଟି ଓ ପ୍ରତ୍ୟାଶା ପ୍ରତିଫଳିତ ହୋଇଥିଲା, ତାହା ଅଧିକରୁ ଅଧିକ ପୁସ୍ତକ ଅଧ୍ୟୟନ କରିବା ପାଇଁ ଆମକୁ ସଚେତନ କରିଦେଇଥିଲା । ପ୍ରାବନ୍ଧିକ ବା ପ୍ରଶ୍ନକର୍ତ୍ତାଙ୍କ ନାମ ମୋର ଏବେ ମନେ ପଡୁନି । କିନ୍ତୁ ମନେ ଅଛି, ସାର୍‌ଙ୍କ ପାନଖିଆ ଓଠରେ ସ୍ମିତ ମୁଦ୍ରା ଦେଇ ଝରି ପଡ଼ିଥିବା କଥା ପଦକ - ଯାହା ମୋ ଚୈତନ୍ୟକୁ ଚିଆଁଇ ଦେଇଥିଲା । ଓଡ଼ିଆ, ଇଂରାଜୀ, ହିନ୍ଦୀ ଓ ସଂସ୍କୃତ ଭାଷାରେ ତଥା ଜ୍ଞାନ-ବିଜ୍ଞାନର ବିଭିନ୍ନ ବିଷୟର ବହୁ ପୁସ୍ତକ ମୁଁ ଅଧ୍ୟୟନ କଲି । ଯେତିକି ଅଧିକ ପଢୁଥାଏ, ସେତିକି ଜିଜ୍ଞାସା ବଢୁଥାଏ । ଅଧ୍ୟୟନ, ଅଧ୍ୟାପନା ଓ ଗବେଷଣା ପ୍ରତି ନିଷ୍ଠା ଗାଢ଼ ହେଉଥାଏ ।

ପ୍ରଫେସର୍ କାହ୍ନୁଚରଣ ମିଶ୍ର 'ବିଦଗ୍ଧ ଚିନ୍ତାମଣି' ପଢ଼ାଇବା ବେଳେ ଗୋଟିଏ ପଦର ପାଠ ଠିକ୍ ନଥିବା ଦର୍ଶାଇ କହିଲେ – "ଏମିତି ଅନେକ ଜାଗାରେ ଶୁଦ୍ଧପାଠର ଆବଶ୍ୟକତା ଅଛି । ମୁଁ ଲେଖୁଛି ବାପା– ପ୍ରାଚୀ ପ୍ରମାଦ, ଲେଖୁଛି ।" ସାର୍‌ଙ୍କର ମୌଳିକ ଓ ବିଚକ୍ଷଣ ଦୃଷ୍ଟି ପରବର୍ତ୍ତୀ ସମୟରେ ମୋ ପାଇଁ ଉପାଦେୟ ହୋଇପାରିଛି । ଏକାଧିକ ଛାପାପୁସ୍ତକ ଓ ତାଳପତ୍ର ପୋଥି ମିଳାଇ 'ରସିକ ହାରାବଳୀ' କାବ୍ୟର ଶୁଦ୍ଧପାଠ ନିରୂପଣ ଓ ଟୀକାକରଣ କରିବା ପାଇଁ ମୁଁ ସମର୍ଥ ହୋଇପାରିଛି ।

ଓଡ଼ିଶାର ବିଶିଷ୍ଟ ବିଦ୍ୱାନ୍ ପ୍ରଫେସର୍ ସୁଦର୍ଶନ ଆଚାର୍ଯ୍ୟ ଭଞ୍ଜ ସ୍ୱତନ୍ତ୍ର ପତ୍ର ପଢ଼ାଉଥିଲେ । ଛୁଟି ଦିନରେ ମଧ୍ୟ ବିଭାଗକୁ ଯାଇ କ୍ଲାସ୍ କରନ୍ତି । ବାଇଲାଡୁ ପାଣିଗ୍ରାହୀ, କୃଷ୍ଣକୁମାର ପଟ୍ଟନାୟକ, ବାଳକୃଷ୍ଣ ମହାପାତ୍ର, ରୋହିଦାସ ଶବର, ଲିଙ୍ଗରାଜ ଜେନା, କଲ୍ୟାଣୀ ଦାସ, ସବିତା ମହାନ୍ତିଙ୍କ ସମେତ ମୁଁ ଅର୍ଦ୍ଧ ବୃତ୍ତାକାରରେ ସାର୍‌ଙ୍କୁ ଘେରି ବସୁଥାଉଁ । 'କୋଟିବ୍ରହ୍ମାଣ୍ଡସୁନ୍ଦରୀ' କାବ୍ୟର ନିର୍ବାଚିତ ଛାନ୍ଦର ଆଲୋଚନା ହେଉଥାଏ । ଦିନେ ଗୋଟିଏ ପଦ 'ତହିଁ ଚାହିଁ ଗୋରୀ ଶ୍ୟାମଳ ଅବଳା ମେଳା ତପସ୍ୱିନୀ ତରକି' ଆଲୋଚନା ପର୍ଯ୍ୟାୟକୁ ଆସିଲା । ପଦଟିର ଅର୍ଥପ୍ରାଞ୍ଜଳତା, ଶବ୍ଦ ପ୍ରୟୋଗ ଓ ଅଳଙ୍କାରର ଯଥାର୍ଥତା ପ୍ରଭୃତି ବିଷୟରେ ଆମେ ନାନା ପ୍ରଶ୍ନ ପଚାରିଲୁ । ଅନେକ ବିତଣ୍ଡା ପ୍ରଶ୍ନ ମଧ୍ୟ । ସ୍ଥିର ଜଳରେ ଟେକାଟିଏ ପଡ଼ିଲେ ତରଙ୍ଗ ଉଚ୍ଛୁଳିଲା ପରି ଆମ ପ୍ରଶ୍ନରେ ସାର୍‌ଙ୍କ ଗଭୀର ପାଣ୍ଡିତ୍ୟ ଚଞ୍ଚଳ ହେଉଥିଲା । ତାଙ୍କ ଉତ୍ତରରେ ଜ୍ଞାନର ଗଭୀରତା ଓ ବହୁପାଠିତାର ପ୍ରତିଫଳନ ଘଟୁଥିଲା । ଗଭୀରତା ଓ ନାନାର୍ଥବାଚକତା ହେଉଛି ପଣ୍ଡିତଙ୍କ ଲକ୍ଷଣ ବୋଲି ଉପେନ୍ଦ୍ର ଭଞ୍ଜ କହିଛନ୍ତି । ତା'ର ଚଳନ୍ତି ଦୃଷ୍ଟାନ୍ତ ସାର୍‌ଙ୍କ ପାଖରେ ଆମେ ଦେଖୁଥିଲୁ । ସେହି ପଦ ଉପରେ ଆଲୋଚନାରେ ସାଢ଼େ ତିନି ଘଣ୍ଟା ବିତିଲା । କ୍ଲାସ୍ ବନ୍ଦ ରଖାଗଲା । ଆଲୋଚନା କିନ୍ତୁ ଅସମାପ୍ତ ରହିଲା । କ୍ଲାସ୍ ଆରମ୍ଭରେ ଯେଉଁ ସ୍ମିତ ହାସ୍ୟରେ ସାର୍ ଚୌକିରେ ବସିଥିଲେ, ଚାରି ଘଣ୍ଟାର ନିରବଚ୍ଛିନ୍ନ ଆଲୋଚନା ଶେଷରେ, ପୁଣି ଏତେ ବିତଣ୍ଡାର ଉତ୍ତର ରଖି ମଧ୍ୟ ଚୌକିରୁ ଉଠିଲା ବେଳକୁ ସାର୍‌ଙ୍କ ମୁହଁରେ ସେଇ ସ୍ମିତ ହାସ୍ୟ ! କ୍ଲାନ୍ତି କି ବିରକ୍ତିର ଦାଗ ଟିକିଏ ବି ଲାଗିନି । କି ଧୈର୍ଯ୍ୟ ! ପୁଣି ଅଧ୍ୟାପନାରେ କି ଆନନ୍ଦ ! ! ମୋର ଅଧ୍ୟାପକ ଜୀବନରେ ସେହି ଅନୁଭବ ହିଁ ଜାଗରୂକ ରହି ମୋତେ ଧୈର୍ଯ୍ୟ ଓ ଆନନ୍ଦ ପ୍ରଦାନ କରିଛି ।

ଜୀବନରେ କିଛି ହେବାର ସ୍ୱପ୍ନ ନେଇ ମୁଁ ବିଶ୍ୱବିଦ୍ୟାଳୟରେ ପ୍ରବେଶ କରିଥିଲି । ସେଇ ପ୍ରତ୍ୟାଶାରେ ହିଁ ମୋ ପିତାମାତା ମୋତେ ସହଯୋଗ ଓ ସାହସ ଦେଇଥିଲେ । କ'ଣ ହୋଇପାରିଲି କି ନାହିଁ, ଏବେ ବୟସର ଅପରାହ୍ନ ମୁଁ କହିପାରୁନି ।

କିନ୍ତୁ କିଛିରେ ହୋଇପାରି ନାହିଁ ବୋଲି ଅବସୋସ ନାହିଁ କି ଅସନ୍ତୋଷ ନାହିଁ । ଶୃଙ୍ଖଳିତ ଜୀବନଚର୍ଯ୍ୟା ଓ ଜ୍ଞାନାର୍ଜନ ଭିତରେ ନିୟୋଜିତ ରଖି ମୋ ବିଭାଗ ମୋତେ ସଫଳତାର ସୋପାନ ଚଢ଼ିବା ଶିଖାଇଥିଲା । ବିଶ୍ୱବିଦ୍ୟାଳୟ ଥିଲା ମୋର ମୋର ଗୁରୁକୁଳ, ବିଭାଗ ଥିଲା ଗୁରୁପୀଠ- ମୋର ପ୍ରେରଣା ପୀଠ । ଏଠାରୁ ପ୍ରାପ୍ତ ଶିକ୍ଷାକୁ ଉପଭୋଗରେ ଲଗାଇ ମୁଁ ସନ୍ତୁଷ୍ଟ ରହି ଯାଇ ନାହିଁ, ବରଂ ଉପଯୋଗ କରି ଆତ୍ମତୃପ୍ତି ଲଭିଛି । ଏବେ ମଧ୍ୟ ମୁଁ ନିଜକୁ ଏହି ବିଭାଗର ଛାତ୍ରଟିଏ ଭଳି ଅନୁଭବ କରୁଛି- ତାହା ହିଁ ମୋର ଆନନ୍ଦ ।

•

*ଲଣ୍ଡେଇ ସାହି, ଭଞ୍ଜନଗର*

# ସ୍ମୃତିର ପରଦାରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ

ଡ. ବିବେକାନନ୍ଦ ପାଣିଗ୍ରାହୀ

ପୂର୍ବ ଭାରତର ଶିକ୍ଷା ମାନଚିତ୍ରରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଏକ ଅସାମାନ୍ୟ ଗୌରବର ଅଧିକାରୀ । ଦକ୍ଷିଣ ଓଡ଼ିଶାର ଏକ ଜନସଂଗ୍ରାମରୁ ଏଇ ବିଶ୍ୱବିଦ୍ୟାଳୟ ଜନ୍ମଲାଭ କରିଥିଲା । ଓଡ଼ିଆ ଭାଷାର ପ୍ରଥିତଯଶା ମହାକବି ରୀତିଯୁଗର ମହାନ ସ୍ରଷ୍ଟା ଉପେନ୍ଦ୍ର ଭଞ୍ଜଙ୍କ ନାମାନୁସାରେ ଏହି ଶିକ୍ଷାୟତନର ନାମକରଣ ଭଞ୍ଜବିହାର ଏ ଜାତିର ଏକ ମହାକୀର୍ତ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ । ବଙ୍ଗୋପସାଗରର ଉତ୍ତାଳ ତରଙ୍ଗ, ପରିବ୍ୟାପ୍ତ ଝାଉଁ ଜଙ୍ଗଲ ଓ ଆମ୍ରକାନନର ମନୋରମ ପରିବେଶ ଏହି ଶିକ୍ଷାୟତନକୁ ଭୌଗୋଳିକ ସୌନ୍ଦର୍ଯ୍ୟ ବିମଣ୍ଡିତ କରିଅଛି । ଅନେକ ସ୍ୱପ୍ନ ଓ ସମ୍ଭାବନାର ଉଦାତ୍ତ ଉଚ୍ଚାରଣ ବହନ କରିଥିବା ଏହି ବିଶ୍ୱବିଦ୍ୟାଳୟର ପ୍ରାକ୍ତନ ଛାତ୍ର ହେବାର ଗୌରବ ମୋ ପାଇଁ ଅବିସ୍ମରଣୀୟ । ସ୍ମୃତିର ଆଇନାରେ ଭଞ୍ଜବିହାର ଅଧ୍ୟୟନର ସ୍ମୃତି ବେଶ୍ ରୋମାଞ୍ଚକର । ସୀମିତ ବିଭାଗକୁ ନେଇ ଆରମ୍ଭ ହୋଇଥିବା ଏଇ ବିଶ୍ୱବିଦ୍ୟାଳୟ ଏକଦା ଭାରତବର୍ଷର ବିରଳ ବିଦ୍ୱାନ୍, ଗବେଷକ ଓ ଶିକ୍ଷାବିତ୍‌ମାନଙ୍କର ତ୍ୟାଗ, ନିଷ୍ଠା ଓ ଶିକ୍ଷାଦାନରେ ଧନ୍ୟ ହୋଇଛି ।

ଏକ ସମୟରେ ଭଞ୍ଜବିହାରର ଗୋଡ଼ି ମାଟି, ପାଣି ପବନ, ପ୍ରକୃତି, କୋଠା, ଆମ୍ରବିଥି ଯେପରି କଥା କହୁଥିଲା । ତା'ର ପ୍ରତିଟି ଉପାଦାନରେ ଖେଳି ଯାଉଥିବା ଅନେକ ସ୍ପନ୍ଦନ । ସମଗ୍ର ରାଜ୍ୟର ବିଭିନ୍ନ ପ୍ରାନ୍ତରୁ ଛାତ୍ରଛାତ୍ରୀ ଆସି ଏଠାରେ ଅଧ୍ୟୟନ କରିବାର ଆନନ୍ଦମୟ ଅନୁଭୂତି ଭୁଲିହେବ ନାହିଁ । ଓଡ଼ିଆ ବିଭାଗରେ ଡ. କୁଞ୍ଜବିହାରୀ ତ୍ରିପାଠୀ, ଡ. କାହ୍ନୁଚରଣ ମିଶ୍ର, ଡ. ବେଣୀମାଧବ ପାଢ଼ୀଙ୍କ ପରି ବିଦ୍ୱାନ୍ ପ୍ରଫେସରମାନେ ଶିକ୍ଷାଦାନ କରୁଥିଲେ । ପରବର୍ତ୍ତୀ ସମୟରେ ଡ. ସୁଦର୍ଶନ ଆଚାର୍ଯ୍ୟ, ଡ. ଦାଶରଥି ଦାସ, ଡ. ଗଗନେନ୍ଦ୍ରନାଥ ଦାଶ, ଡ. ଶ୍ରୀନିବାସ ମିଶ୍ରଙ୍କ ପରି ବରିଷ୍ଠ ବିଦ୍ୱାନ୍‌ମାନେ ବିଭାଗର ଆଚାର୍ଯ୍ୟ ପଦବୀ ମଣ୍ଡନ କରି ବିଭାଗ ପାଇଁ ଗବେଷଣା ଓ ଶିକ୍ଷାଦାନ କ୍ଷେତ୍ରରେ ଗୌରବୋଜ୍ଜ୍ୱଳ ଅଧ୍ୟାୟ ସୃଷ୍ଟି କରିଥିଲେ । ପ୍ରବୀଣ ଅଧ୍ୟାପକମାନଙ୍କ ଦିଗ୍‌ଦର୍ଶନରେ ପାଞ୍ଚଶହରୁ ଅଧିକ ଗବେଷକ ଏହି ବିଭାଗରୁ ପିଏଚ୍.ଡି. ଡିଗ୍ରୀ ଲାଭର ଗୌରବ ଅର୍ଜନ କରିଛନ୍ତି । ବିଭିନ୍ନ ସମୟରେ ଡ. ଗୌରୀକୁମାର ବ୍ରହ୍ମା, ଡ. ଗୋପାଳଚନ୍ଦ୍ର ମିଶ୍ର, ଡ. ବୃନ୍ଦାବନଚନ୍ଦ୍ର ଆଚାର୍ଯ୍ୟ, ଡ. ଅସିତ୍ କବି, ଡ. ଜୟକୃଷ୍ଣ ମିଶ୍ର, ଡ. ଦେବୀପ୍ରସନ୍ନ ପଟ୍ଟନାୟକଙ୍କ ପରି ବିଦ୍ୱାନ୍ ପ୍ରଫେସରମାନେ ବିଭିନ୍ନ ସଂପାନରେ ଆସି ଏଠି ଉଦ୍‌ବୋଧନ ପ୍ରଦାନ କରିଛନ୍ତି ।

ଏହି ବିଭାଗ ଅନ୍ୟୁନ ପାଞ୍ଚଶହରୁ ଅଧିକ ଓଡ଼ିଆ ଅଧ୍ୟାପକ ସୃଷ୍ଟି କରିବାର ଗୌରବ ଅର୍ଜନ କରିଛି । ଏଇ ବିଭାଗରୁ ଜନ୍ମ ନେଇଥିଲା ଓଡ଼ିଶାରେ ପ୍ରଥମ ଥର ପାଇଁ ଭାଷାତତ୍ତ୍ୱ ପରି ଏକ ସ୍ୱତନ୍ତ୍ର ବିଭାଗ । ପ୍ରତିଭା ଓ ପାଣ୍ଡିତ୍ୟର ସଙ୍ଗମ ଥିଲା ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗ ।

ସେହିପରି ଆମ ପଡ଼ୋଶୀ ଇତିହାସ ବିଭାଗରେ ଭାରତବର୍ଷର ଯଶସ୍ୱୀ ପ୍ରତ୍ନତତ୍ତ୍ୱବିତ୍ ଡ. କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ପ୍ରଫେସର୍ ପଦ ମଣ୍ଡନ କରିଥିଲେ । ପରେ ପରେ ବିଲାତ ଫେରନ୍ତା ବିଦ୍ୱାନ୍ ଐତିହାସିକ ଡ. ଭବାନୀଚରଣ ରାୟ, ରାଷ୍ଟ୍ରୀୟ ଖ୍ୟାତିର ଅଧିକାରୀ ଡ. କାଞ୍ଚନ ମଜୁମଦାର ଓ ଡ. କୃଷ୍ଣଚନ୍ଦ୍ର ଜେନା । ଇତିହାସ କଂଗ୍ରେସର ବହୁ ଅଧିବେଶନ ଆୟୋଜନରେ ଏହି ବିଭାଗ ଥିଲା ଅନ୍ୟତମ ଅଗ୍ରଣୀ ।

ରାଜନୀତି ବିଜ୍ଞାନରେ ପ୍ରଫେସର ହରିହର୍ ଦାସ, ପ୍ରଫେସର ଭ୍ରମରବର ଜେନା ଓ ପ୍ରଫେସର ଜୟକୃଷ୍ଣ ବରାଳଙ୍କ ପରି ବିଦ୍ୱାନ୍ ବ୍ୟକ୍ତିତ୍ୱମାନେ ଅଧ୍ୟାପନା କରି ଶିକ୍ଷାର ମାନବୃଦ୍ଧିରେ ସହାୟକ ହୋଇଥିଲେ । ସେହିପରି ସାମ୍ବାଦିକତା ଓ ଗଣଯୋଗାଯୋଗ ଓ ଶ୍ରମ କଲ୍ୟାଣ ବିଭାଗ ଓଡ଼ିଶାରେ ପ୍ରଥମେ ଏହି ବିଶ୍ୱବିଦ୍ୟାଳୟରେ ଖୋଲା ଯାଇଥିଲା । ରସାୟନ ବିଜ୍ଞାନରେ ପ୍ରଫେସର୍ ମୂର୍ତ୍ତି, ପଦାର୍ଥ ବିଜ୍ଞାନରେ ପି.କେ.ମିଶ୍ର, ଗଣିତରେ ପ୍ରଫେସର୍ ନନ୍ଦକିଶୋର ପ୍ରଭୃତିଙ୍କ ଅବଦାନ ଅବିସ୍ମରଣୀୟ । ଉଲ୍ଲିଖିତ ଶିକ୍ଷାବିତ୍ ତଥା ପ୍ରଫେସରମାନଙ୍କ ବ୍ୟତୀତ ଏଇ ପଚାଶ ବର୍ଷ ମଧ୍ୟରେ ବହୁ ପ୍ରବୀଣ ଅଧ୍ୟାପକ ଏଇ ବିଶ୍ୱବିଦ୍ୟାଳୟର କୌଳିନ୍ୟ ଓ ଆଭିଜାତ୍ୟ ରକ୍ଷା କରିବାରେ ପ୍ରମୁଖ ଭୂମିକା ଗ୍ରହଣ କରିଛନ୍ତି ।

ଆଜି ବିଶ୍ୱବିଦ୍ୟାଳୟ ଶୈଶବ ଓ ଯୌବନ ଅତିକ୍ରମ କରିସାରିଛି । ପଛରେ ରହିଯାଇଛି ଅର୍ଦ୍ଧଶତାବ୍ଦୀର ଗୌରବମୟ ଇତିହାସ । ଅନେକ ଘଟଣାବହୁଳ ଅଧ୍ୟାୟକୁ ନେଇ ଆମେ ଗର୍ବିତ ନିଶ୍ଚୟ । ଶିକ୍ଷା ଜଗତର ଆଲୋକ ସ୍ତମ୍ଭ ପରି ଦଣ୍ଡାୟମାନ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଆଜି ପ୍ରବୀଣତା ଦାବି କରୁଛି । ରାଷ୍ଟ୍ରୀୟ ପ୍ରତିଯୋଗିତାରେ ଅଂଶଗ୍ରହଣ କରିଛି । ସୁବର୍ଣ୍ଣ ଜୟନ୍ତୀର ସ୍ୱର୍ଣ୍ଣ ମୁକୁଟ ପରିଧାନ କରିଛି । ଅନେକ ଅବିସ୍ମରଣୀୟ ସ୍ମୃତିର ମାର୍ବଲ ତୋରଣ ଉନ୍ମୋଚନ କରୁଛି ଆଜି ସୁବର୍ଣ୍ଣ ଜୟନ୍ତୀ । ହେ ମୋର ଶିକ୍ଷାଦାତ୍ରୀ ଜନନୀ, ଜୀବନ ଗଠନର କର୍ମଶାଳା, ଯୌବନର ସ୍ମୃତିତୀର୍ଥ, ସଫଳତାର ଅନନ୍ତ ପ୍ରେରଣା ! ତୁମକୁ ମୋ ଅୟୁତ ପ୍ରଣାମ, ଅୟୁତ ପ୍ରଣାମ ।

•

*ଲକ୍ଷ୍ମୀସାଗର, ଭୁବନେଶ୍ୱର*

# ପ୍ରେରଣାର ଉତ୍ସ

ଶ୍ରୀ ନିରଞ୍ଜନ ପଟ୍ଟନାୟକ

୧୯୭୩ ଖ୍ରୀଷ୍ଟାବ୍ଦଟି ମୋ ପକ୍ଷେ ଅତ୍ୟନ୍ତ ଶୁଭଙ୍କର ସମୟ ଥିଲା । କାରଣ ଏହି ବର୍ଷ ମୁଁ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟସ୍ଥ ସ୍ନାତକୋତ୍ତର ଓଡ଼ିଆ ବିଭାଗରେ ଅଧ୍ୟୟନ ପାଇଁ ସୁଯୋଗ ପାଇଥିଲି । ସେ ସମୟରେ ପ୍ରଫେସର ଡ. କାହ୍ନୁଚରଣ ମିଶ୍ର ବିଭାଗ ମୁଖ୍ୟ, ଡ. ବେଣୀମାଧବ ପାଢ଼ୀ, ଡ. ସୁଦର୍ଶନ ଆଚାର୍ଯ୍ୟ ଓ ଡ. ସୀତାରାମ ମହାପାତ୍ର ଅଧ୍ୟାପକ ଭାବେ ଅଧ୍ୟାପନା କରୁଥିଲେ । ଏହା ବ୍ୟତୀତ ଡ. ରମେଶ ଚନ୍ଦ୍ର ତ୍ରିପାଠୀ ଓ ଡ.ସତ୍ୟ ଆଚାର୍ଯ୍ୟ ଗବେଷକ ଭାବେ ଅଧ୍ୟାପନା କାର୍ଯ୍ୟରେ ମଧ୍ୟ ସହଯୋଗ କରୁଥିଲେ । ବିଭାଗରେ ନିୟମିତ ଭାବେ ଅଧ୍ୟୟନ ଓ ଅଧ୍ୟାପନା ହେଉଥିଲେ ମଧ୍ୟ ଛାତ୍ରଛାତ୍ରୀଙ୍କ ସୁବିଧା ଓ ସୁଯୋଗ ପ୍ରତି ସାର୍‌ମାନେ ଯଥେଷ୍ଟ ଅଧିକ ଧ୍ୟାନ ତଥା ସମୟ ଦେବାରେ କେବେ ହେଲେ ହେଳା କରୁ ନଥିଲେ । ସପ୍ତାହର ଶନିବାର ଦିନଟି ପାଠଚକ୍ର, ଆଲୋଚନା ଓ ବିତର୍କ ପାଇଁ ଉଦ୍ଦିଷ୍ଟ ଥିଲା । ଏଥିରେ ବିଭାଗର ସମସ୍ତ ଛାତ୍ରଛାତ୍ରୀ, ପ୍ରଫେସର, ପ୍ରାଧ୍ୟାପକ, ଅଧ୍ୟାପକ ଓ ଗବେଷକ ସକ୍ରିୟ ଅଂଶଗ୍ରହଣ କରୁଥିଲେ । ଶ୍ରେଣୀ ଗୃହର ଅଧ୍ୟାପନା ଠାରୁ ଏହି ପାଠଚକ୍ର, ଆଲୋଚନା କିମ୍ବା ବିତର୍କ ବିଦ୍ୟାର୍ଥୀଙ୍କ ପକ୍ଷେ ଅଧିକ ଉପଯୋଗୀ ତଥା ଶିକ୍ଷଣୀୟ ଥିଲା । ଏହି ପାଠଚକ୍ରରେ ଆଲୋଚିତ ହୋଇଥିବା ପ୍ରବନ୍ଧ ମଧ୍ୟରୁ ଉଚ୍ଚମାନର ଅନେକ ପ୍ରବନ୍ଧ ସମ୍ପୃକ୍ତ ବିଶ୍ୱବିଦ୍ୟାଳୟ ଦ୍ୱାରା 'ପାଠଚକ୍ର ପ୍ରବନ୍ଧାବଳୀ' ନାମରେ ଏକାଧିକ ଥର ପ୍ରକାଶିତ ହୋଇ ଆସିଅଛି । ଭବିଷ୍ୟତରେ ମୁଁ ଜଣେ ଛାତ୍ରବତ୍ସଳ କୁଶଳୀ ଅଧ୍ୟାପକର ପରିଚୟ ସୃଷ୍ଟି କରିବା ଦିଗରେ ଏହି ପାଠଚକ୍ର, ଆଲୋଚନା ଓ ବିତର୍କ ମୋତେ ଯଥେଷ୍ଟ ପ୍ରେରଣା ଓ ଉପାଦାନ ଯୋଗାଇ ପାରିଛି ।

ବିଭାଗ ଦ୍ୱାରା ଆୟୋଜନ କରାଯାଇଥିବା ଗଣେଶ ପୂଜା, ସରସ୍ୱତୀ ପୂଜା, ବଣଭୋଜି, ପରିଭ୍ରମଣାଦି କାର୍ଯ୍ୟକ୍ରମ ମୋ ପକ୍ଷେ କେବଳ ଯେ ଉତ୍ସାହ କିମ୍ବା ଆନନ୍ଦଦାୟକ ଥିଲା, ଏକଥା ନୁହେଁ, ଭବିଷ୍ୟତରେ ବିଭିନ୍ନ ଅନୁଷ୍ଠାନରେ ମୁଁ ଜଣେ କଲେଜ ଶିକ୍ଷକ ଭାବେ ବିଦ୍ୟାର୍ଥୀଙ୍କୁ ନେଇ ଏତାଦୃଶ ସାଙ୍ଗଠନିକ କାର୍ଯ୍ୟ ସମ୍ପାଦନ କଲା ବେଳେ ଅତୀତର ଏହି ସ୍ମୃତି ଓ ଅନୁଭୂତି ମୋତେ ଯଥେଷ୍ଟ ଶିକ୍ଷା ଏବଂ ଦକ୍ଷତା ଦେଇପାରିଛି ।

ପରିଶେଷରେ ଏହି ପବିତ୍ର ଅନୁଷ୍ଠାନର ସ୍ନାତକୋତ୍ତର ଶ୍ରେଣୀରୁ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇ କର୍ମକ୍ଷେତ୍ରରେ ପ୍ରବେଶ କରିଥିଲି । ଖ୍ରୀ ୧୯୮୮-୮୯ ଶିକ୍ଷାବର୍ଷରେ ମୁଁ

ପୁଣି ଥରେ ଶିକ୍ଷକ-ଗବେଷକ ଭାବେ ଏହି ଅନୁଷ୍ଠାନରେ ଏମ୍.ଫିଲ୍. ଅଧ୍ୟୟନର ସୁଯୋଗ ପାଇଲି । ଏହି ସମୟରେ ଡ. ସୁଦର୍ଶନ ଆଚାର୍ଯ୍ୟ, ଡ. ଦାଶରଥି ଦାସ, ଡ. ସୀତାରାମ ମହାପାତ୍ର, ଡ. ବାଉରୀବନ୍ଧୁ କର, ଡ. ଅଶ୍ୱିନୀ କୁମାର ପଣ୍ଡା, ଡ. ଦେବୀପ୍ରସନ୍ନ ପଟ୍ଟନାୟକ ଓ ଡ. ପୂର୍ଣ୍ଣଚନ୍ଦ୍ର ମିଶ୍ର ସଂପୃକ୍ତ ବିଭାଗର ଅଧ୍ୟାପନା କାର୍ଯ୍ୟ ସମ୍ପାଦନ କରି ଆସୁଥିଲେ । ବିଭାଗର ପରିବେଶ ଓ ଶୈକ୍ଷିକ ମାନ ପୂର୍ବବତ୍ ଉତ୍ସାହ ଓ ଶିକ୍ଷାପ୍ରଦ ଥିଲା । ବିଶେଷତଃ ଡ. ଦାଶରଥି ଦାସ ଏବଂ ଡ. ସୁଦର୍ଶନ ଆଚାର୍ଯ୍ୟଙ୍କ ଜ୍ଞାନ ଓ ଶିକ୍ଷାଦାନ ମୋତେ ପ୍ରଭାବିତ ତଥା ଉଦ୍‌ବୋଧିତ କରିଥିଲା ।

ପରବର୍ତ୍ତୀ ସମୟ ଅର୍ଥାତ୍ ଖ୍ରୀ.୨୦୦୩ରେ ମୁଁ ମୋର ରିଫ୍ରେସର୍ ପାଠ୍ୟକ୍ରମ ଯୋଗ୍ୟତା ପାଇଁ ଏହି ଅନୁଷ୍ଠାନରେ ଆଉ ଥରେ ଯୋଗ ଦେଇଛି । ଏହି ସମୟରେ ପ୍ରଫେସର ବାଉରୀବନ୍ଧୁ କର, ଡ. ଅଶ୍ୱିନୀ କୁମାର ପଣ୍ଡା, ଡ. ଦେବୀପ୍ରସନ୍ନ ପଟ୍ଟନାୟକ, ଡ. ପୂର୍ଣ୍ଣଚନ୍ଦ୍ର ମିଶ୍ର, ଡ. କୃଷ୍ଣଚନ୍ଦ୍ର ପ୍ରଧାନ, ଡ. ପ୍ରସନ୍ନ କୁମାର ସ୍ୱାଇଁ ଓ ଡ. ସଦାନନ୍ଦ ନାୟକ ବିଭାଗର ଅଧ୍ୟାପନା ଦାୟିତ୍ୱ ନିର୍ବାହ କରୁଥିଲେ । ଅଷ୍ଟବିଂଶ ଦିବସୀୟ ଏହି କାର୍ଯ୍ୟକ୍ରମରେ ଓଡ଼ିଶା ଏବଂ ଓଡ଼ିଶା ବାହାରୁ ବହୁ ଜ୍ଞାନୀ, ଗୁଣୀ ବିଦ୍ୱାନ ଆମକୁ ଅନେକ ଶିକ୍ଷଣୀୟ ବିଷୟରେ ଦିଗ୍‌ଦର୍ଶନ ଦେଇଥିଲେ । ଏହି ସମୟରେ ମଧ୍ୟ ଏହି ଅନୁଷ୍ଠାନ ତା'ର ମର୍ଯ୍ୟାଦା ପୂର୍ବବତ୍ ଅକ୍ଷୁଣ୍ଣ ରଖିଥିବାର ମୁଁ ଲକ୍ଷ୍ୟ କରିଅଛି । ଏହିଭଳି ଭାବେ ପୂର୍ବୋକ୍ତ ବିଭାଗ ସହ ମୋର ଯାହା କିଛି ସମ୍ପୃକ୍ତି ରହିଆସିଛି, ସେ ସବୁକୁ ଦୃଷ୍ଟିରେ ରଖି ବିଚାର କଲେ ମୋର ମନେ ହୁଏ, ଅନୁଷ୍ଠାନଟି ମୋର ଶିକ୍ଷା ଓ ଶିକ୍ଷକ ଜୀବନ ପାଇଁ ଥିଲା ଏକ ପ୍ରେରଣାର ଉତ୍ସ ।

•

*ବ୍ରହ୍ମପୁର*

# ସ୍ମୃତିରୁ ଖିଏ

ଡ. ପୂର୍ଣ୍ଣେନ୍ଦୁ ତ୍ରିପାଠୀ

ଭୁଲି ହୁଏନା ସ୍ମୃତି ବିଜଡ଼ିତ ଦିନଗୁଡ଼ିକୁ । ଭଞ୍ଜବିହାର ଦିନଗୁଡ଼ିକ ୧୯୮୨-୮୪ ଯାଏଁ ଜୀବନ ସ୍ମୃତିର ଅମ୍ଳାନ ଦିଗ । ଝାଉଁବଣ ଓ ସାମୁଦ୍ରିକ ପବନର ମାଦକତା, ଓଡ଼ିଆ ବିଭାଗର କାଚ କାନ୍ଥ ସବୁ କିଛି ସ୍ୱପ୍ନିଳ ଥିଲା । ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ସର୍ବଦା ଏକ ଗୌରବମୟ ବିଭାଗ ଥିଲା । ବହୁ ମୂର୍ଦ୍ଧନ୍ୟ ଗବେଷକ ଏ ବିଭାଗକୁ ଗୌରବମଣ୍ଡିତ କରିଥିଲେ । ସେମାନେ ଥିଲେ ଏ ବିଭାଗର ଗର୍ବ ଓ ଗୌରବ ।

ଆମ ସମୟର ବିଭାଗୀୟ ମୁଖ୍ୟ ଥିଲେ ପ୍ରଫେସର୍ ଶ୍ରୀନିବାସ ମିଶ୍ର । ଅନୁନାସିକ ସ୍ୱରରେ ପଢ଼ାନ୍ତି, କିନ୍ତୁ ଜ୍ଞାନର ଥିଲେ ଗନ୍ତାଘର । ତାହାଙ୍କୁ ସହଯୋଗ କରୁଥିଲେ ପ୍ରଫେସର ସୁଦର୍ଶନ ଆଚାର୍ଯ୍ୟ, ପ୍ରଫେସର୍ ସୀତାରାମ ମହାପାତ୍ର, ପ୍ରଫେସର୍ ଗଗନେନ୍ଦ୍ର ନାଥ ଦାଶ । ସୁଦର୍ଶନ ସାର୍ ଥିଲେ ବାସ୍ତବିକ ସୁଦର୍ଶନ । ଗାମ୍ଭୀର୍ଯ୍ୟ ଓ ଶବ୍ଦ ଉଚ୍ଚାରଣର ଉଦାତ୍ତ ସ୍ୱର ଆମ୍ଭମାନଙ୍କୁ ଭୟଭୀତ କରୁଥିଲା । ଏ ସମସ୍ତେ ଥିଲେ ଆମ୍ଭମାନଙ୍କ ପାଇଁ ଭୟଭକ୍ତି ଓ ପ୍ରେମଭକ୍ତିର ବାସ୍ତବ ରୂପାୟନ । ବିଭିନ୍ନ ବିଭାଗ ଅପେକ୍ଷା ଆମ ବିଭାଗ ଥିଲା ଅନ୍ୟମାନଙ୍କ ଈର୍ଷାର କେନ୍ଦ୍ର ବିନ୍ଦୁ । ଓଡ଼ିଶାର ସମକାଳୀନ ସାହିତ୍ୟ ବିଭାଗରେ ଏ ଧରଣ ପ୍ରଫେସରମାନେ ଥିଲେ ବିରଳ । କିଏ ରୀତି ସାହିତ୍ୟରେ ତ କିଏ ନାଟ୍ୟ ସାହିତ୍ୟ ଅନ୍ୟ କିଏ ଆଧୁନିକ ସାହିତ୍ୟରେ ଥିଲେ ଏକ ଏକ ପ୍ରବୀଣ ପ୍ରଫେସର୍ । ଏ ସମସ୍ତଙ୍କର ଓଡ଼ିଆ ଓ ସଂସ୍କୃତ ସାହିତ୍ୟରେ ଥିଲା ଅସାଧାରଣ ବ୍ୟୁତ୍ପତ୍ତି ।

ମୋର ସ୍ୱତନ୍ତ୍ର ପତ୍ର ଥିଲା 'ସଂସ୍କୃତି' । ମୋର ବନ୍ଧୁମାନେ ମାର୍ଗଦର୍ଶକ ଠିକ୍ କରି ସାରିଥିଲେ । ମୁଁ କିନ୍ତୁ ସେ ସମ୍ପର୍କରେ ଚିନ୍ତା କରି ନଥିଲି । ଆପେ ଆପେ କେହି ଜଣେ ମାର୍ଗଦର୍ଶକ ନେବେ ବୋଲି ଭାବି ନେଇଥିଲି । ଛନକା ପଶିଲା । କାହା ପାଖକୁ ଯିବି ? 'ଫୁଲବାଣୀର କନ୍ଧ ସଂସ୍କୃତି' ବିଷୟ ନେଇ ପ୍ରଫେସର୍ ଶ୍ରୀନିବାସ ମିଶ୍ରଙ୍କୁ ଭେଟିଲି । ଚିନ୍ତା ନ କରି ସେ ତାକୁ ଗ୍ରହଣ କରିନେଲେ । ବିସ୍ମିତ ହେଲି ମୁଁ । ପରବର୍ତ୍ତୀ ପର୍ଯ୍ୟାୟରେ ମୁଁ ନିଜେ ଲେଖାଲେଖି କରି ତାହା ଉପସ୍ଥାପନ କଲି । ମାର୍ଗଦର୍ଶକ ପ୍ରଫେସର୍ ଶ୍ରୀନିବାସ ମିଶ୍ରଙ୍କୁ କିଛି ବି ପଚାରି ନଥିଲି । ତଥାପି ସେ ତାକୁ ଗ୍ରହଣ କରିଥିଲେ । ମୌଖିକ ପରୀକ୍ଷାରେ ଆସିଥିଲେ ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରଫେସର୍ ବାସୁଦେବ ସାହୁ । ଭୟ ଲାଗୁଥାଏ । ଆତଙ୍କିତ ଓ ଆଶଙ୍କିତ ହୋଇ ପରୀକ୍ଷା ଦେଲି ଏବଂ ମୌଖିକ ପରୀକ୍ଷାରେ ଖୁବ୍ ଭଲ

କରିଥିଲି । ସହଯୋଗ ଓ ସଦିଚ୍ଛା ସହ ପ୍ରଫେସରମାନଙ୍କ ସହାନୁଭୂତି ଏପରି ଥିଲା । ଯାହା ଦ୍ୱାରା ଆମ୍ଭମାନଙ୍କର ମନୋବଳ ବଢୁଥିଲା । ପ୍ରଫେସର ଶ୍ରୀନିବାସ ମିଶ୍ର ଏହା ପରେ ମୋ ପାଇଁ ଅପହଞ୍ଚରୁ ପହଞ୍ଚ ହୋଇଗଲେ ।

ଆମମାନଙ୍କର ଦ୍ୱିତୀୟ ବର୍ଷ ସମୟରେ ହଠାତ୍ ତିନି ଜଣ ଯୁବ ଅଧ୍ୟାପକ ନିଯୁକ୍ତି ପାଇଲେ- ପ୍ରଫେସର୍ ଅଶ୍ୱିନୀ କୁମାର ପଣ୍ଡା, ପ୍ରଫେସର୍ ଦେବୀପ୍ରସନ୍ନ ପଟ୍ଟନାୟକ, ପ୍ରଫେସର୍ ପୂର୍ଣ୍ଣଚନ୍ଦ୍ର ମିଶ୍ର । ଏମାନେ ଯଥାକ୍ରମେ ଲୋକ ସାହିତ୍ୟ, ଆଧୁନିକ ଓ ସଂସ୍କୃତି ସମ୍ପର୍କରେ ପଢ଼ାଇବାକୁ ଲାଗିଲେ । ଅଶ୍ୱିନୀ କୁମାର ପଣ୍ଡା ଓ ଦେବୀପ୍ରସନ୍ନ ପଟ୍ଟନାୟକ ଥିଲେ ଆମ ବିଭାଗର ପୂର୍ବତନ ଛାତ୍ର । ତେଣୁ ପ୍ରାୟତଃ ସମସ୍ତେ ଡାକୁଥିଲେ ଭାଇନା । ଫଳରେ ଏ ଦୁହେଁ ହୋଇଗଲେ ଆମମାନଙ୍କର ଗୁରୁ-ଭାଇ-ବନ୍ଧୁ-କୁଟୁମ୍ବ । କୋଣାର୍କ ଭ୍ରମଣ କିମ୍ବା ବିଶାଖାପାଟଣା ଭ୍ରମଣ ହେଉ, ଆମ୍ଭମାନଙ୍କ ମଧ୍ୟରେ ଦୂରତ୍ୱ କମିଗଲା । ବରିଷ୍ଠ ପ୍ରଫେସରମାନଙ୍କ ଠାରୁ ଦୂରେଇ ଯାଇ ଏମାନଙ୍କ ସହ ଆମ୍ଭେମାନେ ଘନିଷ୍ଠ ହୋଇଗଲୁ । ଫଳରେ ପ୍ରତ୍ୟେକ ଦିନ ବିଭାଗରେ କ'ଣ ନା କ'ଣ ଆଲୋଚନା ଆୟୋଜିତ ହେଉଥିଲା । ସେମିନାରର ସ୍ୱତନ୍ତ୍ର ଲାଇବ୍ରେରୀ ଆମ୍ଭମାନଙ୍କ ସକାଶେ ଉନ୍ମୁକ୍ତ ରହିଥିଲା ।

ପରବର୍ତ୍ତୀ ସମୟରେ ଡ. ଦେବୀପ୍ରସନ୍ନ ପଟ୍ଟନାୟକ ମୋର ଗବେଷଣା ପ୍ରବନ୍ଧ 'ସୁରେନ୍ଦ୍ର ଗଳ୍ପରେ ଆଧୁନିକତା ଓ ପରମ୍ପରା' ପାଇଁ ମାର୍ଗଦର୍ଶକ ହେଲେ । ଅବୋଲକରାର ସାଆନ୍ତଙ୍କ ପରି ଦେବୀ ପଟ୍ଟନାୟକ ମୋତେ ପ୍ରତ୍ୟେକ କ୍ଷେତ୍ରରେ ଯେଉଁ ଅନାବିଳ ସହଯୋଗ କରି ଚାଲିଛନ୍ତି, ତାହା ଭୁଲିବାର ନୁହେଁ । ମୁଁ ହେଲି ତାଙ୍କର ପ୍ରଥମ ସ୍କଲାର୍ । ତାହା ହିଁ ମୋର ଗର୍ବ ଓ ଗୌରବର କଥା । ଓଡ଼ିଆ ଭାଷା ଓ ସାହିତ୍ୟ ପାଇଁ ଆମ ବିଭାଗର ଅବଦାନ ଭୁଲିବାର ନୁହଁ । ଏମିତି ଏ ବିଭାଗର ମର୍ଯ୍ୟାଦା ସବୁଦିନ ରହିଥାଉ । ତିରିଶ ବର୍ଷ ତଳେ ମୁଁ ଯେଉଁଠି ଛାତ୍ର ଥିଲି, ସେଇଠି ମୋର କନ୍ୟା ଅନନ୍ୟା ତ୍ରିପାଠୀ ବର୍ତ୍ତମାନର ଛାତ୍ରୀ । ଦେବୀସାର୍ ଅଛନ୍ତି, ପରିବର୍ତ୍ତନ ମାତ୍ର ଏତିକି ଯେ, ତାଙ୍କ ପାଖରେ ମୋ ଉତ୍ତର ପିଢ଼ି । ସ୍ମୃତିର ଫରୁଆରୁ ତୁଳା ଭିଣିବା ପରି ଅନେକ ସ୍ମୃତି ଆସିବ, କିନ୍ତୁ ସମୟ ଓ ପରିସ୍ଥିତିକୁ ନେଇ ସବୁ ସ୍ମୃତିକୁ ଉପସ୍ଥାପନ କରିବା ସମ୍ଭବ ନୁହେଁ । ଶେଷରେ ଏତିକି କହିବି, ପ୍ରଣମ୍ୟ ଗୁରୁଜୀବୃନ୍ଦ ଓ ମୋର ବିଭାଗ ।

•

*ପ୍ରାଧ୍ୟାପକ, ଓଡ଼ିଆ ବିଭାଗ*

*ବୌଦ, କନ୍ଧମାଳ*

# ମୋ ସ୍ମୃତିର ଭଞ୍ଜବିହାର

ଡ. ବନମାଳୀ ପାଣିଗ୍ରାହୀ

ନାମ ଲେଖାଇବା ପରେ ସମସ୍ତେ ଏକତ୍ରିତ ହେଲୁ ପ୍ରଥମ କ୍ଲାସ୍‌ରେ । ଏହି ବିଶ୍ୱବିଦ୍ୟାଳୟ ସମଗ୍ର ଦକ୍ଷିଣ ଓଡ଼ିଶାର । ତଥା ଯେଉଁ ଭୂଭାଗରେ ଅଧିକାଂଶ ଆଦିବାସୀ, ଅନୁସୂଚିତ ଜାତି ଓ ଜନଜାତିର ଅଧିବାସୀ ରହନ୍ତି, ସେମାନଙ୍କ ପିଲାମାନଙ୍କ ସମେତ ଅନ୍ୟମାନଙ୍କୁ ଉଚ୍ଚଶିକ୍ଷା ପ୍ରଦାନ ପାଇଁ ସେତେବେଳେ ଥିଲା ଏକମାତ୍ର ଅନୁଷ୍ଠାନ । ଏହା ପୂର୍ବରୁ ଏ ଅଞ୍ଚଳର ଛାତ୍ରଛାତ୍ରୀଙ୍କ ପାଇଁ ଉଚ୍ଚଶିକ୍ଷାର ସୁଯୋଗ ଆଦୌ ନଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ । ମୁଁ ଏ ଅଞ୍ଚଳର ସ୍ଥାୟୀ ବାସିନ୍ଦା ଓ ବ୍ରହ୍ମପୁର ଥିଲା ମୋର ଚାରଣ ଭୂମି । ବ୍ରହ୍ମପୁର ବାହାରୁ ଆସି ଅଧ୍ୟୟନ କରୁଥିବା ଛାତ୍ରଛାତ୍ରୀଙ୍କ ମଧ୍ୟରେ ମୋର ସ୍ଥାନ ଥିଲା ସମ୍ପୂର୍ଣ୍ଣ ନିଆରା । ପ୍ରଫେସର୍ /ଅଧ୍ୟାପକମାନଙ୍କ ବ୍ୟବହାର ଅତି ଉତ୍ତମ ଥିଲା । ପ୍ରାୟ ସମସ୍ତେ ଉଚ୍ଚଶିକ୍ଷା ବିଭାଗରୁ ସର୍ବୋଚ୍ଚ ଡକ୍ଟରେଟ୍ ଉପାଧି ଧାରଣ କରୁଥିବାରୁ ସେମାନଙ୍କ ପ୍ରତି ଆମର ଗଭୀର ଆସ୍ଥା ଓ ବିଶ୍ୱାସ ଥିବା ସଙ୍ଗେ ସଙ୍ଗେ ଆମେ ଦିନେ ବଡ଼ ହେଲେ ଏଭଳି ଡିଗ୍ରୀ ଲାଭ କରିବୁ-ଏହି ଆଶା ଆମ ମଧ୍ୟରେ ରହିଥିଲା । ଆଜି ସେଦିନର ସ୍ମୃତି-ଅନୁଭୂତିକୁ ନେଇ କିଛି ଲେଖିଲା ବେଳେ ଦିବଙ୍ଗତ ଓ ଜୀବିତ ଥିବା ପ୍ରାୟ ସମସ୍ତ ଶିକ୍ଷାଗୁରୁଙ୍କ କଥା ମନକୁ ଆସେ । ପ୍ରଫେସର୍ କାହ୍ନୁଚରଣ ମିଶ୍ର, ପ୍ରଫେସର୍ ବେଣୀମାଧବ ପାଢ଼ୀ, ପ୍ରଫେସର୍ ସୀତାରାମ ମହାପାତ୍ର ଏମାନେ ଆମ ଗହଣରେ ନାହାନ୍ତି । ବର୍ତ୍ତମାନ ପରିଣତ ବୟସରେ ମଧ୍ୟ ପ୍ରଫେସର୍ ସୁଦର୍ଶନ ଆଚାର୍ଯ୍ୟ, ପ୍ରଫେସର୍ ଶ୍ରୀନିବାସ ମିଶ୍ର, ପ୍ରଫେସର୍ ଗଗନେନ୍ଦ୍ରନାଥ ଦାଶ ପ୍ରମୁଖଙ୍କ ଲେଖନୀ ଚଳଚଞ୍ଚଳ ଅଛି । ସେମାନଙ୍କ ଶୁଭାଶିଷ ରହିଛି ।

ସ୍ନାତକୋତ୍ତର ଶ୍ରେଣୀର ପ୍ରଥମ ଓ ଦ୍ୱିତୀୟ ବର୍ଷ ଛାତ୍ରଛାତ୍ରୀଙ୍କ ମଧ୍ୟରେ ସୁସମନ୍ୱୟ ଥିଲା । ଆଲୋଚନା ଅବା ପାଠଚକ୍ରରେ ପ୍ରବନ୍ଧ ଉପସ୍ଥାପନା ବେଳେ ପରସ୍ପରଙ୍କର ସହଯୋଗ ଆମ ମନରେ ଆଣି ଦେଉଥିଲା ଅଫୁରନ୍ତ ଆନନ୍ଦ । ଆଗାମୀ ଦିନରେ ପୁଣି କିଛି ନୂଆ ଲେଖା ପ୍ରସ୍ତୁତ କରି ଉପସ୍ଥାପନା କରିବାର ଉଦ୍ୟମ ଆରମ୍ଭ ହେଉଥିଲା । ସ୍କୁଲ୍ ଶିକ୍ଷା ସମୟରୁ ପୁଞ୍ଜୀଭୂତ ଅନୁଭୂତି ପ୍ରକାଶ କରିବା ପାଇଁ ରାସ୍ତା ମିଳୁ ନଥିଲା, ଏଣିକି ରାସ୍ତା ମିଳିଲା । ଏକ 'ପ୍ରାଚୀର ପତ୍ରିକା' ପ୍ରକାଶନ ପାଇଁ ସମସ୍ତେ ସ୍ଥିର କଲୁ । ତା'ର ନାମ 'ଯୁଗରୁଚି' ରହିଲା । ଆମର ଅଗ୍ରଜ ତଥା ବର୍ତ୍ତମାନର ଓଡ଼ିଆ ବିଭାଗର ବରିଷ୍ଠ

ପ୍ରଫେସର୍ ଡ. ଦେବୀପ୍ରସନ୍ନ ପଟ୍ଟନାୟକ ଏହାର ନେତୃତ୍ୱ ନେଇଥିଲେ ଏବଂ ଏହି ପତ୍ରିକାକୁ ସର୍ବାଙ୍ଗସୁନ୍ଦର କରିବା ପାଇଁ ଚେଷ୍ଟା କରୁଥିଲେ । ପ୍ରାଚୀର ପତ୍ରିକାର ଏହି ଅଭିନବ ପ୍ରୟାସ ଅନ୍ୟମାନଙ୍କ ପାଇଁ ଉଦାହରଣ ସୃଷ୍ଟି କରିଥିଲା । ଇତିହାସ, ଇଂରାଜୀ, ଏପରିକି ବିଜ୍ଞାନ ଓ ବାଣିଜ୍ୟ ବିଭାଗ, ଖଲ୍ଲିକୋଟ ମହାବିଦ୍ୟାଳୟ, ବ୍ରହ୍ମପୁର ସ୍ନାତକ ଶ୍ରେଣୀରେ ଅଧ୍ୟୟନ କରୁଥିବା ଛାତ୍ରଛାତ୍ରୀଙ୍କ ମଧ୍ୟରେ ପ୍ରତିଯୋଗିତାମୂକ ମନୋଭାବ ଥିଲା । ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଶେଷବର୍ଷ ସ୍ନାତକ-କଳାର ପରୀକ୍ଷାଫଳ ପ୍ରକାଶ ପାଇଲା ବୋଲି ଖବରଟିଏ ପହଞ୍ଚିଲା । ଠିକ୍ ତାରିଖଟି ମୋର ମନେ ନାହିଁ । କିନ୍ତୁ ସମୟ ଥିଲା ମଇ ମାସର ଏକ ଉତ୍ତୀର୍ଣ୍ଣ ଅପରାହ୍ଣ । ପରୀକ୍ଷାଫଳ ତଥା ମାର୍କ ଜାଣିବା ପାଇଁ ଭଞ୍ଜବିହାର ଗଲି । ଓଡ଼ିଆ -ସମ୍ମାନରେ ଉତ୍ତୀର୍ଣ୍ଣ ହୋଇଥିବା ଛାତ୍ରଛାତ୍ରୀଙ୍କ ମଧ୍ୟରେ ପ୍ରଥମ ଦଶ ଜଣଙ୍କ ତାଲିକା ଭିତରେ ମୋ ନାମ ରହିଥିଲା । ମନରେ ଶ୍ରଦ୍ଧା ସାଇଁକୁ ସ୍ନାତକୋତ୍ତର ଓଡ଼ିଆରେ ଅଧ୍ୟୟନ କରିବା ପାଇଁ ମନ ଭିତରେ ଭାବନା ଜାଗ୍ରତ ହେଲା । ଭଞ୍ଜବିହାର ବୁଲିବାର ପ୍ରଥମ ସୁଯୋଗ ମିଳିଲା । ଏହା ଥିଲା ୧୯୮୦ ମସିହାର କଥା । ବିଶ୍ୱବିଦ୍ୟାଳୟ ପରିସର ଭିତରେ ଏତେ ବଡ଼ ସଂଖ୍ୟାଧିକ କୋଠାବାଡ଼ି ନଥିଲା । ପ୍ରଶାସନ କୋଠାର ପାର୍ଶ୍ୱରେ ଆମ୍ରକାନନ, ମାଣ୍ଡିଆପଲ୍ଲୀ ଓ ରଙ୍ଗେଇଲୁଣ୍ଡା ଗ୍ରାମ ଦୁଇଟିକୁ ସଂଯୋଗ କରୁଥିବା ସରୁଆ ପିଚୁ ରାସ୍ତାଟିଏ, ଚତୁର୍ଦ୍ଦିଗରେ ପରିବେଷ୍ଟିତ ଝାଉଁବଣ ହିଁ ଥିଲା । ପ୍ରାକୃତିକ ପରିବେଶରେ ଏକ ମନୋଜ୍ଞ ଶୋଭାଶିରୀ ମଣ୍ଡିତ ଭଞ୍ଜବିହାର । ପୂର୍ବ ପାର୍ଶ୍ୱରୁ ସନ୍ଧ୍ୟା ନଇଁଲେ ଗୋପାଳପୁର ବେଳାଭୂମି ଆଡୁ ଭାସି ଆସୁଥିଲା ମୃଦୁ ମଳୟ; ତା'ର ସଙ୍ଗେ ସଙ୍ଗେ ସମୁଦ୍ର ବେଳାଭୂମିରେ ମୁଣ୍ଡ ପିଟୁଥିବା ତରଙ୍ଗମାଳାର ଗର୍ଜନ । ଅନ୍ୟ ଦିଗରେ ନିକଟସ୍ଥ ବ୍ରହ୍ମପୁର ସହର ଆଦୌ ଜନାକୀର୍ଣ୍ଣ ନଥିଲା । ଛୁଟି ଦିନରେ ଏକମାତ୍ର ଭ୍ରମଣର ସ୍ଥାନ ଗୋପାଳପୁର ବେଳାଭୂମିକୁ ଲୋକମାନେ ସରକାରୀ ବସ୍ ଓ ନିଜସ୍ୱ ଗାଡ଼ି, ସାଇକେଲ୍‌ରେ ଯିବା ଆସିବା କରୁଥିଲେ । ଭଞ୍ଜବିହାରର ପଶ୍ଚିମ ପାର୍ଶ୍ୱରେ ଥିବା ସୁଦୀର୍ଘ-ବିସ୍ତୃତ -ସମତଳ ଭୂଖଣ୍ଡଟିରେ ଛୋଟିଆ ଛୋଟିଆ ଉଡ଼ାଜାହାଜ ଅବତରଣ କରୁଥିଲା । ଆମେ ତାହାକୁ ପିଲାଦିନେ ଉଡ଼ାଜାହାଜ ପଡ଼ିଆ ବୋଲି ଜାଣିଥିଲୁ । କାରଣ ମୋର ଗ୍ରାମ ବିଶ୍ୱବିଦ୍ୟାଳୟର ନିକଟବର୍ତ୍ତୀ ଗ୍ରାମ ଡୁରା ଓ ଏହା ଏକ ପୁଣ୍ୟଭୂମି । ୧୭୦୦ ଖ୍ରୀଷ୍ଟାବ୍ଦ ବେଳକୁ ବିପ୍ର ରାମ ଦାସ ଏହି ଗ୍ରାମରେ ଜନ୍ମଗ୍ରହଣ କରି 'ଦାର୍ଢ୍ୟତାଭକ୍ତି', 'ଶିବରାତ୍ରି ମାହାତ୍ମ୍ୟ', 'ଜନ୍ମାଷ୍ଟମୀ ମାହାତ୍ମ୍ୟ', 'ଗୁଣ୍ଡିଚା ବସନ୍ତ' ପ୍ରଭୃତି କାବ୍ୟ ରଚନା କରିଥିଲେ । ଯେତେବେଳେ ଏହି ଉଡ଼ାଜାହାଜ ପଡ଼ିଆ ଉପରେ ବିମାନଟିଏ ଅବତରଣ କରିବା ପୂର୍ବରୁ ମୋ ଗାଁର ମୁଣ୍ଡ ଉପରେ ଉଡ଼ିଯାଉଥିଲା, ଗାଁ ଦାଣ୍ଡରେ ପିଲାମାନଙ୍କ ରଡ଼ି 'ଉଡ଼ାଜାହାଜ ଆସିଲା', 'ଉଡ଼ାଜାହାଜ ଆସିଲା' ନାଦରେ

ପ୍ରକମ୍ପିତ ହେଉଥିଲା । ଏ ଅଞ୍ଚଳରେ ମଧ୍ୟାହ୍ନ ନଇଁଲେ ସମୁଦ୍ର ପଟୁ ଦଲକାଏ-ପବନ ଆସି ଉଷ୍ଣତା ଲାଘବ ପାଇଁ ସହାୟକ ହେଉଥିଲା । ଇତିମଧ୍ୟରେ ଘରୁ ଅନୁମତି ମିଳିବା ପରେ ବିଶ୍ୱବିଦ୍ୟାଳୟରେ ଓଡ଼ିଆ ଭାଷା-ସାହିତ୍ୟ ବିଭାଗରେ ସ୍ନାତକୋତ୍ତର ଶ୍ରେଣୀରେ ଅଧ୍ୟୟନ ପାଇଁ ସୁଯୋଗ ମିଳିଲା । ବିଭିନ୍ନ ମହାବିଦ୍ୟାଳୟରୁ ଆସିଥିବା ଛାତ୍ରଛାତ୍ରୀ ଏଠାରେ ନାମ ଲେଖାଇବା ପରେ ସାହିତ୍ୟ ଅଧ୍ୟୟନ ସହିତ ଲେଖାଲେଖିରେ ରୁଚି ରଖିଲେ ଓ ସାହିତ୍ୟ ସର୍ଜନାର ମନ ଦେଲେ । ସାହିତ୍ୟ ଅଧ୍ୟୟନ ଓ ବିଭିନ୍ନ ପତ୍ରପତ୍ରିକାରେ ସର୍ଜନାତ୍ମକ ରଚନା ପ୍ରକାଶ ହେତୁ ଆମ ପାଖକୁ ଅଭିନନ୍ଦନର ବାର୍ତ୍ତା ଆସିଲା । 'ଯୁଗରୁଚି' ପ୍ରାଚୀର ପତ୍ରିକାର କଳେବର ପ୍ରଶସ୍ତ ହେଲା । ବିଭାଗ-ବିଭାଗ ମଧ୍ୟରେ ସୁସମ୍ପର୍କ ବଢ଼ିଲା । କିଏ କିଏ କବିତା ପଢ଼ି 'ଭଲ ହୋଇଛି' ବୋଲି ପ୍ରଶଂସା କଲେ । ଆଗାମୀ ସଂଖ୍ୟା ପାଇଁ ନୂଆଲେଖା କ'ଣ ହୋଇଛି ବୋଲି ପ୍ରଶ୍ନ କଲେ । ସେ ଏକ ନିଆରା ପରିବେଶ । ଏବେ ତାହା କେବଳ ସାଉଁଟା-ସ୍ମୃତିର-ମଉଳା ଫୁଲଟିଏ ।

ଯେଉଁମାନେ ସର୍ବଦା ମୋର ସହାଧ୍ୟାୟୀ ଥିଲେ, ସେମାନଙ୍କ ମଧ୍ୟରୁ ଅନେକ ଦକ୍ଷିଣ ଓଡ଼ିଶା ସମେତ ଓଡ଼ିଶା ଓ ଓଡ଼ିଶା ବାହାରେ ବିଭିନ୍ନ ମହାବିଦ୍ୟାଳୟ, ବିଶ୍ୱବିଦ୍ୟାଳୟ, ଉଚ୍ଚ ବିଦ୍ୟାଳୟ ପ୍ରଭୃତି ଶିକ୍ଷାନୁଷ୍ଠାନରେ ଅଧାପକ / ଶିକ୍ଷକ ଭାବରେ କାର୍ଯ୍ୟ ନିର୍ବାହ କରି ଉଚ୍ଚପ୍ରଶଂସିତ ହୋଇଛନ୍ତି । ଏତଦ୍‌ବ୍ୟତୀତ ଅନ୍ୟାନ୍ୟ ବିଭାଗରେ ମଧ୍ୟ କାର୍ଯ୍ୟରତ ଅଛନ୍ତି । ଆଜି ଯାହା ଆମେ ଲେଖୁଛୁ ଓ କହିପାରୁଛୁ, ସେହି ସାହସ ଦେଇଛି ଏହି ବିଭାଗ, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ । ଶିକ୍ଷା ସମାପ୍ତିର ଶେଷ ସାଧନ ଭୂମି ସର୍ବଦା ଚିର-ସ୍ମରଣୀୟ । ଏହି ଅନୁଷ୍ଠାନ ବିଶ୍ୱବନ୍ଦନୀୟ । ଏହି ପୁଣ୍ୟ ମାଟି ବରେଣ୍ୟ କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ନାମରେ ନାମିତ 'ଭଞ୍ଜବିହାର, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ' । ଜୀବନରେ ଶେଷ ନିଃଶ୍ୱାସ ଥିବା ପର୍ଯ୍ୟନ୍ତ ଏହା ସ୍ମରଣୀୟ ହୋଇ ରହିବ । ବିଶେଷକରି ଏହି ବିଭାଗରେ ଅଧ୍ୟୟନ କରି ମୁଁ ନିଜକୁ ଧନ୍ୟ ମନେ କରୁଛି । ଅନ୍ୟ ନିକଟରେ ଏହାର ଅମ୍ଳାନ କୀର୍ତ୍ତି ଓ ଗୁଣାବଳୀ ବୟାନ କରିବାରେ ଆଦୌ ପଶ୍ଚାତ୍‌ପଦ ହେବି ନାହିଁ ।

•

*ଅଧ୍ୟକ୍ଷ, ରାମ ନାରାୟଣ କଲେଜ*
*ତୁରା, ବ୍ରହ୍ମପୁର*

# ନୀଳ ସରସ୍ୱତୀଙ୍କ ସ୍ୱର୍ଗ ଭଞ୍ଜବିହାର

**ଡ. ଦିଲୀପ କୁମାର ସ୍ୱାଇଁ**

ସେଦିନ ଥାଏ ଶ୍ରାବଣର ମାଟିକୁ ଭିଜେଇବାର ଦିନ । ମେଘଖଣ୍ଡ କଳାଲୁଗା ପିନ୍ଧି ଓହଳି ପଡ଼ିଥା'ନ୍ତି ଭଞ୍ଜବିହାରରେ । ପତ୍ରର ଓଠରେ ବର୍ଷା ମଙ୍ଗଳର ଗୀତ । କଜଳପାତିର କଅଁଳ ଦେହରେ ଖରା ଓ ବର୍ଷାର ମୁରୁଜ । ମୁଁ ଓହ୍ଲେଇ ପଡ଼ିଲି ଭଞ୍ଜବିହାରର ବସ୍‌ଷ୍ଟପ୍‌ରେ । ଏମିତି ତ ଆସିଛି ଅନେକ ଥର - ଏଥର ଏଇ ମୋର ପ୍ରଥମ ଯାତ୍ରା ବର୍ଷାରେ । ବରଗଛର ପତ୍ରରେ ବର୍ଷାର ତାଣ୍ଡବ ଆରମ୍ଭ ହେଲା । ସମଗ୍ର ଭଞ୍ଜବିହାରରେ ଆରମ୍ଭ ହେଲା ବର୍ଷାର ମହୋତ୍ସବ । ବିଶ୍ୱବିଦ୍ୟାଳୟକୁ ପାଠ ପଢ଼ିବାକୁ ଆସିଥିବା ନୂତନ ଛାତ୍ରଛାତ୍ରୀଙ୍କ ଅନ୍ୟମନସ୍କତାରେ ବର୍ଷା ବିରହର ଗୁଞ୍ଜରଣ । ଓଃ ! ଏମିତି ଏକ କ୍ୟାମ୍ପସ୍ ଅଛି ଓଡ଼ିଶାରେ । ଥରେ ମୁଁ ଜ୍ୟୋତିବିହାରରେ ବର୍ଷା ରାତିରେ ଶୁଣିଥିଲି କବିତାର ସାଏରୀ । ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ବର୍ଷା ମୋର ସୁପ୍ତ କବିତ୍ୱକୁ ଜାଗ୍ରତ କଲା । ମନେ ପଡ଼ିଲେ କବି ସୌଭାଗ୍ୟ କୁମାର ମିଶ୍ର ଓ ତାଙ୍କ କବିତା 'ଭଞ୍ଜବିହାରରେ ବର୍ଷା' । ବର୍ଷା ମୋତେ ସ୍ୱାଗତ କରିନେଲା ଓଡ଼ିଆ ବିଭାଗକୁ ।

ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ ନିଜ ଗୁଣରେ ଗୁଣୀ । ଓଡ଼ିଶାର ନାମକରା ବୁଦ୍ଧିଜୀବୀ ଓ ବିଚାରବନ୍ତ ସାହିତ୍ୟିକମାନେ ଏହାର ଶୈକ୍ଷିକ ଶ୍ରୀବୃଦ୍ଧି କରିଛନ୍ତି । ଅଧୁନା ଏହାର ଗବେଷଣା ଓ ଶିକ୍ଷାଦାନ ବ୍ୟବସ୍ଥା ଉଚ୍ଚତର ଓଡ଼ିଆ ସାହିତ୍ୟ ଓ ଭାଷା ଶିକ୍ଷା କ୍ଷେତ୍ରରେ ଏକ ମାନକ ପ୍ରତିଷ୍ଠା କରିପାରିଛି । ଉତ୍କଳ ବିଶ୍ୱବିଦ୍ୟାଳୟରେ ମୋର ସ୍ନାତକୋତ୍ତର ଶିକ୍ଷା ସମାପ୍ତ ପରେ ସେଇଠି ପିଏଚ୍.ଡି. ଡ଼ିଗ୍ରୀ ପ୍ରାପ୍ତ ହୋଇଥିଲି । ମୋର ଇଚ୍ଛା ଥିଲା ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଅଧୀନରେ ଗବେଷଣା କରିବା ପାଇଁ । ପ୍ରଫେସର ପ୍ରସନ୍ନ କୁମାର ସ୍ୱାଇଁଙ୍କ ସହୃଦୟତା ଓ ଉଦାର ସହଯୋଗରେ ମୁଁ ଏଇଠି ଡି.ଲିଟ୍. ଉପାଧି ନିମନ୍ତେ ଗବେଷଣା କାର୍ଯ୍ୟ କରିବା ପାଇଁ ସୁଯୋଗ ପାଇଲି । ତତ୍‌କାଳୀନ ବିଭାଗୀୟ ମୁଖ୍ୟ ଡକ୍ଟର୍ ସଦାନନ୍ଦ ନାୟକ ମୋର ବାଣୀବିହାରରେ ପରିଚୟରେ ଥିଲେ । ବଡ଼ଭାଇପଣରେ ସେ ମୋତେ ବିଭାଗୀୟ ସ୍ୱୀକୃତି ପ୍ରଦାନ କରିବା ସହ ଉତ୍ସାହିତ କଲେ । ସବୁଠାରୁ ଉଲ୍ଲେଖନୀୟ ଘଟଣାଟି ହେଲା ପ୍ରଫେସର ଦେବୀପ୍ରସନ୍ନ ପଟ୍ଟନାୟକଙ୍କ ସମ୍ଭ୍ରାନ୍ତୀୟ ବ୍ୟକ୍ତିତ୍ୱ । କୌଣସି ବ୍ୟକ୍ତିଗତ ସମ୍ପର୍କ ନ ଥାଇ ମୁଁ ତାଙ୍କର କେତୋଟି ବକ୍ତୃତା ଉଜ୍ଜୀବନ କାର୍ଯ୍ୟକ୍ରମରେ ଶୁଣିଥିଲି । ନିଜ ବକ୍ତବ୍ୟ ଓ ବ୍ୟକ୍ତିତ୍ୱରେ ଠୋ ଠା କଥା କହୁଥିବା

ଏହି ପ୍ରଫେସର୍ ଜଣକ ଅନ୍ୟ ଓଡ଼ିଆ ପ୍ରଫେସରଙ୍କ ଠାରୁ ନିଶ୍ଚୟ ନିଆରା । ଦେବୀସାର୍‌ଙ୍କ ଶ୍ରଦ୍ଧା ମୋତେ ଏହି ବିଭାଗ ପ୍ରତି ଆହୁରି ନିବିଡ଼ କରିନେଲା ।

ଗବେଷଣା କରିବା ଓ ଏଥି ନିମନ୍ତେ ଉପାଧି ପ୍ରାପ୍ତ ହେବା ଆଦୌ ବଡ଼ କଥା ନୁହେଁ । ସ୍ମରଣୀୟ କଥା ହେଉଛି, ଏହି ଗବେଷଣା କାର୍ଯ୍ୟରେ ଅନ୍ୟମାନଙ୍କ ଉଦ୍‌ଯୋଗ, ସହଯୋଗ, ସମର୍ଥନ ଓ ବିଶ୍ୱବିଦ୍ୟାଳୟର ଦାପ୍ତରିକ, ପ୍ରାଶାସନିକ ଆନ୍ତରିକତା ମୋ ପାଇଁ ଆନନ୍ଦର କଥା । ଏସବୁ ମୁଁ ଏଇଠି ପ୍ରାପ୍ତ ହୋଇଛି । ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ପରୀକ୍ଷା ପରିଚାଳନା, ଗବେଷଣା ବିଭାଗର କାର୍ଯ୍ୟ ସନ୍ତୋଷଜନକ । ବିଶେଷକରି ଓଡ଼ିଆ ବିଭାଗରେ ଗବେଷକମାନଙ୍କ ପ୍ରତି ଆନ୍ତରିକତା, ସହଯୋଗ ଓ ସମ୍ମାନବୋଧ ଅନ୍ୟ ବିଶ୍ୱବିଦ୍ୟାଳୟମାନଙ୍କ ଅପେକ୍ଷା ଅଧିକ । ମୋର ତତ୍ତ୍ୱାବଧାରକ ଅଧୁନା ବିଭାଗୀୟ ମୁଖ୍ୟ ପ୍ରଫେସର୍ ପ୍ରସନ୍ନ କୁମାର ସ୍ୱାଇଁଙ୍କ ଉଦାରତା, ପ୍ରଜ୍ଞାବତ୍ସଳତା ଓ ଅହଙ୍କାର ଶୂନ୍ୟ ତୃଣମୂଳୀୟ ବ୍ୟକ୍ତିତ୍ୱ ଅନ୍ୟମାନଙ୍କ ପାଇଁ ଉଦାହରଣୀୟ । ସ୍ନାତକୋତ୍ତର ଓଡ଼ିଆ ବିଭାଗ ଓ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟକୁ ନେଇ ମୋର ଅନେକ ସୁଖଦ ଅନୁଭୂତି ରହିଛି ।

ଏ ବିଶ୍ୱବିଦ୍ୟାଳୟ ମୋତେ ଦେଇଛି ବହୁତ- ଅଥଚ ମୋ ଠାରୁ ପାଇନି କିଛି । କେବେ ସୁଯୋଗ ଆସିଲେ ଏହି ନୀଳ ସରସ୍ୱତୀଙ୍କ ଚରଣ ଲୁହ ବୁନ୍ଦାଏ ହୋଇ ଧୋଇଦେବି । ବିଭାଗର ସୁବର୍ଣ୍ଣ ଜୟନ୍ତୀ ଇତିହାସରେ ଅକ୍ଷର ପାଲଟିଯାଉ ।

•

*ବିଭାଗ ମୁଖ୍ୟ, ସ୍ନାତକୋତ୍ତର, ଓଡ଼ିଆ ବିଭାଗ*
*ସାମନ୍ତ ଚନ୍ଦ୍ରଶେଖର କଲେଜ, ପୁରୀ*

# ସ୍ମୃତି ଏକ ଅଭୁଲା ଦିନର...

ଡ. ନଳିନୀ କୁମାର ପାଣିଗ୍ରାହୀ

ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ, ଓଡ଼ିଆ ଭାଷା ଓ ସାହିତ୍ୟର କେବଳ ଏକ ଶିକ୍ଷାକ୍ଷେତ୍ର ନୁହେଁ; ଏକ ସାଧନାର ପୀଠ । ସେହି ପବିତ୍ର ବିଭାଗରେ ଛାତ୍ର ଭାବରେ ଅଧ୍ୟୟନ କରିବା ବାସ୍ତବରେ ମୋ ପାଇଁ ଥିଲା ଈଶ୍ୱରଙ୍କ ଅପାର କରୁଣା ତଥା ଆଶୀର୍ବାଦ । ୧୯୯୩ ମସିହାରୁ ୧୯୯୫ ମସିହା ପର୍ଯ୍ୟନ୍ତ ଦୁଇବର୍ଷ ସ୍ନାତକୋତ୍ତର ଏବଂ ୧୯୯୭ରୁ ୧୯୯୮ ମସିହା ଏକ ବର୍ଷ ଏମ୍.ଫିଲ୍. ଶିକ୍ଷା ଗ୍ରହଣ ମୋ ଜୀବନର ଏକ ସ୍ୱର୍ଣ୍ଣବ୍ୟ ସମୟ ଖଣ୍ଡ । ଓଡ଼ିଆ ସାହିତ୍ୟର କୃତବିଦ୍ୟ ସାହିତ୍ୟିକ ପ୍ରଫେସର୍ ସୁଦର୍ଶନ ଆଚାର୍ଯ୍ୟ, ପ୍ରଫେସର୍ ଦାଶରଥି ଦାଶ, ଡ. ବାଉରୀବନ୍ଧୁ କର, ଡ. ଦେବୀପ୍ରସନ୍ନ ପଟ୍ଟନାୟକ, ଡ. ଅଶ୍ୱିନୀ କୁମାର ପଣ୍ଡା ଏବଂ ଡ. ପୂର୍ଣ୍ଣଚନ୍ଦ୍ର ମିଶ୍ରଙ୍କ ଠାରୁ ଶିକ୍ଷା ଗ୍ରହଣ ମୋର ଛାତ୍ର ଜୀବନକୁ କରିଥିଲା ସୁରଭିତ । ସେହି ପରମ ପୂଜନୀୟ ଗୁରୁମାନଙ୍କ ସାନ୍ନିଧ ଲାଭ ବାସ୍ତବରେ ସୌଭାଗ୍ୟର ବିଷୟ । ବିଶେଷକରି ଡ. ଦେବୀପ୍ରସନ୍ନ ପଟ୍ଟନାୟକଙ୍କ ପ୍ରତ୍ୟକ୍ଷ ପ୍ରେରଣା ସାରସ୍ୱତ ସାଧନା ପାଇଁ ମୋତେ ବେଶି ଉତ୍ସାହିତ କରିଥିଲା ।

ପ୍ରକାରାନ୍ତରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ବିଶାଳ ପାଠାଗାର ସାଙ୍ଗକୁ ବିଭାଗର ପାଠାଗାର ବିଭିନ୍ନ ବହି ଅଧ୍ୟୟନ କରିବାରେ ସୃଷ୍ଟି କରିଥିଲା ଏକ ସୁବର୍ଣ୍ଣ ସୁଯୋଗ । ଏବେ ସୁଦ୍ଧା ମନେ ପଡ଼େ ଏକଦା ଗୁରୁ ପ୍ରଫେସର୍ ଆଚାର୍ଯ୍ୟ ଶ୍ରେଣୀ କକ୍ଷରେ କହିଥିଲେ – "ଦିନେ ଖାଇବା ବନ୍ଦ କରି ସେହି ପଇସାରେ ବହିଟିଏ କିଣ, ଦେଖିବ, ଖାଇବା ଅପେକ୍ଷା ବହିଟି ତୁମକୁ ବେଶି ଆନନ୍ଦ ଦେବ ।" ବର୍ତ୍ତମାନ ସୁଦ୍ଧା ସେହି ବାକ୍ୟଟି ମୋତେ ଅସୀମ ଆନନ୍ଦ ଦେଉଛି, ବହିଟିଏ କିଣିବାକୁ ଅନୁପ୍ରେରିତ କରୁଛି । ଜୀବନର ଲମ୍ବା ରାସ୍ତାରେ ଏମିତି ଗୋଟିଏ ଗୋଟିଏ ବାକ୍ୟ ମାଇଲ୍ ଖୁଣ୍ଟ ହୋଇ ରହିଯାଏ । ଅନୁଭୂତିର ଦର୍ପଣ ଉପରେ ଝଲମଲ ହେଉଥାଏ । ଭଞ୍ଜବିହାର, ଓଡ଼ିଆ ବିଭାଗର ଛାତ୍ର ଭାବରେ ଆଉ ଏକ ମଧୁର ଅନୁଭୂତି ହେଲା –ବିଭାଗର ପ୍ରାଚୀରପତ୍ର 'ଯୁଗରୁଚି' ଏବଂ ବାର୍ଷିକ ମୁଖପତ୍ର 'ଆକାଙ୍କ୍ଷା'ର ପ୍ରକାଶନ ଦାୟିତ୍ୱ । 'ଆକାଙ୍କ୍ଷା' ବିଭାଗର ବାର୍ଷିକ ମୁଖପତ୍ର ହୋଇଥିବା ବେଳେ 'ଯୁଗରୁଚି' ମାସିକ ପତ୍ରିକା ଥିଲା । ବହୁଦିନ 'ଯୁଗରୁଚି' ପ୍ରକାଶ ପାଇବା ପରେ କେଜାଣି କାହିଁକି ଆମ୍ଭେ ପଢ଼ିବା ସମୟର ବହୁ ପୂର୍ବରୁ ତାହାର ପ୍ରକାଶନ ବନ୍ଦ ହୋଇଯାଇଥିଲା । କିନ୍ତୁ ଗୁରୁ ଡ. ଦେବୀପ୍ରସନ୍ନ ପଟ୍ଟନାୟକଙ୍କ ପ୍ରେରଣାରେ ଆମ୍ଭେ

ପୁଣି ଥରେ ତା'ର ପ୍ରକାଶନ ନିମନ୍ତେ ପ୍ରତିଜ୍ଞାବଦ୍ଧ ହୋଇଥିଲୁ ଏବଂ ସଫଳତା ମଧ୍ୟ ଲାଭ କରିଥିଲୁ । ଏପରିକି ନିଜସ୍ୱ ଖର୍ଚ୍ଚରେ ତା'ର ପ୍ରକାଶନ ପାଇଁ ଆମ୍ଭ ବିଭାଗର ସାଙ୍ଗସାଥୀଙ୍କ ମଧ୍ୟରେ ଏକ ପ୍ରତିଯୋଗିତା ଆରମ୍ଭ ହୋଇ ଯାଇଥିଲା । ସେଦିନର କଥା ଆଜି ବି ମନେ ପଡ଼େ । ପ୍ରତ୍ୟେକ ସଂଖ୍ୟାକୁ ଷ୍ଟେନ୍‌ସିଲ ପେପର୍‌ରେ ହାତରେ ଲେଖି ପ୍ରିଣ୍ଟ୍ ବାହାର କରାଯାଉଥିଲା । ଏପରିକି ବହୁ ଥର ତା'ର କାର୍ଯ୍ୟ ରାତି ୧୧ଟା ୩୦ମି ପର୍ଯ୍ୟନ୍ତ ଚାଲେ, ତାହା ପୁଣି ଦେବୀସାର୍‌ଙ୍କ ଚାମ୍ବର୍‌ରେ । ସବୁ କାମ ସରିବା ପରେ ସାର୍ ରାତି ୧୧ଟା ୩୦ମିନିଟ୍‌ରେ ବ୍ରହ୍ମପୁର ଫେରୁଥିଲେ ସ୍କୁଟର୍‌ରେ । ଏହି କାର୍ଯ୍ୟଟି ଆମ୍ଭଙ୍କୁ ଯଥେଷ୍ଟ ପ୍ରେରଣା ଯୋଗାଇଥିଲା ।

ବିଭାଗର ସମସ୍ତ ଛାତ୍ରଛାତ୍ରୀ, ଶିକ୍ଷକବୃନ୍ଦ ଗୋଟିଏ ପରିବାରର ସଦସ୍ୟ ପରି ଥିଲେ । ସାର୍‌ମାନଙ୍କର ସ୍ନେହ କେବେ ମଧ୍ୟ ଭୁଲି ହେବ ନାହିଁ । ଭଗବାନ କରନ୍ତେ କି ପୁଣି ଥରେ ମୁଁ ସେହି ବିଭାଗର ଛାତ୍ର ହୋଇ ସେଇ ପ୍ରଣମ୍ୟ ବ୍ୟକ୍ତିତ୍ୱଙ୍କ ଶିକ୍ଷା ପାଇବାର ସୌଭାଗ୍ୟ ଲାଭ କରନ୍ତି !!!

●

*ଅଧ୍ୟାପକ, ଓଡ଼ିଆ ବିଭାଗ*
*କଳିଙ୍ଗ ମହାବିଦ୍ୟାଳୟ, ଜି.ଉଦୟଗିରି*

# ଏକ ପରଶମଣି : ଭଞ୍ଜବିହାର

ଡ. ଅଜୟ କୁମାର ତ୍ରିପାଠୀ

୧ ୯ ୯ ୨ ମସିହା ଡିସେମ୍ବର ମାସର ସେ ଥିଲା ଏକ ଅଳସ ଅପରାହ୍ଣ । ମୋ ପାଇଁ ଏକ ଅନନ୍ୟ ମୁହୂର୍ତ୍ତ । ଶ୍ରୀକୃଷ୍ଣଚନ୍ଦ୍ର ଗଜପତି ମହାବିଦ୍ୟାଳୟ, ପାରଳାଖେମୁଣ୍ଡିର ଓଡ଼ିଆ ବିଭାଗରୁ ସ୍ନାତକୋତ୍ତର ଶିକ୍ଷା ଲାଭ କରିସାରିବା ପରେ ଗବେଷଣା କରିବାର ଅଭୀପ୍ସା ମଧ୍ୟରେ ମୁଁ ପାଦ ଦେଇଥିଲି ଓଡ଼ିଆ ବିଭାଗ ମଧ୍ୟରେ । ପାରମ୍ପରିକ ଭାବରେ । ମୋ ସାଙ୍ଗରେ ଥିଲେ ପାରିବାରିକ ଦିଗ୍‌ଦର୍ଶକ ଓ ବାଣିଜ୍ୟ ବିଭାଗର ତତ୍‌କାଳୀନ ଅଧ୍ୟାପକ ଅଶୋକ କୁମାର ମହାନ୍ତି । ପରବର୍ତ୍ତୀ ସମୟରେ ମୋ ଜୀବନର ବନ୍ଧୁ, ପରାମର୍ଶଦାତା, ଦିଗ୍‌ଦର୍ଶକ ପାଲଟି ଯାଇଥିବା ଡ. ଦେବୀପ୍ରସନ୍ନ ପଟ୍ଟନାୟକଙ୍କ ସହ ସେଠାରେ ପ୍ରଥମ ସାକ୍ଷାତ୍ । ପ୍ରଥମ ଦର୍ଶନରେ ହିଁ ସେହି ବ୍ୟକ୍ତିତ୍ୱଙ୍କ ପ୍ରେମରେ ଥିଲି ମୁଁ । ବ୍ୟକ୍ତିଗତ ଶାରୀରିକ ସମସ୍ୟା ହେତୁ ମୁଁ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ସ୍ନାତକୋତ୍ତର ବିଭାଗର ଛାତ୍ର ହୋଇ ନପାରିବାର ଅବସୋସ ବୋଧହୁଏ ସେହି ମୁହୂର୍ତ୍ତରେ ମିଳାଇ ଯାଇଥିଲା । ମୁଁ ପାଲଟି ଯାଇଥିଲି ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗର ଗବେଷକ ।

ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ସହ ଅଣପାରମ୍ପରିକ ଭାବରେ ସମ୍ପର୍କ ଅନେକ ଦିନର । ବିଶ୍ୱବିଦ୍ୟାଳୟ ସ୍ତରୀୟ ଅନେକ ପ୍ରତିଯୋଗିତାର ସଫଳ ପ୍ରତିଯୋଗୀ ଥିଲି ମୁଁ । ବିଶ୍ୱବିଦ୍ୟାଳୟ ତର୍କ ପ୍ରତିଯୋଗିତାରେ ଚାରି ଥର ବିଜୟୀ ଭାବରେ ତଥା ନାଟକ, ସ୍କିଟ୍, ମୁଟକୋଟ୍ ପ୍ରତିଯୋଗିତାରେ ବିଶ୍ୱବିଦ୍ୟାଳୟକୁ ରାଜ୍ୟ ଓ ଜାତୀୟ ସ୍ତରରେ ପ୍ରତିନିଧିତ୍ୱ କରି ବିଶ୍ୱବିଦ୍ୟାଳୟ ସହ ବାନ୍ଧି ହୋଇଯାଇଥିଲି ମୁଁ । ନାଟ୍ୟ, ସାଂସ୍କୃତିକ ଜୀବନର ଦିଗ୍‌ଦର୍ଶକ ଡ. ଗୁରୁଚରଣ ପାତ୍ର, ବନ୍ଧୁଶ୍ରୀ ଶିଶିର ଭଟ୍ଟ ମିଶ୍ର, ଜଗନ୍‌ମୋହନ ମହାପାତ୍ର, ଫକୀରମୋହନ ନାହାକ ଇତ୍ୟାଦିଙ୍କ ସଂସ୍ପର୍ଶରେ ଅନେକ ମଧୁର ଅନୁଭୂତି ବିଶ୍ୱବିଦ୍ୟାଳୟର; କିନ୍ତୁ ଗବେଷକ ଭାବରେ ଓଡ଼ିଆ ବିଭାଗରେ ପ୍ରବେଶ ସତେ ଯେମିତି ବଦଳାଇ ଦେଇଥିଲା ଜୀବନର ଗତିପଥ ।

୧ ୯ ୯ ୬ ମସିହାରେ ଓଡ଼ିଶା ରାଜ୍ୟ ପ୍ରାଶାସନିକ ନ୍ୟାୟାଧିକରଣ, ଭୁବନେଶ୍ୱରରେ ଯୋଗଦେବା ପରେ ସାମୟିକ ଭାବରେ ଗବେଷଣା କାର୍ଯ୍ୟରୁ ଓହରି ଯାଇଥିଲି । କିନ୍ତୁ ଭଗବାନଙ୍କ ନିର୍ଦ୍ଦେଶ ଥିଲା ଭିନ୍ନ । ୧ ୯ ୯ ୯ ମସିହା ଓଡ଼ିଶା ଲୋକସେବା ଆୟୋଗ ଦ୍ୱାରା କନିଷ୍ଠ ଅଧ୍ୟାପକ ଭାବରେ ଚୟନ ହୋଇସାରିବା ପରେ ମୁଁ ଯୋଗ

ଦେଲି ଶ୍ରୀକୃଷ୍ଣଚନ୍ଦ୍ର ଗଜପତି ମହାବିଦ୍ୟାଳୟରେ ଓ ପୁଣି ଥରେ ଯୋଡ଼ି ହୋଇଗଲି ବିଭାଗ ସହିତ । ଆଜି ପର୍ଯ୍ୟନ୍ତ ଏହି ସମ୍ପର୍କ ଅତୁଟ । ଜୀବନରେ ଅନେକ ଆଶୀର୍ବାଦ ପାଇଛି ଅଶ୍ୱିନୀ ସାର୍, କୃଷ୍ଣ ସାର୍, ପ୍ରସନ୍ନ ସାର୍‌ଙ୍କ ଠାରୁ, ଅନେକ ସ୍ନେହ ପାଇଛି ଶରତ, ବିଭୁ, ହୃଷୀ, ପ୍ରତ୍ୟୁଷ ଓ ବିଭାଗ ସହିତ ଜଡ଼ିତ ହୋଇ ରହିଥିବା ସମସ୍ତ ଅନ୍ତରଙ୍ଗ ମଣିଷମାନଙ୍କ ଠାରୁ । ମୋ ପାଇଁ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗ ଏକ ପରଶମଣି, ଯାହାର ସ୍ପର୍ଶରେ ମୁଁ ମାଟିରୁ ପାଲଟି ଯାଇଛି ସୁବର୍ଣ୍ଣ ପିତୁଳା । ସମସ୍ତଙ୍କୁ ସହସ୍ର ନମସ୍କାର ।

●

*ପ୍ରାଧ୍ୟାପକ, ଓଡ଼ିଆ ବିଭାଗ*

*ଶ୍ରୀକୃଷ୍ଣଚନ୍ଦ୍ର ଗଜପତି କଲେଜ, ପାରଳାଖେମୁଣ୍ଡି*

# କିଛି ସ୍ମୃତି-କିଛି ଅନୁଭୂତି

ଡ. ଚନ୍ଦ୍ରଶେଖର ଦାସ

ସ୍ମୃତି କେବେ ଶୀତଳ ଜହ୍ନରାତି ତ କେବେ ନିରବ ଯନ୍ତ୍ରଣାର ଉଷୁମ ତାତି । ସ୍ମୃତିଟା ସବୁବେଳେ ଏମିତି । ସବୁବେଳେ ସେଇ ସ୍ମୃତି ଭିତରେ ଭିଜିବାକୁ ହୁଏ । ଜଳିବାକୁ ହୁଏ... । ଝୁରିବାକୁ ହୁଏ । ବୋଧହୁଏ ଏ ପ୍ରକ୍ରିୟା ସାରା ଜୀବନ ଚାଲିଥାଏ । ଏହି ଧାରାରେ ୨୦୦୩ରୁ ୨୦୦୭ ପର୍ଯ୍ୟନ୍ତ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ଓଡ଼ିଆ ବିଭାଗର ଛାତ୍ର ଜୀବନ କେବେ ଭୁଲିବାର ନୁହେଁ । ସେତେବେଳେ ଆମ ଓଡ଼ିଆ ବିଭାଗରେ ଆମେ ଯେଉଁମାନେ ପାଠ ପଢୁଥିଲୁ ମୁଁ ଥିଲି ସବୁଠୁ ଦୂରରୁ ଆସିଥିବା ଛାତ୍ର । ମୟୂରଭଞ୍ଜରୁ ଭଞ୍ଜବିହାର । ସେ ପର୍ଯ୍ୟନ୍ତ ଘରୁ ବାହାରକୁ ଆସି ନଥିଲି । ତେଣୁ ଲାଗୁଥିଲା ନିଜ ଗ୍ରହ ଛାଡ଼ି ଆଉ ଏକ ଗ୍ରହରେ ପାଦ ଥାପିଚି । ଅନେକ ସମୟରେ ଘରକଥା ମନେ ପକେଇ ଲୁଚି ଲୁଚି କାନ୍ଦୁଥିଲି । ପରେ ପରେ ବନ୍ଧୁମାନଙ୍କ ଆତ୍ମୀୟତା, ସାର୍‌ମାନଙ୍କ ଭଲ ପାଇବା, ଭଞ୍ଜବିହାରର ପରିବେଶରେ ଏକଦମ୍ ବାନ୍ଧି ହୋଇଗଲି । ସେତେବେଳେ ଓଡ଼ିଆ ବିଭାଗ ଥିଲା ଏକ ପରିବାର । କରସାର୍, ପୂର୍ଣ୍ଣସାର୍, ଅଶ୍ୱିନୀସାର୍, ଦେବୀସାର୍, କୃଷ୍ଣସାର୍, ପ୍ରସନ୍ନସାର୍ ଏବଂ ସଦାନନ୍ଦସାର୍ ଆମମାନଙ୍କୁ ପାଠ ପଢ଼ଉଥିଲେ । ସମସ୍ତେ ଥିଲେ ଜଣେ ଜଣେ ଦକ୍ଷ ଏବଂ ଭଲ ସାର୍ । ଆମ ଗୁରୁ-ଶିଷ୍ୟ ସମ୍ପର୍କ ଥିଲା ଭାରି ନିବିଡ଼ । ଏତେ ଦିନ ପରେ ବି ସେଇ ଗୁରୁମାନଙ୍କ ଭଲ ପାଇବା ଅତୁଟ ଅଛି ।

କରସାର୍ ଆମମାନଙ୍କୁ 'କୁମାର ସମ୍ଭବମ୍' ପଢ଼ାଉଥିଲେ । ଅନେକ ସମୟରେ ଭାରି ମଜା କରୁଥିଲେ । ପୂର୍ଣ୍ଣସାର୍ ଆମକୁ ପାଲି 'ଧମ୍ମପଦ' ପଢ଼ଉଥିଲେ । ଦେବୀସାର୍ ଆଧୁନିକ ଏବଂ ପାଶ୍ଚାତ୍ୟ ସମାଲୋଚନା ସାହିତ୍ୟ ଅତି ଚମତ୍କାର ଢଙ୍ଗରେ ବୁଝଉଥିଲେ । ଅଶ୍ୱିନୀ ସାର୍ ଲୋକ ସାହିତ୍ୟ, କୃଷ୍ଣସାର୍ ରସ, ରୀତି, ଗୁଣ ସହିତ ଲୋକ ସାହିତ୍ୟକୁ ସୁନ୍ଦର ଭାବେ ବୁଝାନ୍ତି । ଏବେ ବି ପାଠରେ କୌଣସି ଜାଗାରେ ଝୁଣ୍ଟିଲେ ସାରଙ୍କୁ ଫୋନ କଲେ ସାର୍ ବୁଝାନ୍ତି । ମୁଁ ମୟୂରଭଞ୍ଜରୁ ଆସିଥିବାରୁ ଅଶ୍ୱିନୀସାର୍ ମୋତେ ମୟୂରଭଞ୍ଜ ବୋଲି ଡାକୁଥିଲେ । ସାର୍ ହେଡ୍ ଥିବା ବେଳେ ଗୋଟେ ଫର୍ମରେ; ଏଇଠି ସନ୍ତକ ଦେ' ବୋଲି କହିଲେ । ମୁଁ ସନ୍ତକର ଅର୍ଥ ବୁଝି ନପାରି କହିଲି ସନ୍ତକ ହଷ୍ଟେଲ୍‌ରେ ରହିଯାଇଚି । ମୋ କଥା ଶୁଣି ସମସ୍ତେ ହସିଲେ । ଦେବୀସାର୍ କହିଲେ ଦସ୍ତଖତ କର । ମୁଁ ମୋ ଭୁଲ୍ ବୁଝିପାରିଲି ।

ଦେବୀସାରଙ୍କଠୁ ମୁଁ ବହୁତ ଭଲ ପାଇବା ପାଇଚି । ଗଣେଶ ପୂଜା, ଦୁର୍ଗା ପୂଜାରେ ତାଙ୍କ ପିଲାମାନଙ୍କ ପାଇଁ ଡ୍ରେସ୍ କିଣିଲା ବେଳେ ମୋ ପାଇଁ ବି ସାର୍ ଡ୍ରେସ୍

କିଣି ଦେଇଚନ୍ତି । ମୋର ଏମ୍.ଫିଲ୍. ବେଳେ ଅନେକ ସମୟରେ ସାର୍‌ଙ୍କ ଘରେ ଖିଆପିଆ କରି ପାଠ ପଢ଼ିଛି । ସାର୍‌ଙ୍କ ଉତ୍ସାହ, ପ୍ରେରଣାରେ କବିତା ଲେଖିବା ଶିଖିଛି; ପାଞ୍ଚ ଜଣକ ସାମ୍ନାରେ ଦି'ପଦ କଥା କହିବାର ସାହସ ପାଇଛି । ପ୍ରସନ୍ନସାର୍ ଆମମାନଙ୍କୁ ନାଟ୍ୟ ସାହିତ୍ୟର ଇତିହାସ ଏବଂ ସଦାନନ୍ଦସାର୍ ଭାଷା ବିଜ୍ଞାନ ପଢ଼ଉଥିଲେ । ଆଜି ୧୦/୧୨ ବର୍ଷ ପରେ ବି ସାର୍‌ମାନଙ୍କ ସହିତ ସମ୍ପର୍କ ଅତୁଟ ଅଛି । ପ୍ରସନ୍ନସାର୍‌ଙ୍କ ଆତ୍ମୀୟତା ଓ ପ୍ରେରଣା, ନାୟକସାର୍‌ଙ୍କର ଶ୍ରଦ୍ଧା ସତରେ ଭୁଲି ହେବନି ।

ଭଞ୍ଜବିହାରରେ ପଢ଼ିଲା ବେଳେ ମୁଁ ନାଗାବଳୀ ହଷ୍ଟେଲ୍ ରୁମ୍ ନଂ-୫୫ରେ ରହୁଥିଲି । ପ୍ରଦୀପ ୫୨ ନମ୍ବର ରୁମ୍‌ରେ ରହୁଥିଲା । ଆମେ କେତେ ଜଣ ସାଙ୍ଗ ମିଶି ପ୍ରଦୀପକୁ ଭୂତ ହେଇ ଡରେଇଥିଲୁ । ପ୍ରଦୀପ ଏତେ ଡ଼ରିଯାଇଥିଲା ଯେ ହଷ୍ଟେଲ୍ ଛାଡ଼ି ଗାଁକୁ ଯିବାକୁ ବାହାରି ପଡ଼ିଲା । ଭୂତ ପ୍ରସଙ୍ଗ ଆମ ଥାର୍ଡ଼ ଲେଡ଼ିଜ୍ ହଷ୍ଟେଲ୍ ପର୍ଯ୍ୟନ୍ତ ବ୍ୟାପି ଯାଇଥିଲା । ପ୍ରସନ୍ନସାର୍ ପ୍ରଦୀପକୁ ବୁଝାସୁଝା କରି ହଷ୍ଟେଲ୍‌ରେ ରଖିଲେ । ଭୂତର ପତ୍ତା ମିଳିଲାନି । ମଜା କଥା ହେଉଛି, ଏ ପର୍ଯ୍ୟନ୍ତ ମଧ୍ୟ ଭୂତ ପ୍ରସଙ୍ଗରେ ପ୍ରଦୀପ କିଛି ଜାଣିନି ।

ବେଳେବେଳେ ଭାବେ ଭଞ୍ଜବିହାରର ଓଡ଼ିଆ ବିଭାଗ ମୋତେ ଦେଇଛି କ'ଣ ? କିନ୍ତୁ ଏକଥା ବି ଭାବେ କ'ଣ ନ ଦେଇଛି ଯେ..!!! ଜୀବନରେ କାଣିଚାଏ ଯଦି ସଫଳତା ପାଇଥାଏ, ତେବେ ଆମ ବିଭାଗ ଏବଂ ସାର୍‌ମାନଙ୍କ ଆଶୀର୍ବାଦ ଦ୍ୱାରା ହିଁ ସମ୍ଭବ ହେଇଚି । ଏ ବିଭାଗର ଅନ୍ୟ ସମସ୍ତ ଛାତ୍ର ମଧ୍ୟ ଏକଥା ସ୍ୱୀକାର କରିବେ । ବେଳେବେଳେ ଏମିତି ବି ଇଚ୍ଛା ହୁଏ ସମୟ ହଠାତ୍ ଅଟକି ଯାଆନ୍ତା କି !! ପହଞ୍ଚି ହୁଅନ୍ତା କି ଅତୀତର ସ୍ମୃତିଭିଜା ଦିନଗୁଡ଼ିକରେ । ହଜିଯାଇଥିବା ଦିନଗୁଡ଼ିକ ପୁଣି ଫେରିଆସନ୍ତା କି ! ।ଆଉ ଥରେ ଆରମ୍ଭ ହୁଅନ୍ତା ନୂଆ ଗୋଟେ ଛାତ୍ର ଜୀବନ । ସତରେ ! ସେ ଦିନଗୁଡ଼ିକ କେତେ ମଧୁର ଥିଲା । ନା ଏତେ ଝିନ୍‌ଝିଟ୍ ଥିଲା, ନା ଥିଲା ଜୀବନର ଧାଁ ଦଉଡ଼ । ଦେବୀସାର୍ ଥରେ ସାହିତ୍ୟ ପତ୍ରିକା 'ବିଜୟା'ରେ ସାକ୍ଷାତ୍‌କାର ଦେଇ ଭଞ୍ଜବିହାର ସମ୍ପର୍କରେ କହିଥିଲେ "ଏ ଶିକ୍ଷା ଅନୁଷ୍ଠାନ ହେଉଛି ଛାତ୍ରମାନଙ୍କ ପାଇଁ ଏକ ମୁକ୍ତି ତୀର୍ଥ । ଏକ ଦିଶା ।" ଏ ଶିକ୍ଷା ଅନୁଷ୍ଠାନ ସେମିତି ଛାତ୍ରମାନଙ୍କ ପାଇଁ ମୁକ୍ତିତୀର୍ଥ ହେଇ ରହୁ । ଓଡ଼ିଆ ବିଭାଗ ଏକ ବିଶାଳ ଦ୍ରୁମ ହୋଇ ଠିଆ ହେଉ, ବିଭାଗର ଅର୍ଦ୍ଧ ଶତାବ୍ଦୀ ପୂର୍ତ୍ତି ଅବସରରେ ଏହା ହିଁ କାମନା ।

●

*ଅଧ୍ୟାପକ, ଓଡ଼ିଆ ବିଭାଗ*

*ଶ୍ରୀକୃଷ୍ଣଚନ୍ଦ୍ର ଗଜପତି କଲେଜ, ପାରଳାଖେମୁଣ୍ଡି*

# ମୋ ଏଷଣାର ଏନ୍ତୁଡ଼ିଶାଳ

ଡ. ହୃଷୀକେଶ ପଣ୍ଡା

ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ, ସ୍ନାତକୋତ୍ତର ଓଡ଼ିଆ ବିଭାଗର ସୁବର୍ଣ୍ଣ ଜୟନ୍ତୀ ପାଳନ ପରିପ୍ରେକ୍ଷୀରେ ପ୍ରକାଶ ପାଇବାକୁ ଯାଉଥିବା 'ସ୍ମୃତି ଅନୁଭୂତି'ର ସ୍ୱତନ୍ତ୍ର ବିଶେଷାଙ୍କ ପାଇଁ ପ୍ରଫେସର ପ୍ରସନ୍ନ କୁମାର ସ୍ୱାଇଁଙ୍କ ନିର୍ଦ୍ଦେଶାତ୍ମକ ଅନୁରୋଧରୁ କିଛି ସ୍ମୃତିଚାରଣ କରିବା ଓ ତାହା ଯଥା ସମ୍ଭବ ସଂକ୍ଷିପ୍ତ ହେବାର ସୂଚନା ନିଶ୍ଚିତ ଭାବେ ମୋ ପାଇଁ ଯେତିକି ପୁଲକପ୍ରଦ, ସେତିକି ନୈରାଶ୍ୟଦାୟକ । ପୁଲକପ୍ରଦ ଏଥି ପାଇଁ ଯେ, ବିଭାଗର ସ୍ୱର୍ଣ୍ଣ ଜୟନ୍ତୀରେ ସ୍ମୃତିଚାରଣର ସୌଭାଗ୍ୟ ମିଳିଛି; କିନ୍ତୁ ନୈରାଶ୍ୟଦାୟକ ଏଥି ପାଇଁ ଯେ, ଯେଉଁ ବିଭାଗ ସହିତ ଅନ୍ୟୂନ ତିନି ଦଶନ୍ଧିର କେତେ ସ୍ମୃତି, କେତେ ସମ୍ଭାବନା ଜଡ଼ିତ, ତାକୁ ଯଥାସମ୍ଭବ ସଂକ୍ଷେପରେ ପ୍ରକାଶ କରିବାର ଅସହାୟତା । ଆବେଗର ଅନ୍ତରଙ୍ଗତାକୁ ଶବ୍ଦର ଜ୍ୟାମିତିକ ମାପଚୁପରେ ପ୍ରକାଶ କରିବାର କୁଶଳ ବାକ୍ କଳା ଆୟତ୍ତାଧୀନ ନହେଲେ; ଅନୁଭବର ଆପଣାପଣ ଦିଗହଜା ହେବାର ସମ୍ଭାବନା ଅନୁଭବୀ ପାଇଁ ନୈରାଶ୍ୟଦାୟକ ନୁହେଁ କି ? ସୁତରାଂ, ମୋ ଆବେଗ-ମୋ ଆତ୍ମାନୁଭୂତିରେ ମୋ ସମୁଦାୟ ଜୀବନକାଳକୁ, ମୋ ଅସ୍ତିତ୍ୱର ଶ୍ୟାମଳ-ସାରାଂଶ ହୋଇ ମୋତେ ନିତ୍ୟ ପୁଲକିତ କରୁ; କିନ୍ତୁ ଅନୁଭୂତିର ଆତ୍ମକଥା କେବଳ ଏକ ଔପଚାରିକ ହେଉ ।

ମୋ ବିଭାଗ ମୋ ଏଷଣାର ଏନ୍ତୁଡ଼ିଶାଳ, ମୋ ବିଶ୍ୱାସର ବୈତରିଣୀ ଏବଂ ମୋ ଅସ୍ମିତାର ଅର୍କକ୍ଷେତ୍ର । ମୁଁ ଗତ ଶତାବ୍ଦୀର ଶେଷ ଦଶନ୍ଧିର କ୍ରମାରମ୍ଭ (୧୯୮୯-୯୧) ଅର୍ଥାତ୍ ଏକ ସନ୍ଧିକାଳରେ ବିଭାଗୀୟ ଛାତ୍ର ହେବାର ସୌଭାଗ୍ୟପ୍ରାପ୍ତ ହୋଇଥିଲି । ମନରେ ଯେଉଁ ଅସୁମାରୀ ସ୍ୱପ୍ନ ଓ ସମ୍ଭାବନାର ଅନିବାର ଆକର୍ଷଣ ଥିଲା, ତାକୁ ଦିଶା ଦର୍ଶନ କରାଇବାରେ ସେତେବେଳେ ବିଭାଗର ସର୍ବକନିଷ୍ଠ ଅଧ୍ୟାପକ, ଆଜି ବିଭାଗୀୟ ମୁଖ୍ୟ ପ୍ରଫେସର୍ ଦେବୀପ୍ରସନ୍ନ ପଟ୍ଟନାୟକଙ୍କ ଉଦାର ସହଯୋଗ ମୋତେ ମୋ ଶିକ୍ଷାବର୍ଷରେ ଅନ୍ୟତମ କୃତୀ ଛାତ୍ର ଭାବେ ଗଢ଼ି ତୋଳିବାର ଆତ୍ମବିଶ୍ୱାସକୁ ପ୍ରେରିତ କରିଥିଲା । ମୁଁ ଥିଲି ବିଭାଗର ପାଠଚକ୍ର ସମ୍ପାଦକ ଓ ମୋ ସମୟରେ ସର୍ବାଧିକ ପାଠଚକ୍ର, କର୍ମଶାଳା ଆୟୋଜନ କରି ସେସବୁର ଏକ ତଥ୍ୟଭିତ୍ତିକ ସୂଚନା ପୁସ୍ତିକା 'ଆମ ପରିବାର : କିଛି ମୁହଁ-କିଛି କଥା' ପ୍ରକାଶ କରିଥିଲି । ୧୯୯୧ରେ ମୋର ସ୍ନାତକୋତ୍ତର ଶିକ୍ଷା ଶେଷ ବର୍ଷରେ । ଏ ଭିତରେ ମୁଁ ପ୍ରାୟ ବିଭାଗୀୟ ସମସ୍ତ ଶିକ୍ଷାଗୁରୁଙ୍କର ଅନ୍ୟତମ ପ୍ରିୟଛାତ୍ର ହୋଇପାରିଥିବାର ଏକ ବିଶ୍ୱାସକୁ ଅସ୍ୱୀକାର କରିପାରୁ ନାହିଁ । ଆମ ସମୟରେ ପ୍ରଫେସର୍

ସୀତାରାମ ମହାପାତ୍ର, ପ୍ରଫେସର୍ ସୁଦର୍ଶନ ଆଚାର୍ଯ୍ୟ, ପ୍ରଫେସର୍ ଦାଶରଥି ଦାସ, ପ୍ରାଧ୍ୟାପକ ବାଉରୀବନ୍ଧୁ କର, ଅଧ୍ୟାପକ ପୂର୍ଣ୍ଣଚନ୍ଦ୍ର ମିଶ୍ର, ଅଧ୍ୟାପକ ଅଶ୍ୱିନୀ କୁମାର ପଣ୍ଡା ଏବଂ ଅଧ୍ୟାପକ ଦେବୀପ୍ରସନ୍ନ ପଟ୍ଟନାୟକ ଆମର ଶିକ୍ଷାଗୁରୁ ଥିଲେ । ଆମ ସମୟରେ ଦେବୀସାର୍ ଥିଲେ ସମସ୍ତଙ୍କ ଆକର୍ଷଣ ଓ ଉତ୍ସାହର କେନ୍ଦ୍ରବିନ୍ଦୁ । ତାଙ୍କର ସମ୍ଭ୍ରାନ୍ତ ବେଶଭୂଷା, ଗମ୍ଭୀର ମୁଖମଣ୍ଡଳ ଓ ମାର୍ଜିତ ଆଚରଣ ତଥା ଛାତ୍ରଛାତ୍ରୀଙ୍କ ସହିତ ବନ୍ଧୁ ସୁଲଭ ବ୍ୟବହାର ଆମମାନଙ୍କୁ ତାଙ୍କର ନିକଟତର କରିଥିଲା ଓ ମୁଁ ସାର୍‌ଙ୍କ ଅତି ନିକଟତମ ଥିଲି । ପରବର୍ତ୍ତୀ ସମୟରେ ସାର୍‌ଙ୍କ ପରାମର୍ଶରେ ମୁଁ ପ୍ରଫେସର୍ ସୁଦର୍ଶନ ଆଚାର୍ଯ୍ୟଙ୍କ ଅଧୀନରେ ଆରମ୍ଭ କଲି ମୋ ଗବେଷକର ଜୀବନ ଓ କ୍ରମେ ଆଚାର୍ଯ୍ୟସାର୍ ହୋଇଗଲେ ମୋ ଜ୍ଞାନ, ଗବେଷଣା ଓ ଏଷଣାର ମୁଗ୍‌ଧ ମହୋଦଧି । ୧୯୮୯ରୁ -୨୦୦୧ ଦୀର୍ଘ ବାରବର୍ଷ ଧରି ମୁଁ ଭଞ୍ଜବିହାର ଛାତ୍ରାବାସରେ ଅବସ୍ଥାନ ପୂର୍ବକ ବିଭାଗ ସହିତ ପ୍ରତ୍ୟକ୍ଷ ଭାବେ ସମ୍ପୃକ୍ତ ଥିଲି । ଆଚାର୍ଯ୍ୟସାର୍‌ଙ୍କ ସହିତ ମିଶି ବିଭିନ୍ନ ଅଞ୍ଚଳରୁ ତାଳପତ୍ର ପୋଥି ସଂଗ୍ରହ, ଦାଶରଥି ସାର୍‌ଙ୍କ ପ୍ରକୋଷ୍ଠରେ ପାଠଚକ୍ର ପାଇଁ ଉଦ୍ଦିଷ୍ଟ ଓ ମୋ ଦ୍ୱାରା ପ୍ରସ୍ତୁତ ପ୍ରବନ୍ଧ ଗୁଡ଼ିକର ଆଳାପ-ଆଲୋଚନା, ଅଶ୍ୱିନୀସାର୍‌ଙ୍କ ସହିତ ମାଣ୍ଡିଆପଲ୍ଲୀ ହନୁମାନ ମନ୍ଦିରରେ ସାନ୍ଧ୍ୟ ଭଜନ ଏବଂ ଦେବୀସାର୍‌ଙ୍କ ସହିତ ବିଳମ୍ବିତ ରାତ୍ରି ପର୍ଯ୍ୟନ୍ତ ବିଭିନ୍ନ ଲୋକନୃତ୍ୟର ଭିଡ଼ିଓ ଚିତ୍ର ଉତ୍ତୋଳନ ଜନିତ ମଧୁର ଅନୁଭୂତିରେ ମୋ ଛାତ୍ର ଜୀବନ ଥିଲା ମୋ ପାଇଁ ମହାର୍ଘ । ଆଜି ଦେବୀସାର୍‌ଙ୍କୁ ଛାଡ଼ି ସମସ୍ତ ଶିକ୍ଷାଗୁରୁ ଅବସର ନେଇ ସାରିଲେଣି ଏବଂ ବହୁ ନୂତନ ଅଧ୍ୟାପକଙ୍କ ଆଗମନରେ ବିଭାଗ ଆଜି ସୁବର୍ଣ୍ଣ ଜୟନ୍ତୀ ପାଳନ କରୁଛି, ଏହା ଆମ ପାଇଁ ଗୌରବର ବିଷୟ ନିଶ୍ଚୟ ।

ମୁଁ ବିଶ୍ୱବିଦ୍ୟାଳୟର ଖୁବ୍ ନିକଟରେ ନରେନ୍ଦ୍ରପୁରସ୍ଥିତ କ୍ଷେତ୍ରମୋହନ ବିଜ୍ଞାନ ମହାବିଦ୍ୟାଳୟରେ ଅଧ୍ୟାପକ ଭାବେ କାର୍ଯ୍ୟରତ; କିନ୍ତୁ ବୃତ୍ତିଗତ ଚାପ, କ୍ରମବର୍ଦ୍ଧିଷ୍ଣୁ ପାରିବାରିକ ଜଞ୍ଜାଳ ଓ ବ୍ୟକ୍ତିଗତ କାର୍ଯ୍ୟବ୍ୟସ୍ତତା ବଶତଃ ବିଭାଗୀୟ କାର୍ଯ୍ୟରେ ପ୍ରତ୍ୟକ୍ଷ ସହଯୋଗ କରିବାର ସୌଭାଗ୍ୟରୁ ବଞ୍ଚିତ ହୋଇ ନିଜକୁ ଅଧମାଧମ ମନେ କରୁଛି । ମାତ୍ର ପ୍ରଫେସର୍ ପ୍ରସନ୍ନ କୁମାର ସ୍ୱାଇଁଙ୍କ ସଦୁଦ୍ୟମ ତଥା ବିଭାଗୀୟ କର୍ମକର୍ତ୍ତାଙ୍କ ଏ ପଦକ୍ଷେପକୁ ପ୍ରଶଂସା କରିବାର ଶ୍ରେୟରୁ ନିଜକୁ ବଞ୍ଚିତ କରୁ ନାହିଁ ।

•

*ଅଧ୍ୟାପକ, ଓଡ଼ିଆ ବିଭାଗ*
*କ୍ଷେତ୍ରମୋହନ ବିଜ୍ଞାନ ମହାବିଦ୍ୟାଳୟ,*
*ନରେନ୍ଦ୍ରପୁର, ଗଞ୍ଜାମ*

# ଋଣ ସ୍ୱୀକାର

**ଡ. ଡମ୍ବରୁଧର ଦାସ**

ଦକ୍ଷିଣ ଓଡ଼ିଶାର ବାଣୀଭଣ୍ଡାର ତଥା ଓଡ଼ିଶାର ଏକ ଅଗ୍ରଣୀ ଶିକ୍ଷାନୁଷ୍ଠାନ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ ଓ ଗବେଷଣା କରିବାର ଦୁର୍ବାର ସୁଯୋଗ ଲାଭ କରିଥିବା ହେତୁ ମୁଁ ନିଜକୁ ଖୁବ୍ ଗୌରବାନ୍ୱିତ ମନେ କରେ । ଜ୍ଞାନ ସାଧନାର ଉତ୍କର୍ଷ କେନ୍ଦ୍ରରେ ସାମିଲ୍ ରହି ତା' ମଧ୍ୟରୁ କାଣିଚାଏ ହାସଲ କରିଥିବାରୁ ଆଜି ମୁଁ ସେଇ ପୀଠକୁ ଭକ୍ତିପୂତ ପ୍ରଣତି ଜ୍ଞାପନ କରୁଛି । ଯେଉଁ ମାଟି ମୋତେ ବିଦ୍ୟା ଦେଇଛି, ଯେଉଁ ମାଟି ମୋ' ଭିତରେ ଉଚ୍ଚାକାଂକ୍ଷୀ ହେବାର ସ୍ୱପ୍ନ ଜାଗ୍ରତ କରାଇପାରିଛି ଏବଂ ଯେଉଁ ମାଟିର ମହାପୁରୁଷ ମୋତେ ନବଜନ୍ମ ଦେଇଛନ୍ତି, ସେଇ ମୁଗ୍ଧ ମାଟି ନିକଟରେ ଋଣ ସ୍ୱୀକାର କରୁଛି । ମହୋଦଧିର ମନ୍ଦ ମଧୁର ବାତ, ଝାଉଁବଣର ଶୀତଳ ଛାଇ, ବନ୍ଧୁଗଣଙ୍କ ସ୍ନିଗ୍ଧ ବନ୍ଧୁପଣ ଓ ସର୍ବୋପରି ଗୁରୁଙ୍କ ଜୀବନ ଗଠନ ମନ୍ତ୍ର ଭିତରେ ସମୟ କେତେ ଶୀଘ୍ର ଅତିକ୍ରମି ଗଲା ଜଣାପଡ଼ିଲା ନାହିଁ । ସବୁ କିନ୍ତୁ ଜୀବନ୍ତ ସ୍ମୃତି ହୋଇ ଆଜି ସତେଜ ଅଛି ।

ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଅନେକ ବିଭାଗ ମଧ୍ୟରୁ ସର୍ବପୁରାତନ ବିଭାଗ ଅଟେ ଓଡ଼ିଆ ବିଭାଗ; ଯାହାର ଛାତ୍ର ମୁଁ ଏଇ ନିକଟ ଅତୀତରେ ଥିଲି । ୨୦୦୫ ମସିହାରେ ସ୍ନାତକୋତ୍ତର ଶ୍ରେଣୀରେ ବହୁ ଆଶା ଓ ସମ୍ଭାବନା ନେଇ ଯୋଗ ଦେଇଥିଲି । ତା'ପରଠୁଁ ଆଉ ପଛକୁ ଫେରିଚାହିଁନି । ଭଗବାନଙ୍କ ଅପାର କୃପା ଓ ଗୁରୁଜନଙ୍କ ଆଶିଷରୁ ସଫଳତାର ସହ ଗୋଟିଏ ଗୋଟିଏ ସୋପାନକୁ ଆରୋହଣ କରି ମୁଁ ଓଡ଼ିଶାର ଦ୍ୱିତୀୟ ପୁରାତନ ସରକାରୀ ମହାବିଦ୍ୟାଳୟରେ ଅଧ୍ୟାପନା କରିବାର ସୁଯୋଗ ଲାଭ କରିଥିଲି । ଏବେ ଜୟପୁର ସରକାରୀ ମହିଳା ମହାବିଦ୍ୟାଳୟରେ । ଏସବୁ କେବଳ ସ୍ୱାଧ୍ୟାୟ ନୁହେଁ; ବରଂ ଗୁରୁଜନଙ୍କ ସମୟୋଚିତ ପରାମର୍ଶ ଓ ଦିଗଦର୍ଶନ ହେତୁ ସମ୍ଭବ ହୋଇପାରିଛି । ତେଣୁ ମୁଁ ସମସ୍ତଙ୍କୁ ନତମସ୍ତକ ପୂର୍ବକ ଶ୍ରଦ୍ଧା ଓ ପ୍ରଣତି ଜ୍ଞାପନ କରୁଛି । ଆଶା, ସେମାନଙ୍କ ଶୁଭେଚ୍ଛା ଓ ଆଶୀର୍ବାଦ ଚିରକାଳ ଏ ଅଧମ ପାଇଁ ବରଦାନ ସଦୃଶ କାର୍ଯ୍ୟ କରୁଥିବ ।

ସ୍ମୃତି ରୋମନ୍ଥନ କଲେ ମନେ ପଡ଼େ, ପଢ଼ିବା ସମୟରେ ପ୍ରଫେସର୍ ବାଉରୀବନ୍ଧୁ କର ଓଡ଼ିଆ ସାହିତ୍ୟର ଇତିହାସ ଓ 'କୁମାର ସମ୍ଭବମ୍' ପଢ଼ାଉଥିଲେ । ଉଚ୍ଚସ୍ୱରରେ ସ୍ପଷ୍ଟ ଭାବେ ସଂସ୍କୃତ ଶ୍ଳୋକ ଉଚ୍ଚାରଣ ଓ ତପସ୍ୱିନୀ ପାର୍ବତୀଙ୍କ ବର୍ଷାଋତୁର ତପ ଆଚରଣ କଥା ବର୍ଣ୍ଣନା କରିବାରେ ସେ ସିଦ୍ଧହସ୍ତ ଥିଲେ । ସେତେବେଳେ ଆମେ ସମସ୍ତେ ମନ ଭରି ସାର୍‌ଙ୍କ ପାଠପଢ଼ା ଶୈଳୀକୁ ଉପଭୋଗ କରୁଥିଲୁ ।

ପୁଣି ପ୍ରଫେସର୍ ଅଶ୍ୱିନୀ କୁମାର ପଣ୍ଡାଙ୍କ ଲୋକ ସାହିତ୍ୟ ଓ ଭାଷାତତ୍ତ୍ୱ ଶିକ୍ଷାଦାନ, ପ୍ରଫେସର ଦେବୀପ୍ରସନ୍ନ ପଟ୍ଟନାୟକଙ୍କ ଆଧୁନିକ ସାହିତ୍ୟ, ପାଶ୍ଚାତ୍ୟ ସାହିତ୍ୟ, କଥା ସାହିତ୍ୟ ସମ୍ପର୍କରେ ପୁଙ୍ଖାନୁପୁଙ୍ଖ ବିଶ୍ଳେଷଣ, ପ୍ରଫେସର ପୂର୍ଣ୍ଣଚନ୍ଦ୍ର ମିଶ୍ରଙ୍କ ଭଞ୍ଜସାହିତ୍ୟ, ଜଗନ୍ନାଥ ଚେତନା ଓ ପାଲି 'ଧମ୍ମପଦ' ପାଠ, ପ୍ରଫେସର୍ କୃଷ୍ଣଚନ୍ଦ୍ର ପ୍ରଧାନଙ୍କ ପ୍ରାଚ୍ୟ ସାହିତ୍ୟ ସହିତ ଆଧୁନିକ ସାହିତ୍ୟର ଚମତ୍କାର ବିଶ୍ଳେଷଣ, ପ୍ରଫେସର୍ ପ୍ରସନ୍ନ କୁମାର ସ୍ୱାଇଁଙ୍କ ଆଧୁନିକ ଓଡ଼ିଆ ସାହିତ୍ୟରେ ଶିକ୍ଷାଦାନ ପୁଣି ପ୍ରଫେସର୍ ସଦାନନ୍ଦ ନାୟକଙ୍କ ଭାଷାତାତ୍ତ୍ୱିକ ଅଧ୍ୟାପନା ଚିରକାଳ ସ୍ମରଣୀୟ । ଆଜି ମଧ୍ୟ ପ୍ରତ୍ୟେକ ଶ୍ରେଣୀ ପ୍ରକୋଷ୍ଠରେ ଅଧ୍ୟୟନ କଲା ଭଳି ମନେ ହେଉଛି । ଗୁରୁଜନଙ୍କ ଶିକ୍ଷାଦାନ ଶୈଳୀ, ସମୟାନୁବର୍ତ୍ତିତା, ସାଧୁତା ଓ ପରୋପକାରୀ ମନୋଭାବକୁ ପାଥେୟ କରି ମୁଁ ଆଜି ସ୍ୱୀୟ କର୍ମମୟ ଜୀବନ ଅତିବାହିତ କରୁଛି । ଏଥି ନିମନ୍ତେ ମୁଁ ନିଜକୁ ଖୁବ୍ ଧନ୍ୟ ମନେ କରୁଛି । ବିଦ୍ୟା ଅଧ୍ୟୟନ ସମୟରେ ଯେଉଁ ପାରିବାରିକ ବନ୍ଧନରେ ଆମେ ଏକତ୍ରିତ ହୋଇଥିଲୁ, ତାହା ଆଜି ମଧ୍ୟ କାଏମ ଅଛି ଏବଂ ରହିବ ମଧ୍ୟ । ଓଡ଼ିଆ ବିଭାଗ ରୂପକ ବିଦ୍ୟାସାଗରର ବେଳାଭୂମିରୁ କ୍ଷୁଦ୍ର ଉପଳ କିଛି ସଂଗ୍ରହ କରିଥିବାରୁ ମୁଁ ଖୁବ୍ ଆନନ୍ଦିତ ଏବଂ ଆଗାମୀ ଦିନରେ ଜ୍ଞାନ ଉପଳ ସଂଗ୍ରହ ଆଶାରେ ମଧ୍ୟ ଖୁବ୍ ଆଶାବାଦୀ । ଶହ ଶହ ଜିଜ୍ଞାସୁ, ପାଠକ ଓ ଓଡ଼ିଆ ଭାଷା ସାହିତ୍ୟରେ ରୁଚି ରଖୁଥିବା ପ୍ରାଣଙ୍କୁ ଓଡ଼ିଆ ବିଭାଗ ଆମୋଦିତ କରୁଥାଉ, ଏତିକି ଶୁଭେଚ୍ଛା । ଦକ୍ଷିଣ ଓଡ଼ିଶାର ସାଂସ୍କୃତିକ ପ୍ରାଣକେନ୍ଦ୍ର ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଓ ଭାଷା, ସଂସ୍କୃତିର ସୁରକ୍ଷାକାରୀ ଓଡ଼ିଆ ବିଭାଗର ନିର୍ମଳ ଭବିଷ୍ୟତର ଉତ୍ତରୋତ୍ତର ସମୃଦ୍ଧି କାମନା କରୁଛି । ଭାଷା ସାହିତ୍ୟର ଧ୍ୱଜାଧାରୀ, ଜାଗ୍ରତପ୍ରହରୀ ଓଡ଼ିଆ ବିଭାଗ ଚିରକାଳ ଏଭଳି ନବ ନବ ଉନ୍ମେଷଶାଳିନୀ ପ୍ରଜ୍ଞାରେ ଭଞ୍ଜଭୂମିକୁ ରୁଦ୍ଧିମନ୍ତ କରୁଥାଉ, ଏତିକି ଶୁଭକାମନା ।

•

*ଅଧ୍ୟାପକ, ଓଡ଼ିଆ ବିଭାଗ*
*ଶ୍ରୀକୃଷ୍ଣଚନ୍ଦ୍ର ଗଜପତି ମହାବିଦ୍ୟାଳୟ,*
*ପାରଳାଖେମୁଣ୍ଡି*

# ସ୍ମୃତିରୁ ଖିଏ

ଡ. କଳ୍ପତରୁ ନାୟକ

ଓଡ଼ିଆ ଭାଷା-ସାହିତ୍ୟର ବିକାଶ ଓ ଉନ୍ନତି କ୍ଷେତ୍ରରେ ବ୍ୟକ୍ତିର ଯେତିକି ଭୂମିକା ରହିଛି, ଅନୁଷ୍ଠାନର ମଧ୍ୟ ସେତିକି ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ବ୍ୟକ୍ତି ନିଜେ ବ୍ୟକ୍ତିଗତ ଭାବେ ଭାଷା-ସାହିତ୍ୟର ଉନ୍ନତି କଲା ବେଳେ ଅନୁଷ୍ଠାନ ସାମୂହିକ ଭାବେ ବ୍ୟକ୍ତିମାନଙ୍କୁ ନେଇ ଭାଷା-ସାହିତ୍ୟର ଉନ୍ନତି ସାଧନ କରେ । ଏ କ୍ଷେତ୍ରରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ ଭାଷା-ସାହିତ୍ୟ ବିଭାଗ ସ୍ମରଣୀୟ । ଏହି ବିଭାଗ ଅନେକ ଛାତ୍ରଛାତ୍ରୀଙ୍କୁ ସାହିତ୍ୟିକ କରି ଗଢ଼ି ତୋଳିଛି ।

୧୯୬୮ ମସିହାରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ଓଡ଼ିଆ ଭାଷା-ସାହିତ୍ୟ ବିଭାଗ ପ୍ରତିଷ୍ଠା ହୋଇଥିଲା । ବିଭାଗର ନିଜସ୍ୱ ପାଠାଗାର ଏବଂ ପୋଥି ଭଣ୍ଡାର ରହିଛି । ମଧ୍ୟଯୁଗୀୟ ପୋଥି ବିଶେଷ ଭାବେ ଉପେନ୍ଦ୍ର ଭଞ୍ଜଙ୍କ ପୋଥିଗୁଡ଼ିକ ଏଠାରେ ସଂରକ୍ଷିତ ହୋଇ ରହିଛି । ବିଭିନ୍ନ ଶୈଳୀରେ ବିଭିନ୍ନ ପତ୍ରରେ ଖୋଦିତ ପୋଥି ଏଠାରେ ସଂରକ୍ଷିତ ।

୨୦୧୦-୧୧ ମସିହାରେ ଏମ୍.ଫିଲ୍. ପାଠ୍ୟକ୍ରମରେ ଯୋଗଦେଇ ମୁଁ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗରେ ଥିବା ଏହି ସବୁ ପାଠ୍ୟ ଭଣ୍ଡାରକୁ ଦେଖିବାର ସୁଯୋଗ ପାଇଥିଲି । ବିଭାଗୀୟ ମୁଖ୍ୟ ଥା'ନ୍ତି ଡ. ପ୍ରସନ୍ନ କୁମାର ସ୍ୱାଇଁ । ସେ ଥିଲେ ମୋର ମାର୍ଗନିର୍ଦ୍ଦେଶକ । ତାଙ୍କରି ତତ୍ତ୍ୱାବଧାନରେ ମୁଁ ମୋ ଡିସ୍ର୍ଟେସନ୍ ପ୍ରସ୍ତୁତ କରିଥିଲି । ସେ ଥିଲେ ଉତ୍ତମ ଗୁରୁ ଏବଂ ଭଲ ସଂଶୋଧକ । ତାଙ୍କ ଆଖିରୁ ଭୁଲ୍ ଶବ୍ଦଟିଏ ଖସିଯାଏ ନାହିଁ । ତାଙ୍କର ଗୋଟିଏ ଉପଦେଶ ସର୍ବଦା ସ୍ମରଣୀୟ – "ମୁଁ ତୁମମାନଙ୍କ ଠାରୁ ଠକାମି ଆଶା କରେ ନାହିଁ । ଏ କ୍ଷେତ୍ରରେ ତୁମେ ମୋତେ ନିରାଶ କରିବନି ।" ଏହି ବକ୍ତବ୍ୟ ହିଁ ମୋତେ ଭଲ ଗବେଷକ ଭାବେ ଗଢ଼ି ତୋଳିଛି ।

ବ୍ରହ୍ମପୁରରେ ଏମ୍.ଫିଲ୍. ପଢ଼ିବା ସମୟରେ ଶିକ୍ଷାଗୁରୁ ଭାବେ ପ୍ର. ବାଉରୀବନ୍ଧୁ କର, ପ୍ର. ଅଶ୍ୱିନୀ କୁମାର ପଣ୍ଡା, ପ୍ର. ଦେବୀପ୍ରସନ୍ନ ପଟ୍ଟନାୟକ ଏବଂ ଡ.ସଦାନନ୍ଦ ନାୟକଙ୍କୁ ପାଇଥିଲି । ଓଡ଼ିଆ ସାହିତ୍ୟର ଇତିହାସ ଓ ପ୍ରବନ୍ଧ ସାହିତ୍ୟରେ ଦକ୍ଷ ଥିଲେ ପ୍ର. ବାଉରୀବନ୍ଧୁ କର । ଲୋକଭାଷା ମାଧ୍ୟମରେ ଲୋକ ସାହିତ୍ୟ ଓ ଲୋକ ସଂସ୍କୃତି ଆଲୋଚନା କରିବାର ବିରଳ ବ୍ୟକ୍ତିତ୍ୱ ଥିଲେ ପ୍ର. ଅଶ୍ୱିନୀ କୁମାର ପଣ୍ଡା, ପ୍ର. ଦେବୀପ୍ରସନ୍ନ ପଟ୍ଟନାୟକଙ୍କ ପାଶ୍ଚାତ୍ୟ ସାହିତ୍ୟ ସମ୍ପର୍କିତ ତାତ୍ତ୍ୱିକ ବ୍ୟାଖ୍ୟା ସର୍ବଦା ସ୍ମରଣୀୟ । ଓଡ଼ିଆ ଭାଷାଚର୍ଚ୍ଚାର ଏକ ବିରଳ ବ୍ୟକ୍ତିତ୍ୱ ଥିଲେ ଡ. ସଦାନନ୍ଦ ନାୟକ ।

ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗ ଯୋଗୁଁ ମୁଁ ଅନେକ ସାହିତ୍ୟ ଅନୁଷ୍ଠାନ ସହିତ ମିଶିଛି ଏବଂ ସାହିତ୍ୟ ଚର୍ଚ୍ଚାରେ ଭାଗ ନେଇଛି ମଧ୍ୟ । ଓଡ଼ିଆ ଭାଷା ସାହିତ୍ୟର ଛାତ୍ର, ଗବେଷକ ଏବଂ ଅଧ୍ୟାପକ ହେବାରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ଏଣୁ ଏହି ଅନୁଷ୍ଠାନ ନିକଟରେ ମୁଁ ଋଣୀ ରହିବି ।

ଭଗବାନଙ୍କ ନିକଟରେ ପ୍ରାର୍ଥନା, ଏହି ଅନୁଷ୍ଠାନର ଉତ୍ତରୋତ୍ତର ଉନ୍ନତି ହେଉ ।

●

*ଅଧ୍ୟାପକ,*
*ମହାପୁରୁଷ ହାଡ଼ିଦାସ ମହାବିଦ୍ୟାଳୟ*
*ଛତିଆ, କଟକ*

# ସ୍ୱପ୍ନର ସ୍ମୃତି : ଭଞ୍ଜବିହାର

ଡ. ରାଜେନ୍ଦ୍ର କୁମାର ତ୍ରିପାଠୀ

୧୯୮୭-୮୮ ଶିକ୍ଷା ବର୍ଷରେ ମୋ ଅଗ୍ରଜ ସରୋଜ କୁମାର ତ୍ରିପାଠୀ (ବର୍ତ୍ତମାନ ଅଧ୍ୟକ୍ଷ, ଜବାହାର ନବୋଦୟ ବିଦ୍ୟାଳୟ, ପାଣିକୋଇଲି) ଭଞ୍ଜବିହାରର ଉଦ୍ଭିଦ ବିଜ୍ଞାନ ବିଭାଗରେ ଅଧ୍ୟୟନ ସମୟରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଛାତ୍ରାବାସ ନାଗାବଳୀର ୭୩ନଂ ପ୍ରକୋଷ୍ଠରେ ରହୁଥିଲେ । ସେତେବେଳେ ମୁଁ ଦଶମ ଶ୍ରେଣୀର ଛାତ୍ର ଥିଲି ଓ ବୋର୍ଡ଼ ପରୀକ୍ଷା ନିମିତ୍ତ ଅଗ୍ରଜଙ୍କ ପାଖରେ ରହି କିଛି ଦିନ ନିଜକୁ ପ୍ରସ୍ତୁତ କରୁଥିଲି । ଅଗ୍ରଜ ତାଙ୍କ ବନ୍ଧୁମାନଙ୍କ ସହ ବିଭାଗ ଶ୍ରେଣୀ କକ୍ଷରୁ ଛାତ୍ରାବାସକୁ ଆସି ଭଞ୍ଜବିହାର ସମ୍ପର୍କିତ ସ୍ୱପ୍ନମୟ ଆଲୋଚନା କରୁଥିଲେ । ସେମାନଙ୍କ ଆଲୋଚନାକୁ ମୁଁ ନିରବରେ ଗ୍ରହଣ କରି ସେ ସବୁକୁ ସ୍ମୃତିରେ ସାଇତି ରଖୁ ରଖୁ ଏ ମାଟି ଏବଂ ପ୍ରାକୃତିକ ପରିବେଶ ପ୍ରତି ମୋର ମୋହ ଜାଗ୍ରତ ହୋଇଥିଲା । କାରଣ ଏ ମାଟି ମହାନ୍ କବିଙ୍କ ନାମରେ ନାମିତ । ସଂଯୋଗକୁ ସେଇ ସମ୍ରାଟ କବିଙ୍କ ଜନ୍ମପୀଠ ଘୁମୁସର ଅଞ୍ଚଳରେ ମଧ୍ୟ ମୋର ଜନ୍ମ । ଏ ସ୍ମୃତିର ବହୁ ବର୍ଷ ପରେ ୧୯୯୪ ମସିହାରେ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ମହାବିଦ୍ୟାଳୟରୁ ଓଡ଼ିଆ ସମ୍ମାନରେ ସ୍ନାତକ ଶ୍ରେଣୀ ଉତ୍ତୀର୍ଣ୍ଣ ପରେ ଗ୍ରୀଷ୍ମ ଅବକାଶରେ ଗାଁରେ ମୋ ଅଗ୍ରଜ ଭଞ୍ଜବିହାର ଓଡ଼ିଆ ବିଭାଗର ନାମ ଲେଖାଇବା ପାଇଁ ପରାମର୍ଶ କଲେ । ତାଙ୍କ ପରାମର୍ଶରେ ମନରେ ଚେଇଁ ଉଠିଲା ଭଞ୍ଜବିହାରର ପୂର୍ବସ୍ମୃତି । ତତ୍‌କ୍ଷଣାତ୍ ସମସ୍ତ ପ୍ରମାଣପତ୍ର ଯୋଗାଡ଼ କରି ଓଡ଼ିଆ ବିଭାଗରେ ନାମ ଲେଖାଇବା ପାଇଁ ଦରଖାସ୍ତ କଲି । ସେହି ବର୍ଷ ବିଭାଗରେ ପ୍ରବେଶ ନିମନ୍ତେ ପ୍ରଥମ କରି ପ୍ରବେଶିକା ପରୀକ୍ଷା ଅନୁଷ୍ଠିତ ହେଉଥିଲା । ସେଥିରେ କୃତକାର୍ଯ୍ୟ ହୋଇ ମୋ ସ୍ୱପ୍ନର ଭଞ୍ଜବିହାର ଓଡ଼ିଆ ବିଭାଗରେ ଯୋଗଦେଲି । ମୋ ଅଧ୍ୟୟନ ସମୟରେ ବିଭାଗ ମୁଖ୍ୟ ଥିଲେ ଡ. ଅଶ୍ୱିନୀ କୁମାର ପଣ୍ଡା । ପ୍ରଫେସର୍ ଡ. ସୁଦର୍ଶନ ଆଚାର୍ଯ୍ୟ, ପ୍ରଫେସର୍ ଡ.ଦାଶରଥି ଦାସ, ପ୍ରାଧ୍ୟାପକ ଡ. ବାଉରୀବନ୍ଧୁ କର, ପ୍ରାଧ୍ୟାପକ ଡ. ଦେବୀ ପ୍ରସନ୍ନ ପଟ୍ଟନାୟକ ଏବଂ ପ୍ରାଧ୍ୟାପକ ଡ. ପୂର୍ଣ୍ଣଚନ୍ଦ୍ର ମିଶ୍ର ଆଦି ଜ୍ଞାନର ଅନୁଷ୍ଠାନମାନେ ଆମ୍ଭର ଶିକ୍ଷା, ଦୀକ୍ଷା, ପ୍ରେରଣାଦାତା, ସର୍ବୋପରି ଅଭିଭାବକ ଭାବେ ଉଭା ହୋଇ କାର୍ଯ୍ୟ ତୁଲାଉଥିଲେ । ପରିବାରରୁ ବିଚ୍ଛିନ୍ନ ହୋଇ ଷଷ୍ଠୀ ଗୁରୁ ଏବଂ ଅଗ୍ରଜ ରାଧା ଭାଇନା ଓ ମନୋଜ ଭାଇନାଙ୍କ ଗହଣରେ ଆମ୍ଭେ ରହି ଭିନ୍ନ ଏକ ପରିବାର ଗଢ଼ିଥିଲୁ । ସମସ୍ତଙ୍କ ଭିତରେ ସେ କାଳରେ ଆମେ ଆନ୍ତରିକତା ଅନୁଭବ କରୁଥିଲୁ ।

ଶ୍ରେଣୀ ଗୃହରେ ଗୁରୁ ଶିଷ୍ୟ ପରମ୍ପରା ଥିଲା । ଶ୍ରେଣୀ ବାହାରେ (ବଣଭୋଜି ହେଉ କିମ୍ବା ବିଭାଗର ଅନ୍ୟାନ୍ୟ କାର୍ଯ୍ୟକ୍ରମରେ) ସେ ପରମ୍ପରା ରୂପାନ୍ତରିତ ହୋଇ ଉତ୍ତମ ବନ୍ଧୁର ଭାବ ଜନ୍ମାଉଥିଲା । ଷଷ୍ଠୀ ଗୁରୁଙ୍କ ବିଦ୍ୟା ପ୍ରଦାନ କୌଶଳ ଅନନ୍ୟ । ଏହି ଗୁରୁମାନଙ୍କ ଠାରୁ ଶିକ୍ଷା ପାଇଛୁ ଉତ୍ତମ ବିଦ୍ୟା, ରାଜନୀତି, ନିଜ ଗୋଡ଼ରେ ଠିଆ ହୋଇ ଜୀବନ ଗଢ଼ିବାର କୌଶଳ । ମୋ ପରି ଛାତ୍ରମାନେ ସେହି ବିଦ୍ୟା ଅନୁଷ୍ଠାନମାନଙ୍କ ଠାରୁ ଯାହା ଆହରଣ କରିଛୁ, ଆଜି ଏହି ସ୍ତରରେ ଠିଆ କରାଇବାରେ ସେଗୁଡ଼ିକ ବିଶେଷ ସହାୟକ ହୋଇଛି ।

କାଲି ପରି ଲାଗୁଛି, ମୋ ସ୍ୱପ୍ନ ଓ ସ୍ମୃତିର ଓଡ଼ିଆ ବିଭାଗରେ ପାଦ ଥାପିବାର ୨୩ ବସନ୍ତ ଅତିକ୍ରାନ୍ତ ହୋଇଗଲାଣି । ଏବେ ମଧ୍ୟ ଯେଉଁ କାମରେ ବିଭାଗକୁ ପ୍ରବେଶ କଲେ ମନ ପୂର୍ବ ସ୍ମୃତିକୁ ନେଇ ରୋମାଞ୍ଚିତ ହୋଇଉଠେ । ପ୍ରବେଶ ଦ୍ୱାରରେ ପୁରାତନ ଗୁରୁ କିମ୍ବା ପରିଚିତଙ୍କୁ ଦେଖିଲେ ହୃଦୟ ଆନ୍ତରିକତାରେ ଭରିଯାଏ । ଭୁଲି ହୋଇଯାଏ ଜୀବନ ଜଞ୍ଜାଳ । ଅନ୍ୟ ବିଭାଗ ଠାରୁ ଏ ବିଭାଗକୁ ଭିନ୍ନ କରି ଗଢ଼ି ଏହାର ସ୍ୱତନ୍ତ୍ର ମର୍ଯ୍ୟାଦା ରକ୍ଷା ନିମନ୍ତେ ସମସ୍ତ ଗୁରୁ ଏବଂ ଆମ୍ଭେ ଅକ୍ଳାନ୍ତ ପରିଶ୍ରମ କରି କୃତକାର୍ଯ୍ୟ ହେଉଥିଲୁ । ବିଶେଷ କରି ଆମ ସମୟରେ ବିଭାଗ ମୁଖ୍ୟ ଡ. ଅଶ୍ୱିନୀ କୁମାର ପଣ୍ଡା ଓ ଡ. ଦେବୀପ୍ରସନ୍ନ ପଟ୍ଟନାୟକ ସାର୍ (ବର୍ତ୍ତମାନ ସ୍ନାତକୋତ୍ତର ବିଭାଗ ସମୂହର ଅଧ୍ୟକ୍ଷ) ବିଭାଗର ଉନ୍ନତି କଳ୍ପେ ଦାବିଗୁଡ଼ିକୁ କୁଳପତିଙ୍କ ଠାରେ ଉପସ୍ଥାପନ କରିବାରେ କୃତକାର୍ଯ୍ୟ ହେଉଥିଲେ । ଫଳରେ ଅନ୍ୟ ବିଭାଗଗୁଡ଼ିକର ଦୃଷ୍ଟି ଏ ବିଭାଗ ପ୍ରତି ଆକର୍ଷିତ ହେଉଥିଲା । ସେସବୁ ଆଜି ପର୍ଯ୍ୟନ୍ତ ବଜାୟ ରହିଥିବାର ନମୂନା ଦକ୍ଷିଣ ଓଡ଼ିଶା ସାଂସ୍କୃତିକ ଗବେଷଣା କେନ୍ଦ୍ରକୁ ଦେଖିଲେ ଅନୁଭୂତ ହେଉଛି । ଯେଉଁ ଓଡ଼ିଆ ବିଭାଗରୁ ଏ ଜୀବନକୁ ଗଢ଼ିଛୁ, ତାକୁ ଏ ଜୀବନରେ ଭୁଲିବା ସମ୍ଭବ ନୁହେଁ । ତାର ପ୍ରତ୍ୟେକ ସ୍ମୃତି ମନୋରାଜ୍ୟରେ ଖୋଦିତ ହୋଇଯାଇଛି । ସ୍ମୃତି ଖୋଲିବାକୁ କାଗଜ ଓ ସମୟ ଅଭାବ । ଜୀବନର ସବୁ ସ୍ୱପ୍ନମୟ ଇଚ୍ଛାକୁ ଏ ବିଭାଗ କରିଛି ସାକାର । ଏ ବିଭାଗ ଏକ କଳ୍ପବୃକ୍ଷ । ବିଭାଗର ସମସ୍ତ କର୍ମଚାରୀ ହେଉଛନ୍ତି ତା'ର ଶାଖା । କାମିନୀର କାମନାକୁ ପୂରଣ ନିମନ୍ତେ ସେ ଶାଖାଗୁଡ଼ିକ ନିର୍ବିଘ୍ନରେ କାୟା ବିସ୍ତାରିଛନ୍ତି । ଆଜି ଏହି ଶୁଭ ଅବସରରେ ଭଞ୍ଜବିହାର ଓଡ଼ିଆ ବିଭାଗକୁ ସଶ୍ରଦ୍ଧ ଭୂମିଷ୍ଠ ପ୍ରଣାମ ଜଣାଇଛି ।

●

*ଅଧ୍ୟାପକ, ଓଡ଼ିଆ ବିଭାଗ*
*ସରକାରୀ ଡିଗ୍ରୀ ମହାବିଦ୍ୟାଳୟ,*
*ଟେକାଲି, ଆନ୍ଧ୍ରପ୍ରଦେଶ*

# ଓଡ଼ିଆ ଚିଠି

**ଡ. ବି. ପ୍ରକାଶ ଚନ୍ଦ୍ର ପାତ**

ଆୟୁଷ୍ମାନ୍ ମନୋରଞ୍ଜନ,

ମୋର ଶୁଭେଚ୍ଛା ଗ୍ରହଣ କରିବ । ବିଭାଗ ମୁଖ୍ୟଙ୍କୁ ମୋର ପ୍ରଣାମ ଜଣାଇଦେବ । ବିଭାଗୀୟ ପ୍ରଫେସର୍, ପ୍ରାଧ୍ୟାପକ, ଅଧ୍ୟାପକ, ଗବେଷକ ଓ କର୍ମଚାରୀମାନଙ୍କୁ ଯଥାମାନ୍ୟ ଜଣାଇଦେବ । ସମସ୍ତ ଛାତ୍ରଛାତ୍ରୀଙ୍କୁ ଶୁଭ ଆଶୀର୍ବାଦ । ମୁଁ ଏଠାରେ ଭଲରେ ଅଛି । ଆଶା କରୁଛି, ଜଗନ୍ନାଥଙ୍କ କୃପାରୁ ତୁମେ ସମସ୍ତେ ସେଠାରେ ଭଲରେ ଥିବ ।

ଚିଠି ଲେଖିବାର କାରଣ ଏହି ଯେ, ଆମ ସ୍ନାତକୋତ୍ତର ଓଡ଼ିଆ ବିଭାଗର ସୁବର୍ଣ୍ଣ ଜୟନ୍ତୀ ଅବସରରେ ଏକ ସ୍ମରଣିକା ପ୍ରକାଶ ପାଉଥିବା କଥା ଶୁଣିଲି । ଖୁସି ଲାଗିଲା, ଆମ ସମୟର ଓଡ଼ିଆ ବିଭାଗର କଥା ତୁମକୁ ଜଣାଇବି ବୋଲି । ଏଇ କିଛି ଦିନ ତଳେ ମୁଁ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟକୁ ଆସିଥିଲି । ସ୍ନାତକୋତ୍ତର ବିଭାଗ ସମୂହ କାର୍ଯ୍ୟାଳୟ ଦେଇ ଗଲା ବେଳେ ଆମର ପୂଜ୍ୟ ଗୁରୁ ଡ. ଦେବୀପ୍ରସନ୍ନ ପଟ୍ଟନାୟକଙ୍କ ସହିତ ସାକ୍ଷାତ ହେଲା ଏବଂ ଜାଣିଲି ସେ ସ୍ନାତକୋତ୍ତର ବିଭାଗ ସମୂହର ଅଧକ୍ଷ ଅଛନ୍ତି । ଖୁସିରେ ଗଦ୍‌ଗଦ୍ ହୋଇ ତାଙ୍କୁ ପ୍ରଣାମ ଜଣାଇ ଓଡ଼ିଆ ବିଭାଗକୁ ବୁଲିବାକୁ ଗଲି । ପ୍ରଥମେ ମୋ ଆଗରେ କାନ୍ଥରେ ଶୋଭିତ 'ଯୁଗରୁଚି' 'ପ୍ରାଚୀର ପତ୍ରିକା' ଦେଖିଲି, ସେମିତି ସେଇ ଅବସ୍ଥାରେ ହିଁ ଅଛି । ବିଶ୍ୱବିଦ୍ୟାଳୟର ସବୁ କିଛି ପରିବର୍ତ୍ତିତ ହେଲାଣି, ବିଭାଗର ସମସ୍ତ ଶ୍ରେଣୀ ପ୍ରକୋଷ୍ଠ, ବିଭାଗୀୟ ମୁଖ୍ୟଙ୍କ କାର୍ଯ୍ୟାଳୟ, ପାଠାଗାର, ବୈଷୟିକ ପ୍ରଯୁକ୍ତି କାର୍ଯ୍ୟାଳୟ ଓ ରାଧାଭାଇନା ସମସ୍ତଙ୍କର ପରିବର୍ତ୍ତନ ଘଟିଛି । ଓଡ଼ିଆ ବିଭାଗର ଯେଉଁ ବାତାବରଣ ଥିଲା, ସେ ବାତାବରଣରେ ବି ପରିବର୍ତ୍ତନ ଲକ୍ଷ୍ୟ କଲି । କାରଣ ମୁଁ ଯେତେବେଳେ ୧୯୮୬ ମସିହାରେ ବିଭାଗରେ ଅଧ୍ୟୟନ କରୁଥିଲି, ସେ ସମୟର ବିଭାଗରେ ଯେଉଁ ଆବେଗ ଥିଲା, ଆଜିର ଏଇ କମ୍ପ୍ୟୁଟର୍, ମୋବାଇଲ୍ ଯୁଗରେ ସେ ଆବେଗକୁ ଲକ୍ଷ୍ୟ କରିପାରିଲି ନାହିଁ । ସେତେବେଳେ ଡ. ଶ୍ରୀନିବାସ ମିଶ୍ର ଥାଆନ୍ତି ବିଭାଗୀୟ ମୁଖ୍ୟ । ପ୍ରଫେସର୍ ସୀତାରାମ ମହାପାତ୍ର, ପ୍ରଫେସର୍ ସୁଦର୍ଶନ ଆଚାର୍ଯ୍ୟ, ପ୍ରଫେସର୍ ପୂର୍ଣ୍ଣଚନ୍ଦ୍ର ମିଶ୍ର, ପ୍ରଫେସର୍ ଅଶ୍ୱିନୀ କୁମାର ପଣ୍ଡା ଏବଂ ପ୍ରଫେସର୍ ଦେବୀପ୍ରସନ୍ନ ପଟ୍ଟନାୟକ ଅଧ୍ୟାପନା କରୁଥା'ନ୍ତି । କିଛି ଦିନ ପରେ ପ୍ରଫେସର୍ ବାଉରୀବନ୍ଧୁ କର ମଧ୍ୟ ବିଭାଗରେ ଯୋଗ ଦେଲେ । ଶୈକ୍ଷିକ ବାତାବରଣ ଅତି ସୁନ୍ଦର । ସାର୍‌ମାନଙ୍କ ଠାରୁ ସେ ସମୟରେ ଯେଉଁମାନେ ଶିକ୍ଷାର୍ଜନ କରିଛନ୍ତି, ମୋର ଉପର ବ୍ୟାଚ୍ ହୁଅନ୍ତୁ ବା ତଳବ୍ୟାଚ୍, ସମସ୍ତେ ପ୍ରାୟ ଜଣେ ଜଣେ

ଉଚ୍ଚକୋଟୀର ବ୍ୟକ୍ତିତ୍ୱର ଅଧିକାରୀ । କିଏ ଅଧକ୍ଷ ଅଛନ୍ତି ତ, କିଏ ଅଧ୍ୟାପକ, ଆଉ କିଏ କିଏ ପ୍ରାଶାସନିକ ଅଧିକାରୀ ହୋଇ ବର୍ତ୍ତମାନ କର୍ମମୟ ଜୀବନରୁ ଅବସର ନେବାକୁ ପ୍ରସ୍ତୁତ ହେଉଛନ୍ତି । ତଥାପି, ବେଳେବେଳେ ସେମାନଙ୍କ ସହ ସାକ୍ଷାତ୍ ହେଲେ ବିଭାଗର କଥା ହେଉ ଓ ସାର୍‌ମାନଙ୍କର ଗୁଣଗାନ କରୁ । ଯେତେବେଳେ ବିଭାଗୀୟ ମୁଖ୍ୟ ଡ଼. ଶ୍ରୀନିବାସ ମିଶ୍ର ଅବସର ନେଲେ ଏବଂ ଡ. ସୁଦର୍ଶନ ଆଚାର୍ଯ୍ୟ ବିଭାଗୀୟ ମୁଖ୍ୟ ଭାବେ କାର୍ଯ୍ୟ କଲେ । ସେ ସମୟରେ ଜଣେ ଜ୍ଞାନୀଗୁଣୀ ବିଶିଷ୍ଟ ସମାଲୋଚକ ଡ. ଦାଶରଥି ଦାସଙ୍କୁ ଆମେ ପାଇଥିଲୁ । ତାଙ୍କର ଶିକ୍ଷାଦାନ ଶୈଳୀ ଉଚ୍ଚକୋଟୀର । ଧୀରସ୍ଥିର ସ୍ୱଭାବର ବ୍ୟକ୍ତିତ୍ୱ, ବିଭାଗର ସମସ୍ତ ପ୍ରଫେସର୍ ଓ ଛାତ୍ରଛାତ୍ରୀଙ୍କୁ ତାଙ୍କର ବ୍ୟବହାର ଖୁବ୍ ପସନ୍ଦ ହେଉଥିଲା । ମୁଁ କହିବାର ତାତ୍ପର୍ଯ୍ୟ, ଡ. ଦାଶରଥି ଦାସ କେବଳ ନୁହଁନ୍ତି, ସମସ୍ତ ପ୍ରଫେସରଙ୍କର କିଛି ନା କିଛି ସ୍ୱତନ୍ତ୍ରତା ଥିଲା । ଭଞ୍ଜ ସାହିତ୍ୟ ହେଉ, ସଂସ୍କୃତ ସାହିତ୍ୟ କିମ୍ୱା ଲୋକସାହିତ୍ୟ, ଆଧୁନିକ ସାହିତ୍ୟ, ଅତ୍ୟାଧୁନିକ ସାହିତ୍ୟ ଓ ଗଦ୍ୟ ସାହିତ୍ୟରେ ଧୁରୀଣ ପ୍ରାଧ୍ୟାପକମାନଙ୍କର ଉପସ୍ଥାପନାରେ ଆମ ଛାତ୍ର ଜୀବନ ଅତି ସୁନ୍ଦର ଭାବରେ ଅତିବାହିତ ହୋଇଥିଲା ଓ ବହୁ କିଛି ତଥ୍ୟ ଆମେ ସଂଗ୍ରହ କରି ପାରିଥିଲୁ । ଏବେ ମଧ ଶିକ୍ଷା କ୍ଷେତ୍ରରେ କିଛି ବ୍ୟତିକ୍ରମ ହେଇନି, ଶିକ୍ଷା ବ୍ୟବସ୍ଥା ସେଇଭଳି ଚାଲିଛି । ନୂଆ ନୂଆ ପ୍ରଫେସରମାନେ ନୂତନ ଶୈଳୀରେ ଶିକ୍ଷାଦାନ କରୁଛନ୍ତି । କିନ୍ତୁ ଛାତ୍ରଛାତ୍ରୀମାନେ ସମୟ ମୁହାଁ ହୋଇଯାଇଛନ୍ତି । କିଛି ଦିନ ପରେ ଏସବୁର ସମାଧାନ ନିଶ୍ଚିତ ରୂପେ ହୋଇଯିବ । ଲେଖିବାର ତାତ୍ପର୍ଯ୍ୟ ଏହିକି ଯେ, ତିରିଶି ବର୍ଷ ତଳେ ଯେଉଁ ଗୁରୁ-ଶିଷ୍ୟର ସମ୍ପର୍କ ଥିଲା, ଛାତ୍ରଛାତ୍ରୀମାନଙ୍କ ଭିତରେ ଯେଉଁ ସୌହାର୍ଦ୍ଦପୂର୍ଣ୍ଣ ବାତାବରଣ ଥିଲା, ଆଜିକାଲି କିଛିଟା ଭିନ୍ନ ଭିନ୍ନ ଲାଗୁଛି । ସେଇ ବିଭାଗ ଅଛି, ସେଇ କ୍ୟାଣ୍ଟିନ୍ ଅଛି, ଆନନ୍ଦବଜାର ଅଛି, ସେଣ୍ଟ୍ରାଲ୍ ଲାଇବ୍ରେରୀ ଅଛି, ଝାଉଁବଣ ଅଛି, ଗେଷ୍ଟ୍ ହାଉସ୍, ମନ୍ଦିର, ବଟନିକାଲ୍ ଗାର୍ଡ଼ନ, ହରିଣ ପାର୍କ ସେମିତି ସେ ଅବସ୍ଥାରେ ଅଛି, କିନ୍ତୁ ସମ୍ପ୍ରତି ସେସବୁକୁ ଭୋଗ କରିପାରୁନାହାନ୍ତି ନୂତନ ପିଢ଼ିର ଛାତ୍ରଛାତ୍ରୀ । ଖାଲି, ମୋବାଇଲ୍ .........ମୋବାଇଲ୍...... ।

ତମେ ଆଶ୍ଚର୍ଯ୍ୟ ହେବ ମନୋରଞ୍ଜନ, ବର୍ତ୍ତମାନର ବିଭାଗ ମୁଖ୍ୟ ପ୍ରଫେସର୍ ପ୍ରସନ୍ନ କୁମାର ସ୍ୱାଇଁ ମୋତେ ଏବେ ବି ଛାତ୍ରବତ୍ ବ୍ୟବହାର ଓ ଶ୍ରଦ୍ଧା କରନ୍ତି । ଆଉ ମୁଁ ତାଙ୍କ ବ୍ୟବହାରରେ ବହୁତ ଖୁସି ଅନୁଭବ କରେ । ପ୍ରଫେସର୍ କୃଷ୍ଣଚନ୍ଦ୍ର ପ୍ରଧାନ ସାର୍ ମଧ ଯେତେବେଳେ ବିଭାଗରେ ଥାଆନ୍ତି, ମୋତେ ଦେଖିଲା ମାତ୍ରେ ତାଙ୍କର ଦେବୀସାରଙ୍କର କଥା ମନେ ପଡ଼ିଥାଏ । ସେ ଅନୁଭୂତି ବଡ଼ ହୃଦୟସ୍ପର୍ଶୀ । ଆମେ ଅଧ୍ୟୟନ କରୁଥିଲୁ ୧୯୮୬ରୁ ୧୯୮୮ ପର୍ଯ୍ୟନ୍ତ । ଆମ ବିଭାଗରେ ୨୯ଜଣ ଝିଅ ଓ ୧୯ଜଣ ପୁଅ ଶିକ୍ଷାଲାଭ କରୁଥିଲୁ । ଆଜି ଯାଏଁ ଆମ ଭିତରେ ସେଇ ପାରସ୍ପରିକ ଭାବ ଆଦାନପ୍ରଦାନ

ରହିଛି । ଉଷା, ରୀତା, ପୁଷ୍ପା, ରଞ୍ଜିତା, ପ୍ରମିତା, ଚନ୍ଦନା, ସଂଘମିତ୍ରା ପ୍ରମୁଖ ଛାତ୍ରୀମାନେ ଏବେ କିଏ କେଉଁଠାରେ ଅଛନ୍ତି ହିସାବ ରଖି ନାହିଁ । କେବଳ ବିଷ୍ଣୁପ୍ରିୟା ହିଁ ପ୍ରାଧାପିକା ଅଛି । ବେଳେବେଳେ ଦେଖା ହୁଏ । ସ୍ମୃତିଚାରଣ କରୁ । କାଳୁ, ଦୁର୍ଯ୍ୟୋଧନ, ପ୍ରଦୀପ, ଲକ୍ଷ୍ମୀ, ଶିବ, ସୁବାସ, ସଞ୍ଜୟ, ଦୀନବନ୍ଧୁ, ବିଭୁଦତ୍ତ, ରାଜେନ୍ଦ୍ର, ରାମହରି, ପୀତାମ୍ବର ଏମାନେ ସବୁ ଶିକ୍ଷା ବିଭାଗରେ କର୍ମରତ । ସବୁ ସମୟରେ ଭେଟ ହୁଏ । ପ୍ରଫେସର୍ ଡ. ଅଶ୍ୱିନୀ କୁମାର ପଣ୍ଡାଙ୍କ ନେତୃତ୍ୱରେ ଯେତେବେଳେ ରିଫ୍ରେସର୍ କୋର୍ସ ବିଭାଗରେ ହୁଏ, ବହୁ ବାର ଆମେ ପରସ୍ପର ଭେଟିଛୁ । ଓଡ଼ିଶାର ବହୁ ବିଶିଷ୍ଟ ସାହିତ୍ୟିକ ଚନ୍ଦ୍ରଶେଖର ରଥ, ଡ. ନିତ୍ୟାନନ୍ଦ ଶତପଥୀ, ଡ. ରମେଶପ୍ରସାଦ ପାଣିଗ୍ରାହୀଙ୍କ ଭଳି ପ୍ରମୁଖ ବ୍ୟକ୍ତିଙ୍କଠାରୁ ଶିକ୍ଷାର୍ଜନ କରିବାର ସୁଯୋଗ ପାଇଥିଲୁ । ଡ. କୁଳମଣି ଓଝା, ଡ. କାହ୍ନୁଚରଣ ପାଢ଼ୀ, ଡ. ଶରତ କୁମାର ଜେନା, ଡ. ହୃଷୀକେଶ ପଣ୍ଡା, ଅଖିଳ ନାୟକଙ୍କ ଭଳି ଛାତ୍ରମାନେ ଆଜି ଜାତୀୟ ସ୍ତରରେ ଅଧ୍ୟାପନା କରିବା ସହ କବି, ଲେଖକ ଭାବେ ପରିଚିତ ହୋଇଛନ୍ତି । ଏହା ଆମର ସ୍ନାତକୋତ୍ତର ବିଭାଗ ପାଇଁ ଗର୍ବ ଓ ଗୌରବର କଥା । ଏମିତି କେତେ କଥା ଅଛି ମନୋରଞ୍ଜନ, ଯାହା ଲେଖିଲେ ସରିବନି, ଏବେ ବି ମୁଁ ବେଳେବେଳେ ବିଭାଗକୁ ଯାଏ । ପ୍ରଫେସର୍ ଡ. ଦେବୀପ୍ରସନ୍ନ ପଟ୍ଟନାୟକ ତତ୍ତ୍ୱାବଧାନରେ ମୋର ଗବେଷଣା କାର୍ଯ୍ୟ ସମ୍ପାଦନ କଲି । ଚିର ଋଣୀ ହୋଇ ରହିବି ମୁଁ ସାର୍‌ଙ୍କ ପାଖରେ । ଗୁରୁ ଋଣ ଏ ଜନ୍ମରେ ମୁଁ ଶୁଝିପାରିବି ନାହିଁ । ତାଙ୍କର ଯେଉଁ ଭଲ ପାଇବା, ସ୍ନେହଶ୍ରଦ୍ଧା ସବୁକୁ ଅନ୍ତର ଭିତରେ ରଖି ସେଇ ପ୍ରତିଭାବାନ୍ ବ୍ୟକ୍ତିଙ୍କୁ ପ୍ରଣାମ ଜଣାଇଥାଏ ।

ଶେଷରେ ଏତିକି ଲେଖିବି, ରାଧାଭାଇନା, ମନୁଭାଇ ଓ ତୁମେ ମନୋରଞ୍ଜନ ସବୁବେଳେ ମୋତେ ଭଲ ଲାଗ । ମୋର କର୍ମମୟ ଜୀବନ ସରିବାକୁ ଆଉ ପାଞ୍ଚ ବର୍ଷ ଅଛି । ଏହି ପାଞ୍ଚ ବର୍ଷ ମଧ୍ୟରେ ଓଡ଼ିଆ ବିଭାଗର ବିକାଶ କ୍ଷେତ୍ରରେ ଯେତେବେଳେ ଯେଉଁଠି ଯେଉଁ ପ୍ରକାରର ଆବଶ୍ୟକତା ପଡ଼ିବ, ଜଣେ ପ୍ରାକ୍ତନ ଛାତ୍ର ଭାବରେ ପୂର୍ଣ୍ଣ ପ୍ରାଣରେ ସାହାଯ୍ୟ ସହଯୋଗ କରିବାର ସଂକଳ୍ପ ନେଉଛି । ପୁନର୍ବାର ତମ ସମସ୍ତଙ୍କର ମଙ୍ଗଳ କାମନା କରିବା ସହିତ ଓଡ଼ିଆ ଚିଠିର ତ୍ରୁଟି ମାର୍ଜନା କରିବେ ବୋଲି ଆଶା କରି ରହୁଛି ।

ଇତି

ସ୍ନେହର ବଡ଼ଭାଇ

●

*ଅଧ୍ୟକ୍ଷ, ବାଲିପଦର କଲେଜ*

*ବାଲିପଦର, ଗଞ୍ଜାମ*

# ଭୁଲି ହୁଏନା : ଭଞ୍ଜବିହାର

ଡ. ବିଦ୍ୟୁତ୍‌ପ୍ରଭା ସାହୁ

ଗଞ୍ଜାମ ଜିଲ୍ଲାର ନିପଟ ମଫସଲ ଚାଷୀ ପରିବାରର ବୋହୂଟିଏକୁ ଯାହା ସ୍ୱପ୍ନ ଦେଲା କବିତା ଲେଖିବାର, ପ୍ରେରଣା ଦେଲା ପତ୍ରିକା ସମ୍ପାଦନାର, ସାହସ ଦେଲା ବିଦ୍ୱାନ୍ ମେଳରେ ଆଲୋଚନାର, ସୃଷ୍ଟି କଲା ସମାଲୋଚନା ଲେଖିବାର ଦୃଷ୍ଟି, ଶିଖାଇଲା ଅଧ୍ୟାପନାର କୌଶଳ ଓ ଜୀବନକୁ ଭଲ ପାଇବାର ଅଭିନବ କଳା - ତାହା ହେଉଛି ଅନନ୍ୟ ଭାବନାର ଭୂମି ଭଞ୍ଜବିହାର ।

ଲେଖୁଛି ଦୀର୍ଘ ଏକତିରିଶ ବର୍ଷ ତଳର କଥା । ୧୯୮୮-୮୯ ଶିକ୍ଷା ବର୍ଷ ପ୍ରଥମେ ମୁଁ ଯୋଗ ଦେଲି ଭଞ୍ଜବିହାରର ଓଡ଼ିଆ ବିଭାଗର ସ୍ନାତକୋତ୍ତର ଶ୍ରେଣୀର ଛାତ୍ରୀ ଭାବେ । ରହିଲି ମହେନ୍ଦ୍ରତନୟା ଛାତ୍ରୀ ନିବାସର ୨୨ ନମ୍ବର ରୁମ୍‌ରେ । ଚାରିଆଡ଼େ ଲହକା ଡାଳର ଝାଉଁଗଛ, ସୁଉଚ୍ଚ ଆକାଶିଆ ସାଙ୍ଗକୁ ଝଙ୍କାଳିଆ ଆମ୍ବଗଛ । ଗୋପାଳପୁର ବେଳାଭୂମିର ପବନ, କୋଇଲିର କୁହୁତାନ ସହିତ କେତେ ନାମ ଅଜଣା ଛୋଟ ଛୋଟ ପକ୍ଷୀଙ୍କର କାକଳି । ଏହିପରି ସ୍ୱପ୍ନମୟ ପରିବେଶରେ ପିଲାବେଳ କବିତା ଲେଖାର ଅଭ୍ୟାସ ବଢ଼ିଲା । ସେତେବେଳେ ସେଠୁ ପ୍ରକାଶ ପାଉଥିବା 'ବେଳା' ପତ୍ରିକାରେ ମୋ କବିତା 'ଛଳନା' ପ୍ରକାଶ ପାଇଲା । କବିତା ଲେଖାରେ ବିଶେଷ ଆଗ୍ରହୀ ହେଲି ।

ଆମ ସମୟରେ ବିଭାଗ ମୁଖ୍ୟ ଥିଲେ ପ୍ରଫେସର୍ ଡ. ସୁଦର୍ଶନ ଆଚାର୍ଯ୍ୟ । ସେ ପ୍ରଥମରୁ ଆମ ଠାରୁ ଜାଣିବାକୁ ଚାହିଁଥିଲେ ଆମ ପରିବାର, ବଂଶ ଅଥବା ଗାଁର କିଏ ଲେଖାଲେଖି କରନ୍ତି କି ? ଆମମାନଙ୍କ ଘରେ ତାଳପତ୍ର ପୋଥି ଅଛି କି ? ଏହିପରି ପ୍ରଶ୍ନ ସବୁ ପ୍ରଥମରୁ ହିଁ ଆମକୁ ମୌଳିକ ଗବେଷଣା ଆଡ଼କୁ ଆକର୍ଷିତ କରିଥିଲା । ଏବେ ବି ମନେ ରହିଛି ପ୍ରଫେସର୍ ଦାଶରଥି ଦାସଙ୍କ ହେଜେଇ ହେଜେଇ ପଢ଼େଇବା ଶୈଳୀ । ସାର୍‌ଙ୍କ ବାକ୍ୟଟିଏ ମନେ ପଡ଼େ 'ସୌନ୍ଦର୍ଯ୍ୟ ବସ୍ତୁରେ ନଥାଏ, ଦେଖିବା ଲୋକର ଆଖିରେ ଥାଏ ।' ପ୍ରଫେସର୍ ବାଉରୀବନ୍ଧୁ କରଙ୍କ ଯେ କୌଣସି ବିଷୟ ବିଶ୍ଳେଷଣର ପୃଷ୍ଠଭୂମି ଓ ନୂତନ ଦୃଷ୍ଟିଭଙ୍ଗୀ ଥିଲା ଚମତ୍କାର । ପ୍ରଫେସର୍ ପୂର୍ଣ୍ଣଚନ୍ଦ୍ର ମିଶ୍ର ଭଞ୍ଜ ସାହିତ୍ୟ, ପ୍ରଫେସର୍ ସୀତାରାମ ମହାପାତ୍ର ନାଟ୍ୟ ସାହିତ୍ୟ, ପ୍ରଫେସର୍ ଅଶ୍ୱିନୀ ପଣ୍ଡା ଭାଷା, ପ୍ରଫେସର୍ ଦେବୀପ୍ରସନ୍ନ ପଟ୍ଟନାୟକ ଆଧୁନିକ କବିତା ପ୍ରତି ଆଗ୍ରହୀ କରୁଥିଲେ ।

ବାସ୍ତବରେ ପ୍ରଫେସର୍ ସୀତାରାମ ମହାପାତ୍ରଙ୍କ ପ୍ରେରଣା ମୋ ପାଇଁ ପ୍ରାତଃ ସ୍ମରଣୀୟ ହୋଇ ରହିଛି । ଆମ ସମୟରେ ମୁଁ ଜଣେ ହିଁ ବାହା ହୋଇ ପଢୁଥାଏ । ପଲ୍ଲୀ ଗାଁର ବୋହୂଟିଏ । ଚାଲିଚଳଣିରେ ଥିଲି ଟିକେ ଲାଜେଇ । ସଙ୍କୋଚ ଭାବ ଯୋଗୁ

କାହା ସହିତ ସେତେ ମିଶି ପାରେନି । ଏହି ପରିପ୍ରେକ୍ଷୀରେ ବିଭାଗର ସମସ୍ତେ ବଣଭୋଜିରେ ଉଦ୍ୟାନ ଖଣ୍ଡ ଯାଇଥାଉ । ସାର୍ ମୋର ହାବଭାବ ଦେଖି ମୋତେ ବହୁତ ଆପଣାପଣରେ ମୋର ପରିବାର ବିଷୟରେ ପଚାରି ବୁଝିଥିଲେ ଏବଂ ମୋତେ ଆତ୍ମ ବିଶ୍ୱାସର ସହିତ ଲକ୍ଷ୍ୟ ପଥରେ ଅଗ୍ରସର ହେବା ନିମନ୍ତେ ଅନୁପ୍ରେରିତ କରିଥିଲେ । ମୁଁ ସେହି ବର୍ଷ ଶ୍ରେଣୀରେ ଦ୍ୱିତୀୟ ସ୍ଥାନ ପାଇଥିଲି । ତା'ପରେ ମୁଁ ଧୀରେ ଧୀରେ ପରିଚିତ ହୋଇଥିଲି । ଏବେ ବି ବିଭାଗକୁ ଗଲେ ମୋତେ ବିଶେଷ ଖୁସି ଲାଗେ । ରାଧା ଭାଇନା ତ ସମସ୍ତଙ୍କ ଭାଇନା । ତାଙ୍କୁ ଦେଖିଦେଲେ ସବୁ ପୁରୁଣା କଥା ନୂଆ ଲାଗେ । ପ୍ରଫେସର୍ କୃଷ୍ଣଚନ୍ଦ୍ର ପ୍ରଧାନ ଓ ପ୍ରଫେସର୍ ପ୍ରସନ୍ନ କୁମାର ସ୍ୱାଇଁଙ୍କ ମୁଁ ପ୍ରତ୍ୟକ୍ଷ ଛାତ୍ରୀ ନଥିଲେ ବି ଉଭୟଙ୍କଠୁ ବହୁତ ଶିଖିଛି ଏବଂ ବିଭାଗର ପୁରୁଣା ଛାତ୍ରୀ ଭାବେ ସମ୍ମାନ, ସ୍ନେହ ଓ ଶ୍ରଦ୍ଧା ପାଇଛି । ଯାହା ମୋତେ ସବୁବେଳେ ବିଭାଗ ସହିତ ଆହୁରି ସମ୍ପର୍କିତ କରେ ।

ଓଡ଼ିଆ ବିଭାଗ ଏବଂ ବିଶ୍ୱବିଦ୍ୟାଳୟ ମଞ୍ଜୁରୀ ଆୟୋଗ ତରଫରୁ ଆୟୋଜିତ ବହୁ ସମ୍ମାନରେ ଯୋଗଦେବାର ସୁଯୋଗ ପାଇଛି । ସେଠାକୁ ଯେତେ ମୌଳିକ ସ୍ରଷ୍ଟା ଓ ବିଜ୍ଞ ବ୍ୟକ୍ତି ନିମନ୍ତିତ ହୋଇ ଆସନ୍ତି, ସେମାନଙ୍କ ବକ୍ତବ୍ୟ ଓ ବ୍ୟକ୍ତିତ୍ୱ ମୋତେ ବିଶେଷ ପ୍ରଭାବିତ କରେ । ଚନ୍ଦ୍ରଶେଖର ରଥ, ରମାକାନ୍ତ ରଥ, ସୀତାକାନ୍ତ ମହାପାତ୍ର, ଦେବୀପ୍ରସନ୍ନ ପଟ୍ଟନାୟକ, ବିଭୂତି ପଟ୍ଟନାୟକ, ପ୍ରତିଭା ରାୟ, ବୀଣାପାଣି ମହାନ୍ତି ଆଦି ବହୁ ବ୍ୟକ୍ତିଙ୍କ ସହିତ ସମ୍ପର୍କରେ ଆସିବାର ସୁଯୋଗ ଦେଇଛି ମୋତେ ମୋ ବିଭାଗ ।

ମୁଁ ଏହି ବିଶ୍ୱବିଦ୍ୟାଳୟରେ ସ୍ୱପ୍ନ ଦେଖିଛି ଏବଂ ସ୍ୱପ୍ନକୁ ବାସ୍ତବାୟିତ କରିବାର ସୁଯୋଗ ପାଇଛି । ଏଇଠି ଉଚ୍ଚତର ଗବେଷଣାରେ ସଫଳ ହୋଇଛି । ପିଏଚ୍.ଡି. ଡିଗ୍ରୀ ସହିତ ଡି.ଲିଟ୍. ଡିଗ୍ରୀ ପାଇଛି । ମୋର ଗବେଷଣାର ଧାରାକୁ ଯେ ପୁଷ୍କଳ କରିଛନ୍ତି, ସେ ହେଉଛନ୍ତି ପ୍ରଫେସର୍ ବାଉରୀବନ୍ଧୁ କର । ସାର୍‌ଙ୍କ ନିକଟରେ ମୁଁ ଚିର କୃତଜ୍ଞ ।

ଚାରି ଜଣ ଗବେଷକଙ୍କୁ ଗବେଷଣାର ମାର୍ଗ ଦର୍ଶାଇଛି । ଯାହା ପାଇଛି, ତାହା ଦେବାର ପ୍ରୟାସ କରିଛି । ଦାନ ପ୍ରତିଦାନର ସାଂସ୍କୃତିକ ପରମ୍ପରାକୁ କେତେ ଦୂର ବଜାୟ ରଖିପାରିଛି, ତାହା ସମୟ କହିବ ।

ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗ ମୋ ପାଇଁ କୌଣସି ଦେବାଳୟ ଠାରୁ କମ୍ ପବିତ୍ର ନୁହେଁ । ଏହି ବିଭାଗ ମୋତେ ଶିଖାଇଛି ସ୍ୱାଭିମାନରେ ବଞ୍ଚିବାର କଳା ଏବଂ ଜୀବନକୁ ବୁଝି ବୁଝେଇବାର କଳା । ସବୁ ଦୃଷ୍ଟିରୁ ଭୁଲି ହୁଏନା : ଭଞ୍ଜବିହାର ।

•

*ପ୍ରାଧାପିକା, ଓଡ଼ିଆ ବିଭାଗ*

*ଖଲ୍ଲିକୋଟ ସ୍ୱୟଂଶାସିତ ମହାବିଦ୍ୟାଳୟ, ବ୍ରହ୍ମପୁର*

# ତିକ୍ତ ମଧୁର ଅନୁଭୂତି

ପ୍ରଫେସର ବାଉରିବନ୍ଧୁ ସାହୁ

ଶାନ୍ତ ସମୁଦ୍ର ଦକ୍ଷ ନାବିକ ସୃଷ୍ଟି କରିପାରେ ନାହିଁ । ଦକ୍ଷ ନାବିକ ସୃଷ୍ଟି ହେବା ମୂଳରେ ଅଶାନ୍ତ ସମୁଦ୍ରର ଭୂମିକା ଅନସ୍ୱୀକାର୍ଯ୍ୟ । ଅପରାଧୀମାନଙ୍କ ଭିତରେ ଖୁବ୍ କମ୍ ମଣିଷ ଲୁଚି ରହିଥା'ନ୍ତି । କିନ୍ତୁ ମଣିଷମାନଙ୍କ ଭିତରେ ବହୁ ଅପରାଧୀ ସକ୍ରିୟ ଆତ୍ମପ୍ରକାଶ କରନ୍ତି । କାଳ ଅପରାଧୀ ଭିତରର ମଣିଷକୁ ପୁରସ୍କାର ଓ ମଣିଷ ଭିତରର ଅପରାଧୀକୁ ତିରସ୍କାର କରେ । ଉପଯୁକ୍ତ ଶାସ୍ତି ପ୍ରଦାନ କରେ ।

ମାଟି ଓ ଆକାଶର ଆଦ୍ୟବର୍ଣ୍ଣ ସଂଯୋଗରେ 'ମାଆ' ଶବ୍ଦର ଉତ୍ପତ୍ତି । ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ମା' ଠାରୁ ଅଧିକ । ତା'ରି କୋଳରେ ବଢ଼ିଛି । ଓଡ଼ିଆ ସାହିତ୍ୟରେ ଏମ୍.ଏ., ଏମ୍.ଫିଲ୍., ପିଏଚ୍.ଡି. ତଥା ଇଂରାଜୀ ସାହିତ୍ୟରେ ଏମ୍.ଏ. ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଅଧୀନରେ ସମାପ୍ତ କରିଛି । ୨୪ ।୯ ।୧୯୭୩ ମସିହାରୁ ବିଭିନ୍ନ ସରକାରୀ ମହାବିଦ୍ୟାଳୟରେ ଅଧ୍ୟାପନା କରି ୧୯୯୮ ମସିହାରୁ ୨୦୦୩ ପର୍ଯ୍ୟନ୍ତ ରେଭେନ୍ସା ସ୍ୱୟଂଶାସିତ ମହାବିଦ୍ୟାଳୟରେ ସ୍ନାତକୋତ୍ତର ଓଡ଼ିଆ ବିଭାଗ ପ୍ରଫେସର୍ (ପ୍ରତ୍ୟକ୍ଷ ନିଯୁକ୍ତି) ଓ ମୁଖ୍ୟ ଭାବେ ଦାୟିତ୍ୱ ନିର୍ବାହ କରି ଅବସର ନେଇଛି । କିଛି ପିଏଚ୍.ଡି. ଓ ଡି.ଲିଟ୍. ସ୍କଲର୍ ସୃଷ୍ଟି କରିଛି ।

ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଅଧୀନ ବିଭିନ୍ନ ମହାବିଦ୍ୟାଳୟରେ ଉପାଧ୍ୟକ୍ଷ, ଅଧ୍ୟକ୍ଷ ଦାୟିତ୍ୱ ସମ୍ପନ୍ନ କରିଛି । କର୍ମରତ ସମୟରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଦକ୍ଷ କୁଳପତି ପ୍ରଫେସର୍ ଡ. ଶିବରାମ ମହାନ୍ତି, ପ୍ରଫେସର୍ ଡ. ତ୍ରିନାଥ ରଥଙ୍କ ପ୍ରେରଣା ମୋ ଜୀବନର ଚଲାପଥରେ ଅତ୍ୟନ୍ତ ଉତ୍ସାହ ଓ ଉଦ୍ଦୀପନା ତଥା କୁଳପତି ପ୍ରଫେସର୍ ଆଦିତ୍ୟ ପ୍ରସାଦ ପାଢ଼ୀ, ପ୍ରଫେସର୍ ଦୀପକ କୁମାର ବେହେରା ଓ ପ୍ରଫେସର୍ ରାଜେନ୍ଦ୍ର ପ୍ରସାଦ ଦାସଙ୍କ ଦାୟିତ୍ୱବୋଧ ମୋ ହୃଦୟରେ ଗଭୀର ରେଖାପାତ କରିଛି ।

କର୍ତ୍ତବ୍ୟର ତାଡ଼ନାରେ, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ନିର୍ଦ୍ଦେଶରେ, ବିଭିନ୍ନ ସମୟରେ ପରୀକ୍ଷା କେନ୍ଦ୍ର ପରିଚାଳକ ଠାରୁ ଆରମ୍ଭ କରି ଭିଜିଟିଙ୍ଗ୍ ପ୍ରଫେସର୍ ଭାବରେ ଦାୟିତ୍ୱ ତୁଲାଇଛି । ଅନେକ ମଧୁର ଅନୁଭୂତି ମଧ୍ୟରେ ତିକ୍ତ ଅନୁଭୂତି ମନେ ପଡ଼ିଲେ ଲୋମ ଟାଙ୍କୁରି ଉଠେ । କର୍ତ୍ତବ୍ୟନିଷ୍ଠ ବ୍ୟକ୍ତିଙ୍କ ସଂଖ୍ୟା ନଗଣ୍ୟ ହେତୁ ସେମାନଙ୍କ ପ୍ରଭାବ ସମାଜ

ଉପରେ କ୍ୱଚିତ ପଡ଼ିଥାଏ । ନୀତି, ନିୟମ, ନ୍ୟାୟ ଓ ନିରପେକ୍ଷତା ସକାଶେ ସଂଘର୍ଷ ସମାଜର କଲ୍ୟାଣ ଲାଗି ଉଦ୍ଦିଷ୍ଟ । ଏ କଥା ସମସ୍ତେ ବୁଝନ୍ତି । କିନ୍ତୁ କ୍ୱଚିତ୍ ମାନନ୍ତି ।

ସ୍ନାତକୋତ୍ତର ଓଡ଼ିଆ ବିଭାଗର ପ୍ରାକ୍ତନ ପ୍ରଫେସର୍ କାହ୍ନୁଚରଣ ମିଶ୍ରଙ୍କ ତତ୍ତ୍ୱାବଧାନରେ ମୁଁ ମୋର ଏମ୍.ଫିଲ୍. ତଥା ପ୍ରଫେସର୍ ବେଣୀମାଧବ ପାଢ଼ୀଙ୍କ ଦିଗ୍‌ଦର୍ଶନରେ ପିଏଚ୍.ଡ଼ି. ନିବନ୍ଧ ପ୍ରସ୍ତୁତ କରିଛି । ମୋର ପିତୃତୁଲ୍ୟ ପୂଜାସ୍ପଦ ଦିଗ୍‌ଦର୍ଶକଙ୍କ ସ୍ନେହ, ସାହାଯ୍ୟ, ସହାନୁଭୂତି ଓ ଉପଦେଶ ଅବିସ୍ମରଣୀୟ । ପ୍ରଫେସର୍ ସୁଦର୍ଶନ ଆଚାର୍ଯ୍ୟ, ପ୍ରଫେସର୍ ଦାଶରଥି ଦାସଙ୍କ ନିକଟରେ ମୁଁ କୃତଜ୍ଞ । ବନ୍ଧୁ ପ୍ରଫେସର୍ କୃଷ୍ଣଚନ୍ଦ୍ର ପ୍ରଧାନ ଓ ପ୍ରଫେସର୍ ପ୍ରସନ୍ନ କୁମାର ସ୍ୱାଇଁ ବିଭିନ୍ନ ସମୟରେ ସହଯୋଗର ହାତ ବଢ଼ାଇଥିବାରୁ ଉଭୟଙ୍କୁ ବଧେଇ ଜଣାଉଛି । ପ୍ରଫେସର୍ ଅଶ୍ୱିନୀ କୁମାର ପଣ୍ଡା ଏବଂ ପ୍ରଫେସର୍ ଦେବୀପ୍ରସନ୍ନ ପଟ୍ଟନାୟକ ମୋର ଅତି ପ୍ରିୟ ଛାତ୍ର । ସେମାନଙ୍କର ଉତ୍ତରୋତ୍ତର ଉନ୍ନତି କାମନା କରୁଛି । ପ୍ରାଧ୍ୟାପକ ଡ. ସଦାନନ୍ଦ ନାୟକ ଓ ଅନ୍ୟମାନଙ୍କ ଚଲାପଥ କୁସୁମିତ ହେଉ ।

ବିଭିନ୍ନ ସମୟରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗର ବିଭିନ୍ନ ଉତ୍ସବ, ପାଠଚକ୍ର ଓ ଅନ୍ୟାନ୍ୟ କାର୍ଯ୍ୟରେ ଯୋଗଦାନ ମୋ ମନରେ ବିଶେଷ ଆନନ୍ଦ ଭରି ଦେଇଛି । ପରିଦର୍ଶୀ ପ୍ରଫେସର୍ ରୂପେ ଛାତ୍ରଛାତ୍ରୀମାନଙ୍କ ସହଯୋଗ ଆକର୍ଷଣୀୟ ।

•

*ଅଶୋକ ନଗର*

*ବ୍ରହ୍ମପୁର*

# ସ୍ମୃତି ବିଗତ ଦିନର

**ଡ. ସୀମାଞ୍ଚଳ ପ୍ରଧାନ**

ମନେ ପଡ଼େ ଆଜି ଦୀର୍ଘ ୩୭ବର୍ଷ ତଳର କଥା । ୧୯୮୧ ମସିହା ଓଡ଼ିଆ ସମ୍ମାନରେ ଯେତେବେଳେ ପ୍ରଥମ ଶ୍ରେଣୀ ରଖି ଗଞ୍ଜାମ ମହାବିଦ୍ୟାଳୟରୁ ଉତ୍ତୀର୍ଣ୍ଣ ହୋଇ ସ୍ନାତକୋତ୍ତର ଓଡ଼ିଆ ବିଭାଗ ଭଞ୍ଜବିହାରରେ ପ୍ରବେଶ ହେବା ପାଇଁ ଆବେଦନ କଲି, ସେତେବେଳେ ମୋର ପୂଜ୍ୟଗୁରୁ ଡ. ସୁଦର୍ଶନ ଆଚାର୍ଯ୍ୟ ଥିଲେ ବିଭାଗର ଅଧ୍ୟାପକ । ଏହା ଛଡ଼ା ଡ. କାହ୍ନୁଚରଣ ମିଶ୍ର, ଡ. ସୀତାରାମ ମହାପାତ୍ର, ଡ. ଶ୍ରୀନିବାସ ମିଶ୍ର, ଡ. ଗଗନେନ୍ଦ୍ରନାଥ ଦାଶ ଅଧ୍ୟାପକ ଭାବେ କାର୍ଯ୍ୟରତ ଥିଲେ । ଡ. ବେଣୀମାଧବ ପାଢ଼ୀ, ଡ. କୁଞ୍ଜବିହାରୀ ତ୍ରିପାଠୀ ଅତିଥି ଅଧ୍ୟାପକ ଭାବେ ଯୋଗଦେବା ସହ ଭାଷା ପଢ଼େଇବା ପାଇଁ ଭୁବନେଶ୍ୱରରୁ ଆସିଥିଲେ ଡ. ଅପର୍ଣ୍ଣା ପ୍ରଧାନ । ମୋର ଅଧ୍ୟୟନ ସମୟରେ ଓଡ଼ିଆ ସାହିତ୍ୟ ବିଭାଗରୁ 'ଭାଷା' ବିଭାଗଟି ପୃଥକ୍ ହୋଇନଥିଲା । ସେତେବେଳେ ସଦ୍ୟ ଅଧ୍ୟାପକ ଭାବେ ଯୋଗ ଦେଇଥିଲେ ଶ୍ରୀ ଅଶ୍ୱିନୀ କୁମାର ପଣ୍ଡା, ଡ. ପୂର୍ଣ୍ଣଚନ୍ଦ୍ର ମିଶ୍ର ଓ ଶ୍ରୀ ଦେବୀପ୍ରସନ୍ନ ପଟ୍ଟନାୟକ । ତତ୍‌କାଳରେ ସମସ୍ତ ଅଧ୍ୟାପକ ଥିଲେ ବିଭାଗର ଗୋଟିଏ ଗୋଟିଏ ରତ୍ନ ସଦୃଶ । କ୍ଲାସ୍ ନିୟମିତ ହେଉଥିଲା । ଅଧ୍ୟାପକମାନେ ପିଲାମାନଙ୍କ ହୃଦୟକୁ ଚିହ୍ନୁଥିଲେ । ବିଭାଗରେ ସୁନ୍ଦର ପାଠାଗାରଟିଏ ଥିବାରୁ ଛାତ୍ରଛାତ୍ରୀଙ୍କର ଅଧ୍ୟୟନ ସକାଶେ ପୁସ୍ତକର ଅଭାବ ନଥିଲା ।

୧୯୮୨ ମସିହାର ଗୋଟିଏ କଥା ଆଜି ମନେ ପଡୁଛି । ହଠାତ୍ ଦିନେ ମୁଁ ମୋର ପୂଜ୍ୟଗୁରୁ ଡ. ସୁଦର୍ଶନ ଆଚାର୍ଯ୍ୟଙ୍କୁ ପଚାରିଦେଲି କୌଣସି ପତ୍ରିକାରେ ଲେଖା ପ୍ରକାଶନ ପାଇଁ କିଛି ଉତ୍କୋଚ ଦେବାକୁ ହୁଏ କି ? ଉତ୍ତରରେ ସେ କହିଥିଲେ ଏଥିରେ ମୋର ବିଶ୍ୱାସ ନାହିଁ । ଲେଖା ଉନ୍ନତ ମାନର ହେଲେ ପ୍ରକାଶ ପାଇବ; ଏଥିରେ ସନ୍ଦେହ ନାହିଁ । ସତକୁ ସତ ମୁଁ ପଣ୍ଡିତ ନୀଳକଣ୍ଠଙ୍କ 'ଖାରବେଳ' ଉପରେ ପ୍ରବନ୍ଧଟିଏ ପ୍ରସ୍ତୁତ କରି ସମାଜ ବାର୍ଷିକ ବିଶେଷାଙ୍କ କଟକଙ୍କ ନିକଟକୁ ପଠାଇଦେଲି । ୧୯୯୩ ମସିହା ନେତ୍ରୋତ୍ସବ ଦିନ ରେଜିଷ୍ଟ୍ରି ଡାକ ଯୋଗେ ସ୍ନାତକୋତ୍ତର ଓଡ଼ିଆ ବିଭାଗ ଠିକଣାରେ ପତ୍ରିକାଟି ଆସି ପହଞ୍ଚିଲା । ଡ. ଆଚାର୍ଯ୍ୟ ପ୍ରଥମେ ଡାକଟିକୁ ଖୋଲି ଲେଖାଟିକୁ ପଢ଼ିଲେ ଏବଂ କହିଲେ ତୁମେ ତ ଉତ୍କୋଚ ଦେଇ ନଥିଲ ? ଲେଖା ପ୍ରକାଶିତ ହେଲା କିପରି ? ଲେଖା ଉନ୍ନତ ମାନର ହେଲେ ପ୍ରକାଶ ପାଏ । ଏ ଯାଏଁ ସେ ଧାରଣା ମୋ ମନରୁ

ପାଶୋର ଯାଇନି । ୧୯୮୫ ମସିହାରେ ଯେତେବେଳେ ମୁଁ ଏମ୍.ଫିଲ୍. ଶ୍ରେଣୀରେ ପ୍ରବେଶ କଲି, ସେତେବେଳେ ବିଭାଗ ପାଇଁ ମୁଁ ଓ ଡ.ସୁଦର୍ଶନ ଆଚାର୍ଯ୍ୟ ଦୁହେଁ ମିଶି ଦୁଷ୍ପ୍ରାପ୍ୟ କିଛି ତାଳପତ୍ର ପୋଥି ସଂଗ୍ରହ କରିବା ସଙ୍ଗେ ସଙ୍ଗେ ଛତ୍ରପୁର ଯାଇ ପତିବାବୁଙ୍କ ଘରୁ କିଛି ପୁରୁଣା ଗ୍ରନ୍ଥ ସଂଗ୍ରହ କରିଥିଲୁ, ଯାହାକି ଆଜି ବିଭାଗର ପୋଥି ସଂଗ୍ରହାଳୟ ଓ ଗ୍ରନ୍ଥାଗାରରେ ସ୍ଥାନ ପାଇଛି । ଏହା ଛଡ଼ା ସେହିବର୍ଷ ବିଭାଗ ତରଫରୁ ଏକ ପାଠଚକ୍ରର ଆୟୋଜନ କରାଯାଇଥିଲା । ଏଥିରେ ଓଡ଼ିଶାର ବିଭିନ୍ନ ମହାବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟରୁ ଅଧ୍ୟାପକ, ପ୍ରାଧ୍ୟାପକ ଓ ପ୍ରଫେସର୍‌ମାନେ ଆସି ଯୋଗ ଦେଇଥିଲେ । ଆମେ ପଢ଼ିଲା ବେଳକୁ ବିଭାଗର ଗୋଟିଏ ପ୍ରାଚୀର ପତ୍ର 'ଯୁଗରୁଚି' ନାମରେ ପ୍ରକାଶିତ ହେଉଥିଲା । ମୋର ଅଧ୍ୟୟନ କାଳରେ ଆମେ ବିଭାଗ ତରଫରୁ ବିଭିନ୍ନ ସ୍ଥାନକୁ ଯଥା- ପୁରୀ, ଛତିଆ, ହୀରାକୁଦ, ଚଣ୍ଡୀଖୋଲ, ସିଂହାସନୀ, ବୁଗୁଡ଼ା ବିରଞ୍ଚି ନାରାୟଣ ମନ୍ଦିର, ବୁଦ୍ଧଖୋଲ, ପର୍ଶୁରାମ କୁଣ୍ଡ ଇତ୍ୟାଦି ସ୍ଥାନକୁ ଯାଇଥିଲୁ ।

୧୯୮୬ ମସିହାରେ ମୁଁ ଯେତେବେଳେ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ ତରଫରୁ ଗବେଷଣା ସହାୟକ ପଦବୀରେ ବିଭାଗରେ ଯୋଗଦେଲି, ସେତେବେଳେ ମୋର ପିଏଚ୍.ଡ଼ି ତତ୍ତ୍ୱାବଧାରକ ଥିଲେ ଡ. ସୁଦର୍ଶନ ଆଚାର୍ଯ୍ୟ । ୧୯୮୭ ମସିହାରେ ମୁଁ ଯେତେବେଳେ ମା' ମାର୍କମା ମହାବିଦ୍ୟାଳୟ, ବିଷମକଟକ (ତତ୍କାଳୀନ କୋରାପୁଟ ଜିଲ୍ଲା)ରେ ଅଧ୍ୟାପକ ଭାବେ ନିର୍ବାଚିତ ହେଲି, ସେତେବେଳେ ମୋତେ ଭଞ୍ଜବିହାର ଛାଡ଼ିବାକୁ ହୋଇଥିଲା । ସେହିଦିନ ଥିଲା ମୋ ପାଇଁ ଏକ ସ୍ମରଣୀୟ ଦିବସ ।

●

*ପ୍ରାଧ୍ୟାପକ, ଓଡ଼ିଆ ବିଭାଗ*
*ନୂଆପଡ଼ା କଲେଜ,*
*ନୂଆପଡ଼ା, ଗଞ୍ଜାମ*

# ଓଡ଼ିଆ ବିଭାଗ ସାହିତ୍ୟ ଗବେଷଣାର ନେତୃତ୍ୱ ନେଉ

ପ୍ରଫେସର ନାରାୟଣ ସାହୁ

ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗ ସହିତ ଆତ୍ମିକ ସ୍ତରରେ ଏକ ପ୍ରକାର ଭିନ୍ନ ଧରଣର ସମ୍ପର୍କ ରହିଆସିଛି । ବୋଧହୁଏ ଏ ସମ୍ପର୍କ ଦୀର୍ଘ ୨୦ବର୍ଷରୁ ଊର୍ଦ୍ଧ୍ୱ କାଳର ହେବ । ପ୍ରଥମେ ପ୍ରଫେସର୍ ସୁଦର୍ଶନ ଆଚାର୍ଯ୍ୟ ମୋ ସଙ୍କଳିତ 'ଏକାଂକିକା ମାଧୁରୀ'କୁ ଡିଗ୍ରୀ କୋର୍ସରେ ରଖିଥିଲେ । ପରେ ପରେ ଉପାଧ୍ୟୁତ୍ତର ପାଠ୍ୟକ୍ରମ ସହିତ ଜଡ଼ିତ ହୋଇଗଲା 'ପ୍ରାଚୀନ ଭାରତୀୟ ସାହିତ୍ୟ', ଯାହା ବର୍ତ୍ତମାନ ପର୍ଯ୍ୟନ୍ତ ବଳବତ୍ତର ରହିଆସିଛି ।

ଓଡ଼ିଆ ବିଭାଗ ଦ୍ୱାରା ଆୟୋଜିତ ବିଭିନ୍ନ 'ରିଫ୍ରେସର କୋର୍ସ'ରେ 'ରିସୋର୍ସ ପର୍ସନ୍' ଭାବେ ଅଂଶଗ୍ରହଣ କରିଛି । ବିଭାଗ ଦ୍ୱାରା ଆୟୋଜିତ ବିଭିନ୍ନ ସେମିନାର୍, ଡି.ଏସ୍.ଏ. କାର୍ଯ୍ୟକ୍ରମରେ ଭାଗ ନେବାର ସୌଭାଗ୍ୟ ମୋତେ ମିଳିଛି । ଏ ସମ୍ପର୍କକୁ ଆହୁରି ମଜବୁତ କରିଛି ବିଭାଗ ଦ୍ୱାରା ପରିଚାଳିତ ଦକ୍ଷିଣ ଓଡ଼ିଶା ସ୍ୱତନ୍ତ୍ର ଗବେଷଣା ପ୍ରକଳ୍ପର ବିଭିନ୍ନ କାର୍ଯ୍ୟକ୍ରମ । ନିଜେ ପ୍ରତ୍ୟକ୍ଷ ଭାବେ ଅଂଶଗ୍ରହଣ କରିଛି ।

ଓଡ଼ିଆ ବିଭାଗର ଏମ୍.ଏ., ଏମ୍.ଫିଲ୍. ପରୀକ୍ଷାର ପରୀକ୍ଷକ ଭାବେ ଅନେକ ଥର ବିଭାଗକୁ ଯାଇଛି । ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗର ବିଭିନ୍ନ ପିଏଚ୍.ଡି. ଥେସିସ୍‌ର ପରୀକ୍ଷକ ଭାବେ ଅଂଶଗ୍ରହଣ କରିବାର ସ୍ୱାଦ ପୂରାପୂରି ନିଆରା । କାରଣ ଗେଷ୍ଟହାଉସ୍‌ର ଖାଇବା ଅନୁଭୂତିକୁ କେବେ ଭୁଲିହେବ ନାହିଁ । ଓଡ଼ିଆ ବିଭାଗ ଆୟୋଜିତ ଅନେକ ଭୋଜିରେ ଉପସ୍ଥିତ ରହିଛି । ଛାତ୍ରଛାତ୍ରୀମାନଙ୍କର ସ୍ନେହକୁ ବାରମ୍ବାର ମନେ ପକାଇବାକୁ ଇଚ୍ଛା ହୁଏ ।

ଓଡ଼ିଆ ବିଭାଗରେ କିଛି ଦିନ ପାଇଁ ମୋତେ ପରିଦର୍ଶୀ ପ୍ରଫେସର୍ ହେବାର ଅବସର ମିଳିଥିଲା । ଛାତ୍ରଛାତ୍ରୀମାନଙ୍କର ସ୍ନେହ, ଅନୁସନ୍ଧିତ୍ସୁ ମନୋଭାବ ମୋତେ ମୁଗ୍‌ଧ କରିଥିଲା । ମୋ ଫୋନ୍ ନମ୍ବର୍ ପିଲାମାନଙ୍କୁ ଦେଇଥିଲି । କିଛି ଅସୁବିଧା ହେଲେ ମୋତେ ଫୋନ୍ କରିବାକୁ କହିଥିଲି । ଆଜି ପର୍ଯ୍ୟନ୍ତ ମଧ୍ୟ ଓଡ଼ିଆ ବିଭାଗର ଛାତ୍ରଛାତ୍ରୀ, ଗବେଷକ/ ଗବେଷିକା ମୋ ସହିତ ଯୋଗାଯୋଗ ରଖିଛନ୍ତି । ସାଧ୍ୟ ମୁତାବକ ମୁଁ ସେମାନଙ୍କୁ ସାହାଯ୍ୟ କରି ଆସୁଛି ।

ଭିଜିଟିଙ୍ଗ ପ୍ରଫେସର୍ ଥିବା ବେଳେ ପିଲାଙ୍କର ବଣଭୋଜି ପଡ଼ିଲା । ପ୍ରଫେସର୍ ବାଉରିବନ୍ଧୁ ସାହୁ ଏବଂ ମୋତେ ସେଥିରେ ଅଂଶଗ୍ରହଣ ପାଇଁ ଛାତ୍ରଛାତ୍ରୀମାନେ ଅନୁରୋଧ କରିଥିଲେ । ବାଉରିବନ୍ଧୁ ସାହୁ ବ୍ୟକ୍ତିଗତ କାମ ପାଇଁ ମନା କରିଦେଲେ । ପ୍ର. ପ୍ରସନ୍ନ କୁମାର ସ୍ୱାଇଁ ଓ ପ୍ର. ଦେବୀପ୍ରସନ୍ନ ପଟ୍ଟନାୟକଙ୍କ ଅନୁରୋଧକୁ ଏଡ଼ି ନପାରି ମୁଁ ପିଲାମାନଙ୍କ ସହିତ ପିକ୍‌ନିକ୍ ଯାଇଥିଲି । ଏ ଅନୁଭୂତିଟି ସବୁଦିନ ପାଇଁ ମନେ ରହିବ । କାରଣ ଅନ୍ୟ ବିଶ୍ୱବିଦ୍ୟାଳୟ ପିଲାଙ୍କ ସହିତ ପିକ୍‌ନିକ୍ ଯିବାରେ ଏହା ମୋର ପ୍ରଥମ ଓ ଶେଷ ଅନୁଭୂତି ।

ବିଭାଗର ସୁବର୍ଣ୍ଣ ଜୟନ୍ତୀ ଉତ୍ସବର ଅନୁଭୂତିକୁ ଭୁଲି ହେବ ନାହିଁ । ବିଭାଗ ତରଫରୁ ମୋତେ ସମ୍ବର୍ଦ୍ଧିତ କରାଯାଇଥିଲା । ଖାଲି ସେତିକି ନୁହେଁ, ଏହି ଉପଲକ୍ଷେ ଆୟୋଜିତ ତିନିଦିନିଆ ସେମିନାରରେ ମୁଁ ପ୍ରତ୍ୟକ୍ଷ ଅଂଶଗ୍ରହଣ କରିଥିଲି । ବିଭାଗର ପୂର୍ବତନ ପ୍ରଫେସର୍ ଶ୍ରୀନିବାସ ମିଶ୍ରଙ୍କୁ ମଧ୍ୟ ସାଙ୍ଗରେ ନେଇ ଥରେ ବିଭାଗକୁ ଯାଇଛି । ବିଭାଗର ଅତିଥି ସମ୍ବର୍ଦ୍ଧନା ଓ ପୂଜ୍ୟପୂଜା ଦେଖିଲେ ଯେ କେହି ବିସ୍ମିତ ହେବା ସହିତ ଖୁସିରେ ଆତ୍ମହରା ହେବ ।

ଅବସର ଗ୍ରହଣ ପରେ କେବଳ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗ ହିଁ ମୋତେ ସହଯୋଗର ହାତ ବଢ଼ାଇଛି, ଯାହାକୁ ମୁଁ କେବେ ବି ଭୁଲିପାରିବି ନାହିଁ, ଯାହାର ମୂକସାକ୍ଷୀ ମୁଁ ନିଜେ ।

ଓଡ଼ିଶାର ପ୍ରତିଷ୍ଠିତ ବିଶ୍ୱବିଦ୍ୟାଳୟମାନଙ୍କ ମଧ୍ୟରେ ପ୍ରଥମ କରି ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗ ତା'ର ସୁବର୍ଣ୍ଣ ଜୟନ୍ତୀ ପାଳନ କରିବାକୁ ଯାଉଥିବାରୁ ମୁଁ ଅନ୍ତରର ନିଭୃତ କୋଣରୁ ମୋର ଅନନ୍ତ କୃତଜ୍ଞତା ଜ୍ଞାପନ କରୁଛି । ଈଶ୍ୱରଙ୍କ ପାଖରେ ଏତିକି ପ୍ରାର୍ଥନା, ବିଭାଗ ପ୍ରଗତି ପଥରେ ଅଗ୍ରସର ହୋଇ ନବ ଦିଗନ୍ତର ଉନ୍ମୋଚନ କରୁ । ଜଗନ୍ନାଥ କରନ୍ତୁ, ବିଭାଗ ଭାରତବର୍ଷରେ ସାହିତ୍ୟ ଗବେଷଣାର ନେତୃତ୍ୱ ନେବା ଦିଗରେ ନିଜର ପ୍ରଚେଷ୍ଟା ଜାରି ରଖୁ । ଜୟ ଓଡ଼ିଆ ଭାଷା.....ଜୟ ଉତ୍କଳ ଜନନୀ ! !

●

*ଡି. ଏସ୍. ଏସ୍. ନଗର*

*ଭୁବନେଶ୍ୱର-୭*

# ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ସମ୍ପର୍କରେ ପଦେ

ପ୍ରଫେସର ସୁରେନ୍ଦ୍ରନାଥ ଦାଶ

ପ୍ରଫେସର୍ ସୁଦର୍ଶନ ଆଚାର୍ଯ୍ୟ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ସ୍ନାତକୋତ୍ତର ଓଡ଼ିଆ ବିଭାଗ ମୁଖ୍ୟ ଥିବା ବେଳେ ବିଭାଗ ସହିତ ସଂଶ୍ଲିଷ୍ଟ ହେବାର ସୁଯୋଗ ପାଇଥିଲି । ପରବର୍ତ୍ତୀ କାଳରେ ପ୍ରଫେସର୍ ବାଉରୀବନ୍ଧୁ କର, ପ୍ରଫେସର୍ ଅଶ୍ୱିନୀ କୁମାର ପଣ୍ଡା, ପ୍ରଫେସର୍ ଦେବୀପ୍ରସନ୍ନ ପଟ୍ଟନାୟକ, ପ୍ରଫେସର୍ ପୂର୍ଣ୍ଣଚନ୍ଦ୍ର ମିଶ୍ର, ପ୍ରଫେସର୍ ପ୍ରସନ୍ନ କୁମାର ସ୍ୱାଇଁ, ପ୍ରାଧ୍ୟାପକ ସଦାନନ୍ଦ ନାୟକ, ବିଭାଗର ମୁଖ୍ୟ ଥିବା ବେଳେ ବିଭିନ୍ନ କାର୍ଯ୍ୟ କଲା ବେଳେ ଯୋଗଦାନ କରିବାର ସୌଭାଗ୍ୟ ଲାଭ କରିଅଛି । ବିଭାଗର ଅଧ୍ୟାପକମାନଙ୍କର ସ୍ନେହ, ସଦିଚ୍ଛା, ସାହାଯ୍ୟ ଓ ସହଯୋଗ କେବେ ଭୁଲିବାର ନୁହେଁ । ଅଳ୍ପ ସମୟ ପାଇଁ ସାକ୍ଷାତ୍ ହେଲେ ମଧ୍ୟ ତାହା ହୃଦୟରେ ଦୀର୍ଘ ସମୟ ଧରି ଆନ୍ଦୋଳିତ ହେଉଥାଏ । ବିଭାଗର ଅଧ୍ୟୟନ ଶୈଳୀ, ଗବେଷଣା, ଦିଗ୍‌ଦର୍ଶନ ଓ ଜାତୀୟ ସ୍ତରରେ ବିଭାଗର ମାନ ବିଶେଷ ଉଲ୍ଲେଖଯୋଗ୍ୟ ।

ବିଭାଗ ଦ୍ୱାରା ସଂଗୃହୀତ ପ୍ରାଚୀନ ପାଣ୍ଡୁଲିପି, ଦୁର୍ଲ୍ଲଭ ପୁସ୍ତକ ଓ କଳା ସଂସ୍କୃତି ସମ୍ପର୍କୀୟ ବହୁ ପ୍ରାଚୀନ ଉପାଦାନ କେବଳ ବିଭାଗ ପାଇଁ ନୁହେଁ, ତାହା ଜାତୀୟ ଓ ଅନ୍ତର୍ଜାତୀୟ ସ୍ତରରେ ଏକ ବିଶିଷ୍ଟ ଭୂମିକା ଗ୍ରହଣ କରିଅଛି ।

ଉପେନ୍ଦ୍ର ଭଞ୍ଜଙ୍କ ସମ୍ପର୍କରେ ପ୍ରକାଶିତ ଓ ଅପ୍ରକାଶିତ ଦିଗ ଉପରେ ବିଭାଗର ଗବେଷଣା ଉପେନ୍ଦ୍ର ଭଞ୍ଜଙ୍କୁ ଜାତୀୟ ସ୍ତରରେ ପ୍ରତିଷ୍ଠିତ କରିବା ପାଇଁ ଏକ ବଳିଷ୍ଠ ପଦକ୍ଷେପ । ଏତଦ୍ ବ୍ୟତୀତ ବିଭିନ୍ନ ସମୟରେ ପ୍ରକାଶିତ ଓ ସମ୍ପାଦିତ ବହୁ ଉପାଦେୟ ପୁସ୍ତକ ଓଡ଼ିଆ ସାହିତ୍ୟକୁ ଋଦ୍ଧିମନ୍ତ କରିବାରେ ସାହାଯ୍ୟ କରିଅଛି ।

ଦୀର୍ଘ ଦିନ ଧରି ବିଭାଗ ତରଫରୁ ପ୍ରକାଶିତ ହେଉଥିବା ବିଭିନ୍ନ ପୁସ୍ତକ ଓଡ଼ିଆ ସାହିତ୍ୟରେ ଅନେକ ଅଜ୍ଞାତ ଅଧ୍ୟାୟକୁ ଉନ୍ମୋଚିତ କରିପାରିଅଛି । ସମ୍ପ୍ରତି ବିଭାଗର ମୁଖ୍ୟ ପ୍ରଫେସର୍ ପ୍ରସନ୍ନ କୁମାର ସ୍ୱାଇଁଙ୍କର ନିଷ୍କାମ ପ୍ରଚେଷ୍ଟା ଓ ଅକ୍ଳାନ୍ତ ଉଦ୍ୟମ ତଥା ନିଷ୍ଠାପର କର୍ମ ତତ୍ପରତା ଫଳରେ ବିଭାଗ ବିଶେଷ ଭାବରେ ସକ୍ରିୟ ହୋଇପଡ଼ିଛି । ଏହା ପ୍ରଫେସର୍ ସ୍ୱାଇଁଙ୍କର ବ୍ୟକ୍ତିଗତ ପ୍ରଚେଷ୍ଟା ବୋଲି କୁହାଯାଇପାରେ ।

ବିଭାଗର ସମସ୍ତ ଛାତ୍ରଛାତ୍ରୀ, ଗବେଷକ, ଗବେଷିକା, କର୍ମଚାରୀ ଓ ଅଧ୍ୟାପକ ତଥା ଅଧ୍ୟାପିକାମାନଙ୍କର ସ୍ନେହ, ଶ୍ରଦ୍ଧା ସର୍ବାଦୌ ସ୍ମରଣୀୟ । ବିଭାଗ ଉନ୍ନତି ପଥେ ଆଗେଇ ଚାଲୁ, ଏହା ହିଁ ମୋର କାମନା ।

•

*ଭି.ଏସ୍.ଏସ୍. ନଗର, ଭୁବନେଶ୍ୱର-୭*

# ମୁଁ ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ କଲା ବେଳେ

**ଡ. ମିହିର କୁମାର ତ୍ରିପାଠୀ**

୧୯୯୧ ମସିହା ଜୁନ୍ ମାସ । ହଠାତ୍ ଗୋଟିଏ ଦିନ ବାପା ଫୋନ୍ କଲେ ମୋତେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ସ୍ନାତକୋତ୍ତର ଓଡ଼ିଆ ବିଭାଗରେ ପାଠ ପଢ଼ିବା ନିମନ୍ତେ ସିଟ୍ ମିଳି ଯାଇଛି । ବହୁତ ଆନନ୍ଦ ଲାଗିଥିଲା । କିନ୍ତୁ ପରେ ପରେ ଟିକେ ଦୁଃଖ ବି ଲାଗିଲା । କାରଣ ମୁଁ ସେତେବେଳେ କୋରାପୁଟ ଜିଲ୍ଲାର ରାୟଗଡ଼ା ସହରରେ ଏକ ଘରୋଇ କୋରିଅର୍ କମ୍ପାନୀରେ ଶାଖା ପରିଚାଳକ ଭାବେ ଚାକିରି କରୁଥିଲି । ଖଲ୍ଲିକୋଟ ମହାବିଦ୍ୟାଳୟରୁ ସ୍ନାତକ ପରୀକ୍ଷା ଦେବା ପରେ ହଠାତ୍ ମୋତେ ଏହି ଚାକିରିଟି ମିଳିଥିଲା । ଜୀବନର ପ୍ରଥମ ଚାକିରି ହାତଛଡ଼ା କଲି ନାହିଁ । ତା'ପରେ କର୍ମ ହିଁ ଧର୍ମ । ରାୟଗଡ଼ା ଆସି ତିନି ମାସ ହୋଇଥିଲା । ପ୍ରାୟ ସମସ୍ତଙ୍କ ସହ ଖାପଖୁଆଇ ନିଜର ସ୍ଥିତି ଜାହିର କରି ସାରିଥିଲି । ଭଲ ବ୍ୟବସାୟ ମଧ୍ୟ ଧରିଥିଲା । କିନ୍ତୁ ସେପଟେ ଉଚ୍ଚଶିକ୍ଷା ପାଇଁ ଆଶା ମୋତେ ବାଧ୍ୟ କରିଥିଲା ରାୟଗଡ଼ା ଛାଡ଼ି ଘରକୁ ଫେରିବାକୁ । ତେଣୁ ମୁଁ ବାଧ୍ୟ ହୋଇ ବ୍ରହ୍ମପୁର ଆସି ବିଶ୍ୱବିଦ୍ୟାଳୟରେ ସ୍ନାତକୋତ୍ତର ଓଡ଼ିଆ ବିଭାଗରେ ନାମ ଲେଖାଇଲି । ସେତେବେଳେ ଓଡ଼ିଆ ବିଭାଗର ପ୍ରଫେସର୍ ଦାଶରଥି ଦାସ, ପ୍ରଫେସର୍ ସୁଦର୍ଶନ ଆଚାର୍ଯ୍ୟ, ପ୍ରଫେସର୍ ଅଶ୍ୱିନୀ କୁମାର ପଣ୍ଡା, ପ୍ରଫେସର୍ ବାଉରୀବନ୍ଧୁ କର, ପ୍ରଫେସର୍ ଦେବୀପ୍ରସନ୍ନ ପଟ୍ଟନାୟକ ଏବଂ ଡ. ପୂର୍ଣ୍ଣଚନ୍ଦ୍ର ମିଶ୍ର ପ୍ରମୁଖ ଅଧ୍ୟାପକ ଥିଲେ । କିଛି ଦିନ ବିଶ୍ୱବିଦ୍ୟାଳୟରେ କ୍ଲାସ୍‌ରେ ଯୋଗ ଦେଲା ପରେ ମୁଁ ଅନୁଭବ କରିଥିଲି ବିଶ୍ୱବିଦ୍ୟାଳୟ ଓ ମହାବିଦ୍ୟାଳୟର ଫରକ୍ । ମୁଁ ମନେ ମନେ ଭାବିଲି, ମୁଁ ଠିକ୍ ନିଷ୍ପତ୍ତି ନେଇଛି । ବିଶ୍ୱବିଦ୍ୟାଳୟ ଆସିବାର କିଛି ଦିନ ପରେ ମୁଁ ନିଜକୁ ଏକ ନିଆରା ମଣିଷ ରୂପେ ପାଇଥିଲି । ଉଚ୍ଚ ଆଶା, କିଛି ଅଧିକ ଜାଣିବାର ଇଚ୍ଛା ଏବଂ ଏଠାରେ ପାଠପଢ଼ାର ଶୈଳୀ ମୋ ଜୀବନରେ ଏକ ବଡ଼ ପରିବର୍ତ୍ତନ ଆଣି ଦେଇଥିଲା । ସେତେବେଳେ ଗୁରୁ ଏବଂ ଛାତ୍ର ମଧ୍ୟରେ ପିତା-ପୁତ୍ରର ସମ୍ପର୍କ ଥିଲା । ଏବେ ମଧ୍ୟ ଅଛି, କିନ୍ତୁ କିଛି ମାତ୍ରାରେ କମିଲା ଭଳି ମନେ ହୁଏ । ଆମମାନଙ୍କ ମଧ୍ୟରେ ଗୁରୁମାନଙ୍କ ପ୍ରତି ଭକ୍ତି ଥିଲା । ଯାହା ଆଜିକାଲିର ଛାତ୍ରଛାତ୍ରୀମାନଙ୍କ ମଧ୍ୟରେ ଦେଖିବାକୁ ମିଳୁନି । ପ୍ରତ୍ୟକ୍ଷ ଭାବେ ପ୍ରତ୍ୟେକ ଦିନ ଆମ ସହ ଆଲୋଚନା କରୁଥିଲେ । ଆମର ବି ଭୟ ଥିଲା । ପ୍ରତି ସପ୍ତାହରେ ବିଭାଗରେ ପାଠଚକ୍ର ହେଉଥିଲା । ଆମେମାନେ ପ୍ରତି ସପ୍ତାହରେ ବିଭିନ୍ନ କବିତା ଓ ରମ୍ୟ ରଚନା ଲେଖୁଥିଲୁ; ଯାହା ବିଭାଗର କାନ୍ଥରେ ଛପା ଯାଉଥିଲା ଏବଂ ବର୍ଷ ଶେଷରେ ଭଲ ଭଲ ଲେଖାମାନଙ୍କୁ

ନେଇ ବିଭାଗ ତରଫରୁ ଏକ ମେଗାଜିନ୍ ମଧ୍ୟ ପ୍ରକାଶ ପାଉଥିଲା । ସୌଭାଗ୍ୟକୁ ମୋର ଗୋଟିଏ କବିତା ଏଥିରେ ସ୍ଥାନ ପାଇଥିଲା ।

ସବୁଠୁ ନିଆରା ଥିଲା ବିଶ୍ୱବିଦ୍ୟାଳୟର ପ୍ରାକୃତିକ ସୌନ୍ଦର୍ଯ୍ୟ । ବଡ଼ ବଡ଼ ଝାଉଁଗଛ, କୃଷ୍ଣଚୂଡ଼ା ଓ ରାଧାଚୂଡ଼ା ଗଛ, ଆମ୍ବତୋଟା । ସନ୍ଧ୍ୟାରେ ସମୁଦ୍ରର ସୁ-ସୁ ଗର୍ଜନ ଆଉ ଖୋଲା ପବନ । ପଙ୍ଖାର ଆବଶ୍ୟକତା ନାହିଁ । ଯିଏ ଥରେ ଆମ ବିଶ୍ୱବିଦ୍ୟାଳୟକୁ ଆସିଛି, ଆଉ ଯିବାକୁ ଇଚ୍ଛା କରିନି । ପ୍ରତ୍ୟେକ ସଂକ୍ରାନ୍ତି ଓ ଶନିବାର ସନ୍ଧ୍ୟାରେ ଅଶ୍ୱିନୀ ପଣ୍ଡା ସାର୍ ଆମକୁ ହନୁମାନ ମନ୍ଦିରକୁ ନିଅନ୍ତି । ସେଠି କ୍ଲାସ୍ ହୁଏ । ପରେ ପରେ ପ୍ରସାଦ ସେବନ, ଭାରି ମଜା ଲାଗେ । ସମସ୍ତଙ୍କ ମଧ୍ୟରେ ଥିଲା ଏକ ପାରିବାରିକ ସମ୍ପର୍କ; ଯାହା ଆଜିକାଲି ଆଉ ଦେଖିବାକୁ ମିଳୁନି । ବୋଧହୁଏ ମୁଁ ଭାବୁଛି ଯୁଗର ପରିବର୍ତ୍ତନ ସହ ଜଳବାୟୁର ପରିବର୍ତ୍ତନ ଆଉ ଜଳବାୟୁର ପରିବର୍ତ୍ତନରେ ସମ୍ପର୍କର ମଧ୍ୟ ପରିବର୍ତ୍ତନ ହୋଇଯାଉଛି । ମଣିଷ ଆଜି ମଣିଷକୁ ଚିହ୍ନିପାରୁ ନାହିଁ । ପୁରୁଣା ବନ୍ଧୁକୁ ଦେଖିଲେ ଆଉ ଆଗ ଭଳି ଆନ୍ତରିକତା ଆସୁ ନାହିଁ । ମଣିଷ ଆଜି ଦିନକୁ ଦିନ ସ୍ୱାର୍ଥକୈନ୍ଦ୍ରିକ ହେବାରେ ଲାଗିଛି । ନିଜ ସଂସ୍କୃତି, ସାହିତ୍ୟ ଠାରୁ ଦୂରକୁ ଦୂରକୁ ଯାଉଛି, ଯାହା ଏ ସମାଜ ପାଇଁ କ୍ଷତିକାରକ । ଆଜିର ଛାତ୍ରଛାତ୍ରୀମାନେ ରାଜନୀତିଆ ନେତାମାନଙ୍କର ହାତମୁଠାରେ । ସେମାନଙ୍କର ଇଙ୍ଗିତରେ ବିଶ୍ୱବିଦ୍ୟାଳୟ ଚାଲିଛି । ଆମ ସମୟରେ ଛାତ୍ର ସଂସଦ ନିର୍ବାଚନ ହେଉଥିଲା । କିନ୍ତୁ ପ୍ରକୃତ ଛାତ୍ରନେତା ଭୋଟ ପାଉଥିଲା । ଛାତ୍ରଟିଏ ନିର୍ବାଚନରେ ଜିତିବା ପର ଠାରୁ ତାକୁ ରାଜନେତାଏଁ ମିଶୁଥିଲେ । ସଂପ୍ରତି ତା'ର ଓଲଟା । ରାଜନୈତିକ ଦଳଗୁଡ଼ିକର ଇସାରାରେ ଶିକ୍ଷାନୁଷ୍ଠାନଗୁଡ଼ିକରେ ନିର୍ବାଚନ ହେଉଛି । ମୁଖ୍ୟତଃ ବିଶ୍ୱବିଦ୍ୟାଳୟ ନିର୍ବାଚନରେ ଏଭଳି ହେବା ଠିକ୍ ନୁହଁ; କାରଣ, ବିଶ୍ୱବିଦ୍ୟାଳୟର ଛାତ୍ରଟିଏ ଶିକ୍ଷାଲାଭ ପରେ କୌଣସି ମହାବିଦ୍ୟାଳୟରେ ଅଧ୍ୟାପକ ଭାବେ ଯୋଗଦେଇ ନୂତନ ଛାତ୍ରଛାତ୍ରୀଙ୍କ ଭବିଷ୍ୟତ ତିଆରି କରିବ । ତେଣୁ ମୋ ମତରେ ଆଜିକାଲି ବିଶ୍ୱବିଦ୍ୟାଳୟମାନଙ୍କରେ ମନୋବିଜ୍ଞାନ ଉପରେ ଗୁରୁତ୍ୱ ଦେବା ଆବଶ୍ୟକ ଏବଂ ବିଶ୍ୱବିଦ୍ୟାଳୟକୁ ନିର୍ବାଚନ ଠାରୁ ଦୂରରେ ରଖିବା ଆବଶ୍ୟକ ।

ସେ ଯାହା ହେଉ, ଆମ ସମୟ ଥିଲା ମୋ ଛାତ୍ର ଜୀବନର ସୁବର୍ଣ୍ଣ ଯୁଗ । କାରଣ, ସେତେବେଳେ ଆଧୁନିକତା ଏତେ ମାତ୍ରାରେ ଆମ ସମାଜରେ ପ୍ରବେଶ କରିନଥିଲା, ପାଶ୍ଚାତ୍ୟ ସଂସ୍କୃତିର ଏତେଟା ପ୍ରଭାବ ନଥିଲା । ତେଣୁ ସମାଜ ମଧ୍ୟ ଏତେ କଳୁଷିତ ନଥିଲା । ତଥାପି, ଏବେ ବି ସମୟ ହାତରେ ଅଛି । ଆମେ ଚାହିଁଲେ ପୁଣି ଏ ସମାଜ ତା'ର ପୂର୍ବାବସ୍ଥା ଫେରିପାଇବ ।

●

*ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ*

# ମୁଗ୍ଧ ସ୍ମୃତିର ପ୍ରଜ୍ଞାପୀଠ: ଭଞ୍ଜବିହାର

ଡ. କୁଳମଣି ଓଝା

ବାଣୀକ୍ଷେତ୍ର ଭଞ୍ଜବିହାର । ଶବ୍ଦାତୀତ ସମ୍ମୋହନର ଚିତ୍ରିତ ସ୍ମୃତିତୀର୍ଥ । କେବେ ପୁଣି ଶବ୍ଦାୟିତ ମେଘ-ମହ୍ଲାରର ଛନ୍ଦନିବଦ୍ଧ ମଧୁ ମୂର୍ଚ୍ଛନା । ଭଞ୍ଜବିହାର ମୋ ସ୍ୱପ୍ନସିକ୍ତ ତାରୁଣ୍ୟର ପ୍ରୀତିପ୍ରଦ ତପୋଭୂମି । ଆଦ୍ୟ ଯୌବନର ନୀଳାଭ ନିର୍ଜନ ସ୍ନିଗ୍ଧ ଉପତ୍ୟକା । ଅନତି ଦୂରରେ ସୁନୀଳ ବିସ୍ତୃତି; ଗୋପାଳପୁରର ବୀଚି ବିକ୍ଷୋଭିତ ତରଙ୍ଗର ଭେଳା । ଭଞ୍ଜବିହାର- ବିବିଧ ଆଧୁନିକ ଜ୍ଞାନ ଶୃଙ୍ଖଳାର ସବୁଜିମା ଭରା ଶାନ୍ତ ତକ୍ଷଶୀଳା; ଦ୍ରୁମ ଦ୍ରୁମାବଳୀ ଶୋଭିତ, ଆର୍ଯ୍ୟଋଷି ପବିତ୍ରିତ ଆଶ୍ରମିକ ତପୋଶାଳା । ଭଞ୍ଜବିହାର ଗୁଳ୍ମଲତା ଆଚ୍ଛାଦିତ ସୁରମ୍ୟ ସବୁଜିମାର ସ୍ନିଗ୍ଧ ଉପବନ । ଆସଞ୍ଜ-ସକାଳ ଭଞ୍ଜବିହାର ମୋ ଉଦ୍‌ଗତ ଆବେଗର ଶାନ୍ତ ସମାହିତ ଅସୀମ ଉତ୍‌ପ୍ରେରଣା । ସେଇ ଭଞ୍ଜବିହାର ବି ହୋଇପାରେ ଚରାଚର ବିଭୋର ଆହ୍ଲାଦର ପ୍ରଙ୍କୋପମ ମାନ୍ତ୍ରିକ ଉଚ୍ଚାରଣ । ଭଞ୍ଜବିହାରର ରେଣୁରେ ରେଣୁରେ ଆତୁର ଆତ୍ମୀୟତାର ଅମାପ ଅନୁରାଗ । ସେଇ ପୀଠ ପୁଣି କଥା କବିତାର ଚାରୁଚିତ୍ରମୟ ଶ୍ୟାମଳ ଅରଣ୍ୟ । ମୋ ଅନ୍ତଶ୍ଚେତନାରେ କବିଦ୍ୱର ପୁଷ୍କଳ ଶ୍ରୀକ୍ଷେତ୍ର ଭଞ୍ଜବିହାର ଜ୍ୟୋସ୍ନାସ୍ନାତ ନିରବ ନିଶୀଥର ଶୀତଳ-ଶୀତଳ ଚନ୍ଦନର ଲେପ । ଏ କ୍ଷେତ୍ର କେବଳ ମାତ୍ର ସ୍ଥାନୀୟତା ସୂଚକ ନୁହେଁ; ବରଂ ଭଞ୍ଜବିହାର ଏକ ସ୍ୱପ୍ନିଳ ଚୌହଦୀ, ପ୍ରାଣୋଚ୍ଛଳ ପ୍ରଜ୍ଞାର କଳ-କଲ୍ଲୋଳ, ନିଜ ଭିତରକୁ ନିରେଖି ଦେଖିବା ଓ ଆତ୍ମଗତ ସୁପ୍ରତିଭ ସମ୍ଭାବନାକୁ ପ୍ରତ୍ୟକ୍ଷ କରିବାର ଏକ ପବିତ୍ର ବନାଶ୍ରମ ପରିସର ।

ଭଞ୍ଜବିହାରରେ ନାନା ଜାତି ଶିକ୍ଷାର ଜୀବନୋପମ ଦୀପାଳି ଜଳେ । ଜ୍ଞାନର ଫୁଲ ଫୁଟେ । ପ୍ରଜ୍ଞାର ପୁଷ୍ପ । ପ୍ରତୀତିର ପୁଷ୍ପ । ପ୍ରେମ ଓ ସଂପ୍ରୀତିର କେତେ କେତେ ସୁରଭିତ ପୁଷ୍ପ । ପୁଷ୍ପାନୁରାଗର ପ୍ରୀତି ପାଖୁଡ଼ାରେ କାନ୍ତ କମନୀୟ ଜୀବନ୍ତ ଶବ୍ଦକୀର୍ତ୍ତି । ଭଞ୍ଜବିହାରର ପ୍ରତିଟି ଧୂଳିକଣାରେ ଧୀ ଓ ଧୀଷଣାର, ଅନୁଶୀଳନ ଓ ଅନୁସନ୍ଧିତ୍ସାର ସୁବେଦ୍ୟ ଜ୍ଞାନାଲୋକ । ସେଇଥି ପାଇଁ ତ ଏହି ପ୍ରାକୃତିକ ଜ୍ଞାନ ମନ୍ଦିରରେ ସ୍ୱତଃ ଗୁଞ୍ଜରିତ ହୁଏ-

"ତାରକ ମନ୍ତ୍ର ପରସାଦେ । ମୋହର କବିପଣ ଉଦେ ।"

ମୋ ଶବ୍ଦ-ସର୍ଜନାର ଆଦିଭୂମି ଏଇ ଭଞ୍ଜବିହାର । ଲୋଡ଼ା-ଅଲୋଡ଼ା ପୁଣି ଦିବ୍ୟ-ଅଦିବ୍ୟ ଶବ୍ଦ ସଙ୍ଗମର ପୁଣ୍ୟପ୍ରଭ ପାବନ ପ୍ରୟାଗ । ଭଞ୍ଜବିହାରର ଛାୟାଛନ୍ନ ପାଦପ ପରିଶୋଭିତ ଶ୍ୟାମଳ ଧରଣୀରେ ୧୯୬୭ରେ ଗଢ଼ି ଉଠିଥିଲା ଓଡ଼ିଶାର ପ୍ରମୁଖ ପାଠଶାଳା

ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ । କଳାସୌଧର ପଶ୍ଚିମ ପାର୍ଶ୍ୱ ତଳ ମହଲାରେ ବାଣୀ ବିତାନର ଶାବ୍ଦିକ -ସଦନ 'ଓଡ଼ିଆ ଭାଷା-ସାହିତ୍ୟ ବିଭାଗ' । ଯେଉଁ ସାରସ୍ୱତ ଶବ୍ଦାଲୋକର ପ୍ରଥମ ପ୍ରଜ୍ଞାପୁରୁଷ ଥିଲେ ଆନ୍ତର୍ଜାତିକ ଖ୍ୟାତିପ୍ରାପ୍ତ ଗବେଷକ, ପ୍ରଖ୍ୟାତ ଭାଷାବିଜ୍ଞାନୀ, ଗୁରୁଣାଂ ଗୁରୁ ପ୍ରଫେସର୍ କୁଞ୍ଜବିହାରୀ ତ୍ରିପାଠୀ । ପରବର୍ତ୍ତୀ ପର୍ବରେ ଓଡ଼ିଆ ଭାଷା-ସାହିତ୍ୟର ପ୍ରାତଃ ସ୍ମରଣୀୟ ଦିଗ୍‌ଗଜ ପ୍ରାଧ୍ୟାପକ ଡ. ବେଣୀମାଧବ ପାଢ଼ୀ, ପ୍ରଫେସର୍ କାହ୍ନୁଚରଣ ମିଶ୍ର, ପ୍ରଫେସର୍ ଶ୍ରୀନିବାସ ମିଶ୍ର, ପ୍ରଫେସର୍ ସୁଦର୍ଶନ ଆଚାର୍ଯ୍ୟ, ପ୍ରଫେସର୍ ଗଗନେନ୍ଦ୍ରନାଥ ଦାଶ, ପ୍ରାଧ୍ୟାପକ ଡ.ସୀତାରାମ ମହାପାତ୍ର, ପ୍ରଫେସର୍ ଦାଶରଥି ଦାସ, ପ୍ରଫେସର୍ ବାଉରୀବନ୍ଧୁ କର, ପ୍ରଫେସର୍ ଅଶ୍ୱିନୀ କୁମାର ପଣ୍ଡା, ପ୍ରଫେସର୍ ଦେବୀପ୍ରସନ୍ନ ପଟ୍ଟନାୟକ ଓ ପ୍ରଫେସର୍ ପୂର୍ଣ୍ଣଚନ୍ଦ୍ର ମିଶ୍ର ଏହି ବାଣୀମନ୍ଦିରକୁ ଏକ ମହିମାଦୀପ୍ତ ଶିଖରକୁ ଉନ୍ନୀତ କରାଇବାରେ ଆର୍ଯ୍ୟଋଷିଙ୍କ ଭୂମିକା ନିର୍ବାହ କରିଥିଲେ । ଏଭଳି ଏକ ସୃଷ୍ଟିକାମୀ ପାବନ ପରିସରରେ ମାତ୍ର ଗୋଟିଏ ବର୍ଷର ଅବସ୍ଥାନ; ୩୬୫ ଦିନର ଆତ୍ମୀୟ ଅନୁରାଗରେ ଗୁରୁ-ଶିଷ୍ୟଙ୍କ ସୃଜ୍ୟମାନ୍ ରଜ୍ଜୁରେ ଗୁନ୍ଥା ପ୍ରୀତି ପଲ୍ଲବିତ ଶୈକ୍ଷିକ ସମ୍ପର୍କ । ୧୯୯୦-୧୯୯୧ ଶୈକ୍ଷିକ ସମ୍ବତ୍ସରର ପ୍ରାଗ୍-ଗବେଷଣା (ଏମ୍.ଫିଲ୍.) ଶ୍ରେଣୀ ପାଠ୍ୟକ୍ରମର ଜଣେ ଦୂରବର୍ତ୍ତୀ ଅନାମଧେୟ ଜ୍ଞାନାନ୍ୱେଷୀ ଛାତ୍ର ।

ସେଦିନର ସ୍ମୃତି ବେଶ୍ ସତେଜ, ଏବେ ବି ଉଜ୍ଜୀବିତ । ଜୁଲାଇ ମାସର ଏକ ବର୍ଷାଧୌତ ଉତ୍ତୀର୍ଣ୍ଣ ସକାଳ । ଭଞ୍ଜବିହାରର ଜ୍ଞାନଗଙ୍ଗାରେ ଅବଗାହନ କରିବାର ପହଲି ପ୍ରବେଶ, ପ୍ରଥମ ସ୍ପର୍ଶ । ତୃପ୍ତିପ୍ରଦ ପ୍ରକୃତିର ସୁଘଞ୍ଚ ନିଃସର୍ଗ ନିଳୟରେ ଆତ୍ମବିଭୋର ହେବାର ପ୍ରଥମ ଅବକାଶ । ସଂଯୋଗ କ୍ରମେ 'ସମ୍ବାଦ'ର ବ୍ରହ୍ମପୁର ଆଞ୍ଚଳିକ ସଂସ୍କରଣରେ ସହ-ସମ୍ପାଦକ ରୂପେ କାର୍ଯ୍ୟନିର୍ବାହ ସାଙ୍ଗକୁ ଭଞ୍ଜବିହାରର ଆଶ୍ରମିକ ପରିବେଶରେ ସାରସ୍ୱତ ଜ୍ଞାନାଲୋକରେ କ୍ରମ-ସଂଜୀବିତ ହେବାର ଅପୂର୍ବ ଉଲ୍ଲାସ । କେତେକେତେ ସ୍ମୃତିଭିଜା ବିଭୋର ମୁହୂର୍ତ୍ତର ଛବିଳ ଆଲେଖ୍ୟ, ଗୀତ ଓ କବିତାର ଶ୍ରୁତ-ଅଶ୍ରୁତ ମଧୁର ନିନାଦ, ଜ୍ଞାନନିଷ୍ଠ ପ୍ରବନ୍ଧ ପାଠରୁ ବଣ-ପର୍ବତ-ସାଗର ସଙ୍ଗମ, ରମ୍ଭା ଉପକୂଳ ଚିଲିକାର ଚାରୁ ଚିତ୍ରପଟ, ଗଣ୍ଡାହାତୀର ଚିର ନିସ୍ୟନ୍ଦିନୀ ପ୍ରବାହ ପ୍ରପାତ-ସବୁ ସ୍ମୃତି ସଂଜୀବିତ, ଚିତ୍ତ ଉଲ୍ଲାସକ । ମନେ ପଡ଼େ, ପ୍ରାଗ୍-ଗବେଷଣା ତତ୍ତ୍ୱ ଓ ତଥ୍ୟର ଆହରିତ ଧାରା ଓ ଧରାର ଶୈକ୍ଷିକ ସିଦ୍ଧାନ୍ତ । ଶ୍ରେଣୀ କକ୍ଷରେ ସୁଦର୍ଶନ ସାରଙ୍କ ତଥ୍ୟନିଷ୍ଠ ଜ୍ଞାନ-ଗାମ୍ଭୀର୍ଯ୍ୟ ଅଧ୍ୟାପନା ସାଙ୍ଗକୁ ଦାଶରଥି ସାରଙ୍କ ବହୁ ଶାସ୍ତ୍ରଦର୍ଶିତାର ସୁଗଭୀର ତତ୍ତ୍ୱାଶ୍ରୟୀ ଜ୍ଞାନ-ବିଜ୍ଞାନର କାବ୍ୟିକ ଉଚ୍ଛ୍ୱାସ ମୋ ଜୀବନାୟନର ଶ୍ୟାମଳ ଅଭୀପ୍ସାକୁ ସୁନିଶ୍ଚିତ ସାରସ୍ୱତ ପ୍ରସ୍ଥ ଓ କାବ୍ୟ ବିଳାସର ସୁନିପୁଣ ଭାଷ୍ୟ ପ୍ରଦାନରେ ବିଶେଷ ସହାୟକ

ହୋଇଥିଲା । ଅନୁରୂପ ଭାବରେ ବାଉରୀବନ୍ଧୁ ସାର୍, ଅଶ୍ୱିନୀ ସାର୍, ଦେବୀ ସାର୍ ଓ ପୂର୍ଣ୍ଣଚନ୍ଦ୍ର ସାର୍‌ଙ୍କ ସମୟୋପଯୋଗୀ ଦିଗ୍‌ଦର୍ଶନ ଓ ସାରସ୍ୱତ ଜ୍ଞାନାଲୋକର ଅକୃତ୍ରିମ ବିତରଣ ମୋ ଭିତରର 'କୁଳମଣି'କୁ ପ୍ରତି ମୁହୂର୍ତ୍ତରେ ଉଦ୍ଦୀପ୍ତ, ଉତ୍‌ପ୍ରେରିତ କରୁଥିଲା । କବି ପ୍ର. ସୌଭାଗ୍ୟ କୁମାର ମିଶ୍ର, ଭାଷାବିତ୍ ପ୍ର. ଗଗନେନ୍ଦ୍ରନାଥ ଦାଶ, ସାମ୍ବାଦିକତା ଓ ଗଣଯୋଗାଯୋଗ ବିଭାଗର ପ୍ର. ଦାଶରଥି ମିଶ୍ର ଓ ଡ. ପ୍ରଦୀପ ମହାପାତ୍ରଙ୍କ ସୌଖ୍ୟ ଓ ସାନ୍ନିଧ୍ୟ ମୋ ଭିତରେ କବି ମଣିଷକୁ ପ୍ରତ୍ୟକ୍ଷିବାର ସାମର୍ଥ୍ୟ ଭରି ଦେଇଥିଲା । କବିବନ୍ଧୁ ଅଖିଳ ନାୟକ, ସୁରେଶ ନାୟକ, ନିରାକାର ଦାସ, ଅନୁପ ମିଶ୍ର, ମନୋରଞ୍ଜନ ପାଣିଗ୍ରାହୀ, ରାଜକିଶୋର ଦାସ, ଅରବିନ୍ଦ ପଟ୍ଟନାୟକ, ରବି ପୋଲାଇ, ସିଦ୍ଧାର୍ଥ ଶଙ୍କର ପାଢ଼ୀ, ଶର୍ମିଷ୍ଠା ମିଶ୍ର, ଝାନ୍‌ସି ସିଂ, ହୃଷୀକେଶ ପଣ୍ଡା ପ୍ରମୁଖଙ୍କ ଶବ୍ଦ-ସାଉଁଟା କେତେ ଜହ୍ନରାତି ଭଞ୍ଜବିହାରର ନାଭିକେନ୍ଦ୍ରରେ ଓଁକାରର ଅନାହତ ବିତାନ ସୃଷ୍ଟି କରୁଥିଲା ।

ସବୁଠୁ ଆବେଗ ଉତ୍‌କଣ୍ଠିତ ସ୍ମୃତି ସାଉଁଳା ଅବକାଶ ଥିଲା: 'ସାରା ରାତି ଜହ୍ନରାତି' । ଚାନ୍ଦ୍ର ନିଶୀଥିନୀରେ କବିତ୍ୱର ଅମନ୍ଦ ପ୍ରବାହ । ମୋ 'ଚିରକାଳ ଆଦିମ ସକାଳ' କବିତାର କ୍ରମ ବିବର୍ତ୍ତନ, ଅଖିଳର 'ଗୁଲିଖଟି' କବିତାର ଶାଣିତ ବ୍ୟଙ୍ଗ, ଅନୁପର 'ବେଲୁନ୍‌ବାଲା' କବିତାର ନିଚ୍ଛିଦ୍ର ଜୀବନ ଦର୍ଶନ, ମନୋରଞ୍ଜନଙ୍କ 'ବରଂ ଭଲ ବିଜନତା'ର ବିନିଦ୍ର ଭଲ ପାଇବା ଓ ଆତ୍ମୀୟତା ଭିତରେ ପାହାନ୍ତି ଆକାଶରେ ତାରା ଲିଭୁଥିଲା । ବର୍ଷକର ଶିକ୍ଷାଗ୍ରହଣ ପରିପ୍ରେକ୍ଷୀରେ ଭଞ୍ଜବିହାରର ଶନିବାର ସାହିତ୍ୟ ଆସର, ଜ୍ଞାନଗର୍ଭକ ଆଲୋଚନା ଓ ପାଠଚକ୍ର, ଗପ ଓ କବିତା ଆସରର ଆୟୋଜନ ତଥା ସାହିତ୍ୟ ସର୍ଜନା ମୋ ସାରସ୍ୱତ ବିବେଚନାର ମାର୍ଗ ସୁପ୍ରଶସ୍ତ କରିବା ସହ ଶବ୍ଦଙ୍କୁ ଲୋଡ଼ିବାପଣରେ ଅନୁବନ୍ଧିତ କରିଛି । ତଦ୍‌ଭିନ୍ନ ଓଡ଼ିଆ ବିଭାଗ ପାଠଚକ୍ର ପ୍ରକୋଷ୍ଠରେ ନିବନ୍ଧ ଉପସ୍ଥାପନ, କବିତା ସଂଯୋଜନା, ସ୍ୱରଚିତ କବିତା ଆବୃତ୍ତି, ଛାନ୍ଦ ଓ ଓଡ଼ିଶୀ ସଙ୍ଗୀତ ପରିବେଷଣର ଅନ୍ତରଙ୍ଗ ମଧୁକ୍ଷରା ସ୍ମୃତି ମୋ ପଚାଶ ଉତ୍ତୀର୍ଣ୍ଣ ଆୟୁଷର ମାନସପଟରେ ଆଜି ବି ଉଜ୍ଜୀବିତ, ଉଦ୍‌ଭାସିତ । ବିଂଶ ଶତାବ୍ଦୀର ଶେଷ ଦଶକରେ ଏହି ବାଣୀପୀଠରେ ନୂତନ ସ୍ୱର ମୂର୍ଚ୍ଛନା ସୃଷ୍ଟି କରିଥିଲେ ଡ. କୃଷ୍ଣଚନ୍ଦ୍ର ପ୍ରଧାନ, ଡ. ପ୍ରସନ୍ନ କୁମାର ସ୍ୱାଇଁ ଓ ଡ. ସଦାନନ୍ଦ ନାୟକ; କିୟତ୍ ବର୍ଷ ପରେ ଡ. ଦେବୀପ୍ରସାଦ ଶତପଥୀ ଓ ଡ. ସମୀର ଭୋଇ । ଇତି ମଧ୍ୟରେ ବିଭାଗର ବହୁ ସାରସ୍ୱତ ସମ୍ମାନରେ ସାମିଲ ହୋଇ ନିବନ୍ଧ ଉପସ୍ଥାପନର ସୁଯୋଗ ଲାଭ କରିଛି । ବିଭାଗ ଓ ବିଭାଗୀୟ ଗୁରୁଙ୍କୁ ନତମସ୍ତକ କୃତଜ୍ଞତା ଜ୍ଞାପନ କରୁଛି ।

ସର୍ଜନାର ପୁଣ୍ୟପୀଠ ଭଞ୍ଜବିହାର ଅର୍ଦ୍ଧ-ଶତାବ୍ଦୀର ସ୍ୱପ୍ନିଳ ସରଣି ଅତିକ୍ରମ କରି ସାରିଛି । ସମତାଳରେ ଓଡ଼ିଆ ଭାଷା ସାହିତ୍ୟ ବିଭାଗ ମଧ୍ୟ ପାଦରେ ପାଦ ମିଳାଇ ପଚାଶଟି ଶୈକ୍ଷିକ ପାହାଚ ଅତିକ୍ରମିଛି । ଆମ ସମସ୍ତଙ୍କ ଦାୟିତ୍ୱବୋଧ ଓ ସାହିତ୍ୟାନୁସାରୀ ପ୍ରତିବଦ୍ଧତା ଆହୁରି ଜ୍ଞାନଦୀପ୍ତ, ଆହୁରି ଶବ୍ଦାଭ ଓ ଅର୍ଥପୂର୍ଣ୍ଣ ହୋଇଉଠିଛି । ହେ ମୋର ଓଡ଼ିଆ ବିଭାଗର ଶ୍ରଦ୍ଧାନୁବଦ୍ଧ ସାଥୀ ଓ ସତୀର୍ଥ ! ସ୍ନେହାସ୍ପଦ ଅନୁଜ ଓ ଅଗ୍ରଜ ବନ୍ଧୁବର୍ଗ ! ପଚାଶ ବର୍ଷ ପୂର୍ତ୍ତିର ଅନନ୍ୟ ପ୍ରେକ୍ଷାପଟରେ ଆସନ୍ତୁ ସମସ୍ତେ ! ! ଅର୍ଦ୍ଧ-ଶତକର ସ୍ମୃତି ବଖାଣିବା, ସ୍ମୃତିରେ ହଜିବା, ସ୍ମୃତିରେ ମଜ୍ଜିବା ଏବଂ ଅବଶେଷରେ ନୂଆ ଏକ ସର୍ଜନାର ଗୀତ ଗାଇ ଆତ୍ମୀୟ ଅନୁରାଗର ସଙ୍ଗ ଓ ପୁରାତନ ସଂଘକୁ ଅସୀମ ସମ୍ଭାବନାର ପୂର୍ଣ୍ଣତାରେ ଭରି ଦେବା ! !

•

*ଉପସଚିବ, ଉଚ୍ଚମାଧ୍ୟମିକ ଶିକ୍ଷା ପରିଷଦ,*
*ଆଞ୍ଚଳିକ କାର୍ଯ୍ୟାଳୟ, ବ୍ରହ୍ମପୁର-୫*

# ଅତୀତରୁ ବର୍ତ୍ତମାନ : ଓଡ଼ିଆ ବିଭାଗ- ଭଞ୍ଜବିହାର

ଡ. ଅଶୋକ କୁମାର ପଟ୍ଟନାୟକ

୧୯୮୦ ମସିହା ଗଞ୍ଜାମ ମହାବିଦ୍ୟାଳୟ, ଗଞ୍ଜାମରୁ ସ୍ନାତକରେ ସମ୍ମାନ ସହ ବିଶ୍ୱବିଦ୍ୟାଳୟ ସ୍ତରରେ ଚତୁର୍ଥ ସ୍ଥାନରେ ଉତ୍ତୀର୍ଣ୍ଣ ହୋଇ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗରେ ଛାତ୍ର ହେବାର ସୁଯୋଗ ମିଳିଲା । ସେତେବେଳେ ଡ. କାହ୍ନୁଚରଣ ମିଶ୍ର ବିଭାଗର ମୁଖ୍ୟ ପ୍ରଫେସର୍ ଥିଲେ । ଅନ୍ୟ ସ୍ୱନାମଧନ୍ୟ ପ୍ରଫେସର୍ ଡ. ସୁଦର୍ଶନ ଆଚାର୍ଯ୍ୟ, ଡ. ଶ୍ରୀନିବାସ ମିଶ୍ର, ଡ. ସୀତାରାମ ଆଚାର୍ଯ୍ୟଙ୍କ ଅଧ୍ୟାପନା ଓ ତତ୍ତ୍ୱାବଧାନରେ ବିଭାଗ ଚଳଚଞ୍ଚଳ ଥିଲା । ବିଜ୍ଞ ପ୍ରଫେସର୍‌ମାନଙ୍କ ପାଣ୍ଡିତ୍ୟର ପରିଚୟ ମନରେ ଯେତିକି ବିସ୍ମୟ ଓ ଆନନ୍ଦ ଆଣିଦେଲା, ସେତିକି ଆତ୍ମସନ୍ତୋଷରେ ମନ ପୂରିଉଠିଲା । ଶିକ୍ଷାଦାନ ଶୈଳୀ, ସନ୍ଦେହ ମୋଚନର ଉପାୟ, ବିଷୟବସ୍ତୁ ସମ୍ପର୍କୀୟ ଜ୍ଞାନ ବିଶେଷରେ ଛାତ୍ର ବତ୍ସଳତା ଅତି ଉଚ୍ଚକୋଟୀର ଥିଲା ବେଳେ ବେଳ ଅବେଳ ଯେତେବେଳେ ଯେଉଁ ମୁହୂର୍ତ୍ତରେ ମନରେ କିଛି ପ୍ରଶ୍ନ ଜାଗରିତ ହେଉଥିଲା କି ବିଷୟ ସମ୍ପର୍କରେ କିଛି ସନ୍ଦେହ ଉପୁଜୁଥିଲା, ସେତେବେଳେ ବିନା ଦ୍ୱିଧାରେ ଏହି ବିଜ୍ଞ ବ୍ୟକ୍ତିମାନଙ୍କ ଠାରୁ ଆମ୍ଭେମାନେ ସତ୍‌ଜ୍ଞାନ ପାଇପାରୁଥିଲୁ । ବିଭାଗରେ ପାଠଚକ୍ର ପାଠାଗାରରେ ଗଚ୍ଛିତ ପୁସ୍ତକ ପାଠ୍ୟଖସଡ଼ା ସମ୍ପର୍କୀୟ ବିଷୟବସ୍ତୁ ସହ ଅନ୍ୟାନ୍ୟ ଦିଗରେ ମଧ୍ୟ ଜ୍ଞାନ ଅର୍ଜନରେ ଯଥେଷ୍ଟ ସହାୟକ ଥିଲା । ବିଭାଗର ସମସ୍ତ ପ୍ରଫେସର୍‌ମାନଙ୍କ ସାହଚର୍ଯ୍ୟ, ପାଠାଗାର ତଥା ବିଭାଗର ପରିବେଶରେ ଏକ ସାହିତ୍ୟିକ ବାତାବରଣ ମଧ୍ୟରେ ଜ୍ଞାନର ସୀମା ଯଥେଷ୍ଟ ଉନ୍ନତି ଲାଭ କରିଥିଲା । ଏକ ସୌହାର୍ଦ୍ଦ୍ୟପୂର୍ଣ୍ଣ ଅନୁକୂଳ ବାତାବରଣରେ ସମ୍ପୂର୍ଣ୍ଣ ହେଲା ସ୍ନାତକୋତ୍ତର ପାଠ୍ୟକ୍ରମ । ବିଶ୍ୱବିଦ୍ୟାଳୟ ସ୍ତରରେ ଦ୍ୱିତୀୟ ସ୍ଥାନ ଅଧିକୃତ ସହ ଉତ୍ତୀର୍ଣ୍ଣ ହୋଇ ଯୋଗ ଦେଲୁ ଏମ୍.ଫିଲ୍. ପାଠ୍ୟକ୍ରମରେ ।

ଏମ୍.ଫିଲ୍. ପାଠ୍ୟକ୍ରମରେ ପାଠ୍ୟ ଖସଡ଼ାନୁଯାୟୀ ସାଧାରଣ ବିଷୟ ସହ ପ୍ରାଚୀନ ସାହିତ୍ୟ ସ୍ୱତନ୍ତ୍ର ପତ୍ର ରୂପେ ନିର୍ବାଚନ ପୂର୍ବକ ପୂଜ୍ୟଗୁରୁ ଡ. ସୁଦର୍ଶନ ଆଚାର୍ଯ୍ୟଙ୍କ ତତ୍ତ୍ୱାବଧାନରେ 'ସାରଳା ମହାଭାରତର ଉପକଥା' ସମ୍ପର୍କରେ ନିବନ୍ଧ ପ୍ରସ୍ତୁତିକରଣ ପରେ ପିଏଚ୍.ଡି. ପାଇଁ ପଞ୍ଜିକରଣ ତଥା ବିଶ୍ୱବିଦ୍ୟାଳୟ ଅନୁମୋଦନ ଅନ୍ତେ, ସାରଳା

ମହାଭାରତର ଉପକଥା ସମ୍ପର୍କୀୟ ଗବେଷଣାତ୍ମକ ଅନୁଧ୍ୟାନକୁ ଆହୁରି ଗଭୀର ଓ ବ୍ୟାପକ ଭାବେ ଉପସ୍ଥାପନ ପୂର୍ବକ ୧୯୯୧ ମସିହାରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ତରଫରୁ ପିଏଚ୍.ଡି. ଡିଗ୍ରୀ ଲାଭ କରିବା ଅବସରରେ ମନେ ପଡ଼େ ଓଡ଼ିଆ ବିଭାଗର ପାଠଚକ୍ର, ପାଠାଗାର ଓ ଗଚ୍ଛିତ ତାଳପତ୍ର ପୋଥିର ଉପାଦେୟତା ।

ଏହି ସମୟରେ ଗଞ୍ଜାମ ମହାବିଦ୍ୟାଳୟରୁ ସୁଦୂର କଳାହାଣ୍ଡି ଜିଲ୍ଲା ନ୍ୟାସନାଲ୍ ମହାବିଦ୍ୟାଳୟ, ନୂଆପଡ଼ାକୁ ବଦଳି, ବର୍ତ୍ତମାନ ଯାହା ନୂଆପଡ଼ା ଜିଲ୍ଲାର ସଦର ମହକୁମାର ନୋଡ଼ାଲ୍ ମହାବିଦ୍ୟାଳୟ । ଏଠାରେ ଅଧ୍ୟାପନା କାଳରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଅଧୀନରେ ଡ. ସୁଦର୍ଶନ ଆଚାର୍ଯ୍ୟଙ୍କ ତତ୍ତ୍ୱାବଧାନରେ ଡି.ଲିଟ୍. ପାଇଁ ପଞ୍ଜିକରଣ ଓ ୨୦୦୬ ମସିହାରେ ପଞ୍ଚ ମହାପୁରୁଷଙ୍କ ପୁରାଣରେ ଉପକଥା ଶିରୋନାମାରେ ଉପସ୍ଥାପିତ ନିବନ୍ଧ ଡି.ଲିଟ୍. ଉପାଧିପ୍ରାପ୍ତି ମୋ ପାଇଁ ସୌଭାଗ୍ୟ ଓ ଗର୍ବର ବିଷୟ । ଆହୁରି ସୌଭାଗ୍ୟର ବିଷୟ ଯେ, ବିଶ୍ୱବିଦ୍ୟାଳୟର ୟୁଜିସି ଅନୁଦାନରେ ଓଡ଼ିଆ ବିଭାଗ ତରଫରୁ ଆୟୋଜିତ ତିନି ଗୋଟି ରିଫ୍ରେସର୍ କୋର୍ସରେ ୨୦୦୩ ଠାରୁ ୨୦୦୫ ଭିତରେ ବିଭାଗ ମୋତେ ସାମିଲ୍ କରି ବିଷୟ ଓ ଅଧ୍ୟାପନା ସମ୍ପର୍କରେ ଜ୍ଞାନର ପରିସୀମା ବଢ଼ାଇବାରେ ଯଥେଷ୍ଟ ସହାୟକ ହୋଇଅଛି ।

ସର୍ବୋପରି ଆଉ ଏକ ସଫଳତା ହେଲା ନ୍ୟାସନାଲ୍ ମହାବିଦ୍ୟାଳୟର ଚାକିରି ଅବଧି କାଳରେ ୟୁଜିସିର ଅନୁଦାନ ପାଇ ଗୋଟିଏ ମାଇନର୍ ପ୍ରୋଜେକ୍ଟ ଓ ଗୋଟିଏ ମେଜର୍ ପ୍ରୋଜେକ୍ଟର ସଫଳ ସମ୍ପାଦନ । ଏହା ସମ୍ଭବ ହୋଇ ପାରିଅଛି ଓଡ଼ିଆ ବିଭାଗରୁ ପ୍ରାପ୍ତ ପ୍ରେରଣା ଓ ଜ୍ଞାନରୁ ।

ମୋଟାମୋଟି ସ୍ନାତକ ପର ଠାରୁ ଓଡ଼ିଆ ବିଭାଗର ଛାତ୍ର ହେବା ପରେ ଆଜି ପର୍ଯ୍ୟନ୍ତ ଏମ୍.ଏ., ଏମ୍.ଫିଲ୍., ପିଏଚ୍.ଡି, ଡି.ଲିଟ୍. ପ୍ରୋଜେକ୍ଟ ସମ୍ପାଦନ ଭଳି ଗବେଷଣାତ୍ମକ କାର୍ଯ୍ୟରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗର ଅବଦାନ ଅତୁଳନୀୟ ।

•

*ଅଧ୍ୟକ୍ଷ, ନୂଆପଡ଼ା କଲେଜ,*
*ନୂଆପଡ଼ା, କଳାହାଣ୍ଡି*

# ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ : ସ୍ନାତକୋତ୍ତର ଓଡ଼ିଆ ବିଭାଗରେ ଦୁଇ ବର୍ଷ

ଡ. ଦୁର୍ଗାମାଧବ ନନ୍ଦ

ଅତୀତର ସ୍ମୃତି ଏବେ ବି ମନୋରମ । ୧୯୭୧-୧୯୭୨ ମସିହାରେ ମୁଁ ଏହି ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗରେ ଦ୍ୱିତୀୟ ପଢ଼ିର ଛାତ୍ରଗୋଷ୍ଠୀରେ ଅଧ୍ୟୟନ କରୁଥିଲି । ସେତେବେଳେ ବ୍ରହ୍ମପୁର ସହରରେ ଆମ ବିଭାଗ ସହ ସମସ୍ତ ବିଭାଗ ଭଡ଼ାଘରେ ଚାଲୁଥିଲା । ଧୀରେ ଧୀରେ ୧୯୭୨ ପରେ ଆଜିର ଭଞ୍ଜବିହାର ପରିସରରେ ପ୍ରଶାସନ ଗୃହଟି ନୂତନ ଭାବେ ତିଆରି ହେଲା । ସେହି ସମୟରେ ଯେଉଁ ଗୁରୁମାନେ ବିଭାଗରେ ଥିଲେ, ତନ୍ମଧ୍ୟରେ ପ୍ରାତଃସ୍ମରଣୀୟ ପ୍ରଫେସର୍ କୁଞ୍ଜବିହାରୀ ତ୍ରିପାଠୀ, ଡ. ବେଣୀମାଧବ ପାଢ଼ୀ, ଡ. ସୀତାରାମ ମହାପାତ୍ର ଓ ଡ. ସୁଦର୍ଶନ ଆଚାର୍ଯ୍ୟ ଅନ୍ୟତମ । ସେମାନଙ୍କ ମଧ୍ୟରୁ ଯଥାକ୍ରମେ ଡ. ତ୍ରିପାଠୀ, ଡ.ପାଢ଼ୀ ଓ ଡ.ମହାପାତ୍ର ଆମକୁ ଛାଡ଼ି ସ୍ୱର୍ଗଲୋକକୁ ଗମନ କଲେଣି । କିନ୍ତୁ ସେମାନଙ୍କ ଅଧ୍ୟାପନା, ଆନ୍ତରିକତା, ସ୍ନେହ ଓ ସଦିଚ୍ଛା ଆମ୍ଭମାନଙ୍କୁ ବିମୋହିତ କରି ଏବେ ମଧ୍ୟ ରଖିଛି । ଡ. ତ୍ରିପାଠୀ ମିଠା, ଆରିସା ଆଦି ଘରୁ ଆଣି ଆମ୍ଭମାନଙ୍କୁ ଖୁସିରେ ଦେଉଥିଲେ । ଶ୍ରେଣୀ କକ୍ଷରେ ଆମ୍ଭମାନଙ୍କର ପାଠ ଜନିତ ସନ୍ଦେହ ମୋଚନ ନିମନ୍ତେ ସମସ୍ତ ଗୁରୁ ସଦାସର୍ବଦା ଉଦ୍ୟମ ଜାରି ରଖିଥିଲେ । ରାସ୍ତାରେ ଛାତ୍ରଛାତ୍ରୀଙ୍କ ମେଳରେ ଡ. ଆଚାର୍ଯ୍ୟ ଚାଲି ଚାଲି ଗଲା ବେଳେ ମଧ୍ୟ ଆମ୍ଭମାନଙ୍କ ସହିତ ପାଠକଥା ହିଁ ଆଲୋଚନା କରୁଥିଲେ । ପ୍ରତି ସପ୍ତାହରେ ପରୀକ୍ଷା ହେଉଥିଲା । ଖାତା ଦେଖି ମାର୍କ ଦିଆଯାଉଥିଲା । ସେ ସବୁ ଏବେ ମଧ୍ୟ ମୋର ମନରେ ଜାଗ୍ରତ ହୋଇ ରହିଅଛି ।

ବନ୍ଧୁ ମେଳରେ ରହି ଆମ୍ଭେମାନେ ବିଭାଗର ସମସ୍ତ ପାଠଚକ୍ର ଆୟୋଜନ କରୁଥିଲୁ । ଆମ୍ଭର ପାଠଚକ୍ରକୁ ସେହି ସମୟରେ ଆଲୋଚକ ସୁରେନ୍ଦ୍ର ମହାନ୍ତି, କବି ରବି ସିଂ ଓ ରାଜକିଶୋର ରାୟ ପ୍ରଭୃତିଙ୍କୁ ଡକାଯାଉଥିଲା । ସେମାନଙ୍କ ଭାଷଣ ବାସ୍ତବରେ ମୋତେ ଗଭୀର ଭାବେ ଅନୁପ୍ରାଣିତ କରିଥିଲା ।

ସେହି ସମୟରେ ବିଶ୍ୱବିଦ୍ୟାଳୟର ପାଠାଗାର ଆଜିର କମାପଲ୍ଲୀ ଅଞ୍ଚଳରେ ରହିଥିଲା । ମୁଁ ପ୍ରତ୍ୟହ ସକାଳ ୮ ଘଣ୍ଟାରେ ପଢ଼ିବାକୁ ସେଠାକୁ ଆସି ରାତ୍ର ଆଠ ଘଣ୍ଟାରେ ଫେରୁଥିଲି । ମଝିରେ କେବଳ ଖାଇବାକୁ ଯାଇଥାଏ । ସେହି ସ୍ମୃତିଚିତ୍ର ଏବେ ବି ମୋର ଅଭୁଲା ହୋଇ ରହିଛି । ବାସ୍ତବରେ ଓଡ଼ିଆ ବିଭାଗର ପରିସରକୁ ମୁଁ ଏବେ ମଧ୍ୟ ବହୁ ସମୟରେ ରୋମନ୍ଥନ କରୁଅଛି । ଶ୍ରୀଜଗନ୍ନାଥଙ୍କ କୃପାରୁ ମୋର ବିଭାଗର ସମସ୍ତେ ମଙ୍ଗଳରେ ରୁହନ୍ତୁ ।

•

*ସର୍ବୋଦୟ ନଗର, ପୁରୀ-୨*

# ସ୍ମୃତି ତ ନୁହଁଇ କେବେ ଫିଙ୍ଗିବାର

ଡ. ମଧୁସୂଦନ ମହାପାତ୍ର

୧୯୭୯ ମସିହା ଜୁଲାଇ ମାସର କଥା । ମନରେ ବହୁତ ଉତ୍ସାହ ନେଇ ପହଞ୍ଚିଲି ଭଞ୍ଜବିହାରରେ । ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗର ଉପାଧ୍ୟୁତ୍ତର ଶ୍ରେଣୀରେ ନାମ ଲେଖାଇବା ନିମନ୍ତେ ଆବଶ୍ୟକ ପ୍ରମାଣପତ୍ର ଧରି ଆସିବା ପାଇଁ ଚିଠି ପାଇଥିଲି । ଜାତୀୟ ମେଧାବୃତ୍ତି ପାଇବାର ଅଭିଳାଷ ମନ ମଧ୍ୟରେ ଥାଏ । ମାତ୍ର କୋଡ଼ିଏ ବର୍ଷ ବୟସରେ ନିଃସଙ୍ଗ ଯାତ୍ରା । ଭଞ୍ଜନଗର ନିକଟବର୍ତ୍ତୀ ଏକ ନିପଟ ମଫସଲ ଗ୍ରାମ ଏବଂ ଭଞ୍ଜବିହାର – ମଝିରେ ଅନନ୍ତ ଆକାଶର ନୀଳିମା ।

ସେତେବେଳକୁ ଓଡ଼ିଆ ବିଭାଗରେ ଶିକ୍ଷକ ଥାଆନ୍ତି- ପ୍ରଫେସର୍ ଡ. ବେଣୀମାଧବ ପାଢ଼ୀ, ଡ. କାହ୍ନୁଚରଣ ମିଶ୍ର, ଡ. ଗଗନେନ୍ଦ୍ର ନାଥ ଦାଶ, ଡ. ଶ୍ରୀନିବାସ ମିଶ୍ର, ଡ. ସୀତାରାମ ମହାପାତ୍ର ଓ ଡ. ସୁଦର୍ଶନ ଆଚାର୍ଯ୍ୟଙ୍କ ଭଳି ସ୍ୱନାମଧନ୍ୟ ବ୍ୟକ୍ତିତ୍ୱ । ସେମାନଙ୍କ ପାଖରେ ପାଠ ପଢ଼ିଥିବାରୁ ନିଜକୁ ଧନ୍ୟ ମଣୁଛି । ଡ. ପାଢ଼ୀଙ୍କ ଭଞ୍ଜସାହିତ୍ୟ ଅଧ୍ୟାପନା, ଡ. କାହ୍ନୁଚରଣ ମିଶ୍ରଙ୍କ ପ୍ରାକ୍ ଭଞ୍ଜ ସାହିତ୍ୟରେ ଧୂରୀଣତା, ଡ. ଶ୍ରୀନିବାସ ମିଶ୍ର ଓ ଡ. ମହାପାତ୍ରଙ୍କ ଆଧୁନିକ ଓଡ଼ିଆ ସାହିତ୍ୟରେ ଦକ୍ଷତା, ଡ. ଦାଶଙ୍କ ଭାଷାତାତ୍ତ୍ୱିକ ବ୍ୟାଖ୍ୟା ଏବଂ ସର୍ବୋପରି ଡ. ଆଚାର୍ଯ୍ୟଙ୍କ ମଧ୍ୟଯୁଗୀୟ ସାହିତ୍ୟ ଆଲୋଚନା ଶୈଳୀ ଛାତ୍ରମାନଙ୍କର ମନକୁ ବେଶ୍ ଛୁଉଁଥାଏ । ପ୍ରଫେସରମାନେ ବ୍ୟକ୍ତିଗତ ଭାବେ ପ୍ରତି ପିଲାଙ୍କୁ ଜାଣୁଥିଲେ । ସେମାନଙ୍କର ପଢ଼ାପଢ଼ି ଏବଂ ଅନ୍ୟାନ୍ୟ ଭଲମନ୍ଦ କଥା ବୁଝୁଥିଲେ । ବିଶେଷକରି ଡ. କାହ୍ନୁଚରଣ ମିଶ୍ର 'ରହସ୍ୟମଞ୍ଜରୀ' ଓ 'ରାମବିଭା' ପଢ଼ାଇବା ସମୟର ଭାବାବେଗ ଆମକୁ ଯେପରି ମୁଗ୍ଧ କରୁଥିଲା, କାଳିଦାସଙ୍କ 'ମେଘଦୂତମ୍' ଖଣ୍ଡକାବ୍ୟ, ଚମ୍ପୂକାବ୍ୟ, ପ୍ରାଚ୍ୟ କାବ୍ୟତତ୍ତ୍ୱ ବିଚାରର ଚମତ୍କାରିତାରୁ ପ୍ରଫେସର୍ ଆଚାର୍ଯ୍ୟଙ୍କ ବିଦ୍ୱତ୍ତା ଏବଂ ପ୍ରଫେସର୍ ଦାଶଙ୍କ ଭାଷାତାତ୍ତ୍ୱିକ ବିଶ୍ଳେଷଣର ଗଭୀରତା ଆମକୁ ସେହି ସେହି ଶ୍ରେଣୀଗୁଡ଼ିକରେ ଉପସ୍ଥିତ ରହିବାକୁ ଆମୋଦିତ କରୁଥିଲା ।

ବର୍ତ୍ତମାନ ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗର ପ୍ରଫେସର୍ ଡ. ଦେବୀପ୍ରସନ୍ନ ପଟ୍ଟନାୟକ ବିଭାଗୀୟ ପାଠଚକ୍ରର ସମ୍ପାଦକ ମନୋନୀତ ହୋଇଥା'ନ୍ତି । ତାଙ୍କ ଉଦ୍ୟମରୁ ୧୯୮୦ ମସିହାରେ ଅନେକ ପାଠଚକ୍ର ଆୟୋଜିତ ହୋଇଥିଲା । ଶାନ୍ତିନିକେତନରୁ ପ୍ରଫେସର୍ ଡ. ଖଗେଶ୍ୱର ମହାପାତ୍ର, ଭାଷାବିତ୍ ପ୍ରଫେସର୍ ଦେବୀପ୍ରସନ୍ନ ପଟ୍ଟନାୟକ,

ସମ୍ବଲପୁରରୁ ଡ. ବୃନ୍ଦାବନଚନ୍ଦ୍ର ଆଚାର୍ଯ୍ୟଙ୍କୁ ବିଭିନ୍ନ ସମୟରେ ସାଧନ ବ୍ୟକ୍ତି ରୂପେ ନିମନ୍ତ୍ରଣ କରାଯାଉଥିଲା । ସମୟକ୍ରମେ ବିଭାଗର ଏକ ପ୍ରାଚୀରପତ୍ର 'ଯୁଗରୁଚି' ର ପ୍ରକାଶନ ନିମନ୍ତେ ନିଷ୍ପତ୍ତି ନିଆଗଲା । ଏହା ମୋ ଭଳି ଅନେକଙ୍କୁ ଲେଖିବା ନିମନ୍ତେ ପ୍ରେରଣା ଯୋଗାଇଥିଲା । 'ତ୍ରିଶକ୍ତି' ଛଦ୍ମ ନାମରେ ସର୍ବଶ୍ରୀ ଚନ୍ଦ୍ରଶେଖର ଦାଶ, ଜଗନ୍ନାଥ ପାତ୍ର ଏବଂ ମୁଁ ଲେଖାଗୁଡ଼ିକୁ ସମୀକ୍ଷା କରି ପରବର୍ତ୍ତୀ ସଂସ୍କରଣରେ 'ତୃତୀୟ ନୟନ' ନାମରେ ସ୍ଥାନିତ କରୁଥିଲୁ । ଫଳରେ ଯୁବପିଢ଼ିର କବି ଓ ଲେଖକମାନେ ସେମାନଙ୍କର ଲେଖାକୁ ଅଧିକ ମାର୍ଜିତ କରିବା ପାଇଁ ଚେଷ୍ଟା କରୁଥିଲେ । ଆନନ୍ଦର କଥା, ସେଦିନର ସେହି 'ଯୁଗରୁଚି' ଆଜି ପର୍ଯ୍ୟନ୍ତ ବିଭାଗର ଶୋଭାମଣ୍ଡନ କରି ନୂତନ ସ୍ରଷ୍ଟାମାନଙ୍କୁ ଗଢ଼ି ତୋଳିବାରେ ପ୍ରମୁଖ ଭୂମିକା ଗ୍ରହଣ କରିଆସୁଛି ।

ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ମୋ ପାଇଁ ତୀର୍ଥକ୍ଷେତ୍ର ଏବଂ ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ ମୋ ପାଇଁ କଳ୍ପବଟ । ଏହି ବିଭାଗ ମୋର ଏକ ପରିଚିତି ସୃଷ୍ଟି କରିବାରେ ସହାୟକ ହୋଇଅଛି । ଅଧ୍ୟାପକରୁ ପ୍ରାଧ୍ୟାପକ ଓ ପରେ ଅଧ୍ୟକ୍ଷ ହିସାବରେ ମୋର ଚାକିରି ଜୀବନ ଅତିବାହିତ ହୋଇଅଛି । ପିଏଚ୍.ଡି. ଉପାଧି ପ୍ରାପ୍ତି ନିମନ୍ତେ ତିନି ଜଣ ଗବେଷକଙ୍କ ମାର୍ଗଦର୍ଶକ ହୋଇଅଛି । ପ୍ରଫେସର୍ ଆଚାର୍ଯ୍ୟଙ୍କ ତତ୍ତ୍ୱାବଧାନରେ ଏମ୍.ଫିଲ୍. କରିଅଛି । ଚାରିଗୋଟି ଦୁର୍ଲ୍ଲଭ ପୁସ୍ତକ ଏବଂ ଶତାଧିକ ଗବେଷଣାଧର୍ମୀ ଲେଖା ଓଡ଼ିଶାର ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ହୋଇପାରିଛି । ଭଞ୍ଜବିହାର ଅଧ୍ୟୟନ କାଳର ପଠନସ୍ପୃହା, ପ୍ରତିଯୋଗିତା ମନୋବୃତ୍ତି, ପାଠ୍ୟବିଷୟ ଆଲୋଚନାରେ ପାରସ୍ପରିକ ଭାବର ଆଦାନ ପ୍ରଦାନ ଯୋଗୁଁ ବାସ୍ତବିକ ମୋତେ ଆଜି ଏହି ସଫଳତା ମିଳିଛି କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହି ବିଭାଗର ଉତ୍ତରୋତ୍ତର ଉନ୍ନତି ମୁଁ କାମନା କରୁଛି ।

●

*ଅଧ୍ୟକ୍ଷ, ମାଲକାନାଗିରି କଲେଜ,*
*ମାଲକାନାଗିରି*

# କିଛି କଥା, କିଛି ବ୍ୟଥା ମୋ ଭଞ୍ଜବିହାରର

ଶ୍ରୀ ଦୀନବନ୍ଧୁ ମହାନ୍ତି

କେତେ ଶୀଘ୍ର ସରିଯାଏ ଦିନ ଯୌବନର ଚଞ୍ଚଳ ପାଦରେ ଶୀତ ଦିନ ପରି । ଜୀବନ ଜଞ୍ଜାଳ ଭିତରେ ମନେ ପଡ଼େ ମୋର ପାଠପଢ଼ା ଭଞ୍ଜବିହାରର କଥା । ଠିକ୍ ୩୦ବର୍ଷ ତଳେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟକୁ ଓଡ଼ିଆ ଭାଷା-ସାହିତ୍ୟ ବିଭାଗରେ ଅଧ୍ୟୟନ କରିବାକୁ ଯାଇଥିଲି । ଗଲାବେଳେ ବୋଉର ଲୁହାଭରା ଆଖି ଏବେ ବି ମୋ ମାନସପଟରେ ନାଚି ଉଠୁଛି । ଭଲ ପାଠ ପଢ଼ି ମଣିଷ ହେବୁ ଆମ ସ୍ୱପ୍ନକୁ ସାକାର କରିବୁ, ଏ ଦୁଇ ପଦ କଥା ମୋ କର୍ଣ୍ଣକୁ ପ୍ରତିଧ୍ୱନିତ କରୁଛି । ଭଞ୍ଜବିହାରରେ ଦୁଇ ବର୍ଷ ପାଇଁ ଘରଟିଏ ତୋଳିଲି । ସେଠି ଅନେକ ପାଇଛି ଅନେକ ହଜେଇଛି । ଏମିତି ହଜାହଜିର ଖେଳ ଭିତରେ କେମିତି ଦୁଇ ବର୍ଷ କଟିଗଲା, ମୁଁ ଜାଣି ପାରିଲି ନାହିଁ ।

ଦିନକର ଘଟଣା । ଏବେ ବି ମୋର ସ୍ପଷ୍ଟ ମନେ ଅଛି । ପୂର୍ଣ୍ଣମୀ ରାତି ଜହ୍ନର କିରଣରେ ବୁଡ଼ି ଯାଇଥାଏ ପୃଥିବୀ ସେ ଦିନ । ଖାଇବା ପାଇଁ ମୋ ପାଖରେ ପଇସା ନଥାଏ, ବଂଶଧାରା ଛାତ୍ରାବାସରେ ଗୋଟିଏ ରାତି ଉପବାସରେ କଟାଇଲି । ସକାଳୁ ଘରକୁ ଖବର ଦେଲି । ମୁଁ ଖାଇ ନଥିବା ଖବର ଜାଣି ବୋଉ କେତେ ବିକଳ ହୋଇ କାନ୍ଦିଥିଲା । ତା ମାତୃତ୍ୱ ବିଳପି ଉଠିଥିଲା । ଅଭାବବୋଧର ବୁଢ଼ିଆଣୀ ଜାଲ ଭିତରେ ଛନ୍ଦି ହୋଇ ଯାଇଥାଏ ଆମ ପରିବାର । ବୋଉ ମୋର ତାର କାନଫୁଲକୁ ବନ୍ଧକ ଦେଇ ମୋ ପାଖକୁ ଟଙ୍କା ପଠାଇଲା । ହେଲେ ତାଙ୍କ ସ୍ୱପ୍ନ ସାକାର ହେଲା ସତ; କିନ୍ତୁ ମୋ ସ୍ୱପ୍ନ ଅଧୁରା ରହିଗଲା । ୨୦୧୭ରେ ମୋ ବାପା ବୋଉ ହାତ ଧରା ଧରି ହୋଇ ମୋତେ ଏକା କରି ଚାଲିଗଲେ ଆରପାରିକୁ । ତାଙ୍କ ତ୍ୟାଗ ଓ ଭଲ ପାଇବା ମନେ ପଡ଼ିଗଲେ ମୋ ହୃଦୟର କାଚ କାନ୍ଥଟା ଟୁକୁରା ଟୁକୁରା ହୋଇ ଭାଙ୍ଗିଯାଏ । ମନଟା ଗୁମୁରି ଗୁମୁରି କାନ୍ଦେ । ସ୍ମୃତିର ଜ୍ୟାମିତିକ ଭିତରେ ଭାବନାଙ୍କ କ୍ଷତ ଚିହ୍ନ ସୃଷ୍ଟି କରେ । ମନକୁ ବୁଝାଏ, ବଞ୍ଚିବାକୁ ହେଲେ ଦୁଃଖକୁ ସ୍ୱୀକାର କରିବାକୁ ପଡ଼ିବ ।

ସ୍ମୃତି ହିଁ ଅତୀତକୁ ମନେ ପକାଇ ଦିଏ । ସ୍ମୃତିକୁ ଜାବୁଡ଼ି ଧରି ଦୁଇ ବର୍ଷ ଭଞ୍ଜବିହାରରେ କଟାଇଲି । ହେଲେ ଭଲ ହୃଦୟଟେ ଖୋଜି ପାଇଲିନି । ବାସ୍ତବିକ ସଂସାର ପଥରେ ଚାଲିବାର କୌଶଳକୁ ନେଇ ନାଟକ 'ଏଇତ ଦୁନିଆ' ଏବଂ 'ଗୌତମ' ପୁଣି ଜନ୍ମ ନେଲେ । ନାଟକରେ ନାୟକ ଭୂମିକାରେ ଅଭିନୟ କରି ଶ୍ରେଷ୍ଠ ଅଭିନେତା ଭାବରେ ପୁରସ୍କୃତ ହେଲି । ନାଟକ, କବିତା ଏବଂ ଗୀତ ଗାଇବାରେ ମୋର ସଉକ ଥିଲା । ଅଭିନୟ ଏବଂ ଖେଳ ମୋର ଜୀବନ ଥିଲା । ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ତରଫରୁ

୩ବର୍ଷ ଭାଗଲପୁର, ବିଳାସପୁର, ରାଞ୍ଚିରେ ଭଲିବଲ୍‌ରେ ଖେଳିବାର ସୁଯୋଗ ପାଇଥିଲି । ବିଶ୍ୱବିଦ୍ୟାଳୟର ଜାତୀୟ ସେବା ଯୋଜନା ତରଫରୁ ଜାତୀୟ ସଂହତି ଶିବିରରେ ଯୋଗ ଦେଇଥିଲି । ମୋ ପରିକଳ୍ପିତ କୋଣାର୍କକୁ ଗଢ଼ି ତୋଳିବା ପାଇଁ ଯେଉଁମାନଙ୍କ ଅବଦାନ ରହିଛି, ସେମାନେ ହେଲେ ମୋର ପୂଜ୍ୟ ଗୁରୁ ପ୍ରଫେସର୍ ସୁଦର୍ଶନ ଆଚାର୍ଯ୍ୟ, ପ୍ରଫେସର୍ ଦାଶରଥି ଦାସ, ପ୍ରଫେସର୍ ଅଶ୍ୱିନୀ କୁମାର ପଣ୍ଡା, ପ୍ରଫେସର୍ ଡ. ଦେବୀପ୍ରସନ୍ନ ପଟ୍ଟନାୟକ । ତାଙ୍କର ନିଷ୍ଠା, ତ୍ୟାଗ, ଧୈର୍ଯ୍ୟ, ସାଧନା, ବ୍ୟକ୍ତିତ୍ୱ, ନମ୍ରତା ଭଲ ମଣିଷଟିଏ ହେବା ପାଇଁ ବାଟ ଦେଖାଇଥିଲା । ଅଶ୍ୱିନୀ ସାର୍‌ଙ୍କ ସେଇ ଦୁଇ ପଦ କଥା ଏବେ ବି ମୋର ମାନେ ଅଛି । ଦୀନା ଦରିଦ୍ର, ଅଭାବୀଙ୍କ ସେବା କରିବୁ, ସାହିତ୍ୟ, ସଂସ୍କୃତି ଓ ଶିକ୍ଷାର ଗୌରବ ବଢ଼ାଇବୁ । ସେମାନଙ୍କ ଆଞ୍ଜୁଳାଏ ଭଲ ପାଇବା ଓ ଆଶୀର୍ବାଦରେ ମୁଁ ଅଧ୍ୟାପକ ହୋଇ ପାରିଲି ଓ ଜାତୀୟ ସେବା ଯୋଜନାରେ ଦୀର୍ଘ ୨୫ ବର୍ଷ ପ୍ରୋଗ୍ରାମ୍ ଅଫିସର୍ ରହି ଲୋକମାନଙ୍କର ସେବା କରିବାକୁ ସୁଯୋଗ ପାଇଲି । ଓଡ଼ିଶା ସରକାରଙ୍କ ଠାରୁ ଶ୍ରେଷ୍ଠ ଜାତୀୟ ସେବା ପୁରସ୍କାର ପାଇଲି ।

ଆଜି ଜୀବନର ଅପରାହ୍ଣରେ ଉପନୀତ । ସେଦିନ ଥିଲା କଢ଼ ଧରି ଫୁଲ ଫୁଟିବାର ବୟସ । କେତେ ସ୍ୱପ୍ନ କେତେ କଳ୍ପନା ଶୂନ୍ୟରେ ସୌଧ ନିର୍ମାଣ କରିବାର ଅଭୀପ୍ସା, ତୁଚ୍ଛା କୁହୁଡ଼ିରେ ପହଁରିବାର ନିଶା ମୋତେ ମତୁଆଲା କରୁଥିଲା ।

ଆଜି ମୁଁ ବୁଝୁଛି ଯୌବନକୁ ନେଇ ଆଣ୍ଟ କରିବା ଉଚିତ ନୁହେଁ । ଭଞ୍ଜବିହାର ସହିତ ଘନିଷ୍ଠତା ମୋର ଅତି ନିବିଡ଼ କାହିଁକି ନା ଦୀର୍ଘ ୩୦ବର୍ଷ ତଳୁ ସେଠୁ ମୋର ଅଧ୍ୟୟନ ସରିଥିଲେ ବି ଆଜି ସାର୍‌ମାନଙ୍କ ଭଲ ପାଇବା ଅତୁଟ ରହିଛି । ଓଡ଼ିଆ ବିଭାଗର ପ୍ରଫେସର୍ ଡ. ପ୍ରସନ୍ନ କୁମାର ସ୍ୱାଇଁ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଜାତୀୟ ସେବା ଯୋଜନାରେ ସଂଯୋଜକ ଥିବା ବେଳେ ମୁଁ କନ୍ଧମାଳ ଜିଲ୍ଲା ଜାତୀୟ ସେବା ଯୋଜନା ଅଧିକାରୀ । ସତେ ଯେମିତି ମରୁଭୂମିରେ ମରୁ ନଦୀର ସନ୍ଧାନ ପାଇଗଲା ପରି ସ୍ୱାଇଁ ସାର୍‌ଙ୍କୁ ପାଇଥିଲି । ସେ ଆଉ ମୁଁ ଗୋଟିଏ ବୃନ୍ତର ଦୁଇଟି କଳିକା ଭଳି କାମ କରିଥିଲୁ । ସାର୍‌ଙ୍କ ମୁଠାଏ ସ୍ନେହ, ଆଞ୍ଜୁଳାଏ ମମତା ହୃଦୟ ପଠାରେ ସାଇତା ହୋଇ ରହିଛି । ମୋ ହୃଦୟର ପ୍ରତିଟି ସ୍ପନ୍ଦନରେ ସ୍ପନ୍ଦିତ ହେଉଛି ମୋ ଭଞ୍ଜବିହାର ଓଡ଼ିଆ ଭାଷା-ସାହିତ୍ୟ ବିଭାଗର ଗାଥା । ସେ ଅଲିଭା କଥା କେବେ ସରିନି କି ସରିବନି ।

ମନ ଏକ ସ୍ମୃତି ବୋଝେଇ ବୋଇତ । ସମୟର ସମୁଦ୍ରରେ ଚହଲିବା ତା'ର ଧର୍ମ । ବିତି ଯାଇଥିବା ଦୀର୍ଘ ଦୁଇ ବର୍ଷର ସ୍ମୃତି ମୋ ହୃଦୟର ବେଳାଭୂମିରେ ସାଇତା ହୋଇ ରହିଛି, ଆଉ କିଛି ସ୍ମୃତି ବାରମ୍ବାର ଉଠୁଥିବା ଢେଉରେ ସତେଜ ହୋଇଯାଉଛି ।

•

*ଅଧ୍ୟାପକ, ଓଡ଼ିଆ ବିଭାଗ,*

*ଟିକାବାଲି କଲେଜ, କନ୍ଧମାଳ*

# ପାଞ୍ଚ ଦଶନ୍ଧିର ଅନ୍ତରାଳେ

ଡ. ପ୍ରକାଶଚନ୍ଦ୍ର ପାଣିଗ୍ରାହୀ

କାଳର କରାଳ ଗତି ମଧ୍ୟରେ ଚାହୁଁ ଚାହୁଁ ବିତିଯାଇଛି ପଚାଶ ବର୍ଷ । ପାଠପଢ଼ା ପ୍ରାରମ୍ଭର ଅବଧି ଓ ଅଧ୍ୟାପନାର ବ୍ୟବଧାନ ମଧ୍ୟରେ ପାଞ୍ଚ ଦଶନ୍ଧି ଅର୍ଥାତ୍ 'ଅର୍ଦ୍ଧଶତାବ୍ଦୀ' ଇତିହାସ ସ୍ୱରୂପ ଜୀବନର ଏକ ସାମୟିକ ସ୍ମୃତି ମାତ୍ର । ଠିକ୍ କାଲି ଭଳି ଲାଗୁଛି, ଯେତେବେଳେ ଆମେ ଧନନ୍ତର ଗ୍ରାମ ଚାଟଶାଳୀରେ ନାମ ଲେଖାଇଥାଉ । ଆମର ପୂଜ୍ୟଗୁରୁ ଚୈତନ୍ୟ ପଟ୍ଟନାୟକ, ୰ ପ୍ରଧାନ ସାର୍, ଗୋବର୍ଦ୍ଧନ ଦାସ ଓ ମୋଚିରାମ ଦାସ ସାର୍‌ଙ୍କ ବେତବାଡ଼ି ପ୍ରତ୍ୟେକ କ୍ଷେତ୍ରରେ ଉତ୍ସାହ, ଉଦ୍ଦୀପନା ଏବଂ ଭବିଷ୍ୟତରେ ମଣିଷ ପରି ମଣିଷ ହେବାର ଯେଉଁ ସ୍ୱପ୍ନ ଦେଖାଇଥିଲେ, ଆଜି ତାହା ମୋର ପିତାମାତାଙ୍କ ସୁକୃତିରୁ ସାକାର ହୋଇପାରିଛି । ସେତେବେଳର ସ୍ନେହ, ଆଦର ଓ ତାଗିଦ୍ ଆଜି ଆଉ ନାହିଁ କହିଲେ ଚଳେ । ପ୍ରାଥମିକରୁ ମଧ୍ୟ ଇଂରାଜୀ ଓ ପରେ ମାଧ୍ୟମିକ ଅର୍ଥାତ୍ ଏକାଦଶ ବା ମାଟ୍ରିକ୍ ନିକଟସ୍ଥ ହରୁପଡ଼ାସ୍ଥ ଭାଗବତୀ ବିଦ୍ୟାପୀଠ ଠାରେ ସମାପ୍ତି ହୋଇଥିଲା । ଆଜିର ଏଇ ଅବସରରେ ସେତେବେଳର ଶିକ୍ଷକଙ୍କ ଅବଦାନ ମଧ୍ୟ ଅତୁଳନୀୟ ଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ । ପରବର୍ତ୍ତୀ ଅଧ୍ୟୟନ ୧୯୭୯ ଶତାବ୍ଦୀ ଠାରୁ ୮୩ ପର୍ଯ୍ୟନ୍ତ ଖଲ୍ଲିକୋଟ କଲେଜିଏଟ୍ ଟ୍ରଷ୍ଟ ଅଧୀନରେ ରହିଥିବା ହିଞ୍ଜିଳିକାଟୁସ୍ଥ ବିଜ୍ଞାନ ମହାବିଦ୍ୟାଳୟରେ ନାମ ଲେଖାଇଥିଲି । ସେତେବେଳର ପୂର୍ବ ସ୍ନାତକ ତଥା ଆଇ.ଏ. ପାସ୍ ପରେ ଆମେ ମାତ୍ର ଚାରି ଜଣ ଡ. ସୁଚିତ୍ରା ମିଶ୍ର (ବର୍ତ୍ତମାନ ପ୍ରାଧ୍ୟାପିକା, ବିକ୍ରମଦେବ ମହାବିଦ୍ୟାଳୟ, ଜୟପୁର) ଶାରଦା ଦାସ ଓ ସୀମାଞ୍ଚଳ ପଣ୍ଡା ଯୋଗଦାନ କରିଥିଲୁ । ତତ୍ ସହିତ ଓଡ଼ିଆ ବିଭାଗର ପାସ୍ ଅର୍ଥାତ୍ ସାଧାରଣ ଓଡ଼ିଆ ନେଇ ଆଉ ୧୨ଜଣ ଆମ ବିଭାଗରେ ଯୋଗଦାନ କରିଥା'ନ୍ତି । ସେ ସମୟରେ ଆମ ବିଭାଗରେ ମାତ୍ର ଚାରି ଜଣ ଅଧ୍ୟାପକ ଅର୍ଥାତ୍ ବିଭାଗ ମୁଖ୍ୟ ଭାବେ ଧ୍ରୁନ୍ ଖୁଣ୍ଟିଆ, ୰ରାମନାରାୟଣ ସାହୁ, ନିହାର ପଟ୍ଟନାୟକ ଏବଂ ଶେଷରେ ନରସିଂହ ଦାୟିନୀ ଯୋଗଦାନ କରିଥା'ନ୍ତି । ଅନ୍ୟ ବିଭାଗ ସାର୍‌ମାନଙ୍କ ସହିତ ଆମର ଘନିଷ୍ଠ ସମ୍ପର୍କ ଥିଲା । ସେହି ଠାରୁ ହିଁ ଭବିଷ୍ୟତ ତଥା ଚାକିରି ବା ବୃତ୍ତିଗତ ଜୀବନର ଅନେକ ସୂତ୍ର ପାଇଥିଲି । ଆଜି ମୁଁ ଅଧ୍ୟାପନାର ୩୨ବର୍ଷ ଅତିକ୍ରମ କରିଥିଲେ ମଧ୍ୟ ସେ ସମୟ ଶ୍ରେଣୀକକ୍ଷର ପାଠଦାନ ବେଳେ ଆଧୁନିକ କବିତା ପାଇଁ ଧ୍ରୁନ୍ ଖୁଣ୍ଟିଆ, ପ୍ରାଚୀନ ଓ ମଧ୍ୟ ଯୁଗୀୟ କବିତା ଓ ଗଦ୍ୟ ସାହିତ୍ୟ ପାଇଁ ୰ରାମନାରାୟଣ ସାହୁ (ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ, ଓଡ଼ିଆ ବିଭାଗ ପ୍ରଥମ ବ୍ୟାଚ୍ ଛାତ୍ର), ନିହାର ପଟ୍ଟନାୟକ ଆଧୁନିକ ଗଦ୍ୟ କବିତା ପଢ଼ାଇବା ସହ ସମ୍ମାନ ପ୍ରଯୋଜନା ସକାଶେ ଗୁରୁତ୍ୱପୂର୍ଣ୍ଣ ଭୂମିକା ନିର୍ବାହ କରୁଥା'ନ୍ତି । ଆଜି ଆମେ ସେହି ସମୟର ଅନୁଭୂତିଗୁଡ଼ିକୁ ହିଁ ବିଦ୍ୟାର୍ଥୀମାନଙ୍କୁ ବାଣ୍ଟି ଚାଲିଛୁ । ମହାବିଦ୍ୟାଳୟ ଜୀବନର ପରିସମାପ୍ତି

ପରେ ୧୯୮୩-୮୪ ମସିହାରେ ଯୋଗଦାନ କରିଥିଲି ଭଞ୍ଜବିହାର ଓଡ଼ିଆ ବିଭାଗରେ । ସେତେବେଳେ ଆମ ବିଭାଗ ମୁଖ୍ୟ ଭାବେ ଦାୟିତ୍ୱ ନିର୍ବାହ କରୁଥା'ନ୍ତି ଡ. ଶ୍ରୀନିବାସ ମିଶ୍ର । ତତ୍‌ସହିତ ଡ. ସୁଦର୍ଶନ ଆଚାର୍ଯ୍ୟ, ଡ.ସୀତାରାମ ମହାପାତ୍ର, ଡ.ଅଶ୍ୱିନୀ କୁମାର ପଣ୍ଡା, ଡ. ଦେବୀପ୍ରସନ୍ନ ପଟ୍ଟନାୟକ ଓ ଡ. ପୂର୍ଣ୍ଣଚନ୍ଦ୍ର ମିଶ୍ର ଅଧ୍ୟାପକ ଭାବେ ଶିକ୍ଷାଦାନ କରୁଥା'ନ୍ତି ।

ଭାଷା ବିଭାଗର ଅଧ୍ୟାପକ ଭାବେ ପ୍ରଫେସର୍ ଗଗନେନ୍ଦ୍ରନାଥ ଦାଶ ଅତିଥି ଅଧ୍ୟାପକ ଭାବେ ଓ ପ୍ର. ଡ. ବେଣୀମାଧବ ପାଢ଼ୀ ବିଭିନ୍ନ ସମୟରେ ପାଠଦାନ କରୁଥା'ନ୍ତି । ଯଦିଓ ଡ.କାହ୍ନୁଚରଣ ମିଶ୍ର ତତ୍କାଳୀନ ସମୟରେ ବିଭାଗ ମୁଖ୍ୟ ପଦବୀରୁ ଅବସର ନେଇଥା'ନ୍ତି; ତଥାପି ବିଦ୍ୟାର୍ଥୀମାନଙ୍କ ସ୍ନେହ ଓ ସହାନୁଭୂତିର ଆକର୍ଷଣରେ ମଝିରେ ମଝିରେ ପାଠଦାନ କରୁଥିବାର ସ୍ମୃତି ଆଜି ବି ମନେ ପଡ଼େ । ଆଚାର୍ଯ୍ୟ ସାର୍‌ଙ୍କ ସଂସ୍କୃତ କାବ୍ୟର ତର୍ଜମା ତଥା ବୌଦ୍ଧିକ ଅବତାରଣା ପ୍ରତି ସମୟରେ ଆମକୁ ପାଠ ପ୍ରତି ରହିଥିବା ମୋହକୁ ଦ୍ୱିଗୁଣିତ କରିଦେଉଥାଏ । ସେହିପରି ଗଗନେନ୍ଦ୍ରନାଥ ଦାଶ ଓ ସୀତାରାମ ମହାପାତ୍ରଙ୍କ ଭାଷା ଓ ଆଧୁନିକ ଗଦ୍ୟର ସମୀକ୍ଷା ସାହିତ୍ୟର ପ୍ରତ୍ୟେକ ସୋପାନ ପ୍ରତି ଆକୃଷ୍ଟ ହେବାର ସ୍ପୃହା ଜାଗ୍ରତ କରାଉଥିଲା । କାଲି ଭଳି ମନେ ହୁଏ, ବିଭାଗ ମୁଖ୍ୟ ଡ. ଶ୍ରୀନିବାସ ମିଶ୍ର ଆଧୁନିକ ଗଦ୍ୟ ସାହିତ୍ୟର ବିଶ୍ଳେଷଣ ମାଧ୍ୟମରେ ବିଦ୍ୟାର୍ଥୀମାନଙ୍କୁ ବାନ୍ଧି ରଖିବାର ସୂତ୍ର ବୋଧହୁଏ ଜାଣିପାରିଥିଲେ । ସେହିପରି ଡ. ଅଶ୍ୱିନୀ କୁମାର ପଣ୍ଡାଙ୍କ ଏକାଙ୍କିକା (ନାଟକ) ର ପାଠଦାନ ବିଶ୍ଳେଷଣ, 'ଉଡ଼ନ୍ତା ପାହାଡ଼ର ଦର୍ଜା' ଆମକୁ ଏକ ଏପରି ସ୍ଥାନକୁ ନେଇ ଯାଉଥିଲା, ଯାହା ରାମାୟଣରେ ବର୍ଣ୍ଣିତ 'ପୁଷ୍ପକ ଯାନ'ର ସ୍ମୃତିଗୁଡ଼ିକ ସାଉଁଟି ଥିବାର ଏବେବି ମନେ ପଡ଼େ । ଡ. ପୂର୍ଣ୍ଣଚନ୍ଦ୍ର ମିଶ୍ରଙ୍କ ଓଡ଼ିଆ ସାହିତ୍ୟର ଇତିହାସ ଓ ଡ. ଦେବୀପ୍ରସନ୍ନ ପଟ୍ଟନାୟକଙ୍କ ଅତ୍ୟାଧୁନିକ କବିତାଗୁଡ଼ିକର ଶୈକ୍ଷିକ ବିଶ୍ଳେଷଣ ଅତି ଗାମ୍ଭୀର୍ଯ୍ୟପୂର୍ଣ୍ଣ ତଥା ଚମତ୍କାର ଅବତାରଣା ସମସ୍ତ ଶ୍ରୋତା ବିଦ୍ୟାର୍ଥୀଙ୍କୁ ଏକ ନୂଆ ପୃଥିବୀରେ ବସବାସ କଲା ପରି ମନେ ହେଉଥିଲା । କାର୍ଯ୍ୟାଳୟ ସହାୟକ ଅରୁଣ ରାଉତ ଭାଇନାଙ୍କ ବ୍ୟବହାର ତଥା ବିଭାଗ ପାଠାଗାରରୁ ପୁସ୍ତକ ପ୍ରଦାନ ସମୟର ଅକୁଣ୍ଠିତ ସହଯୋଗ ଏବେ ବି ସ୍ମୃତିର ଏକ ଖୁଅ ହୋଇ ରହିଛି । ବର୍ତ୍ତମାନର ବିଭାଗ ମୁଖ୍ୟ ଡ. ପ୍ରସନ୍ନ କୁମାର ସ୍ୱାଇଁଙ୍କ ବନ୍ଧୁତ୍ୱପୂର୍ଣ୍ଣ ବ୍ୟବହାର, ଅକୁଣ୍ଠ ସହଯୋଗ ବିଶ୍ୱବିଦ୍ୟାଳୟ ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ । ତାଙ୍କ ଦ୍ୱାରା ପ୍ରାୟୋଜିତ ବିଭାଗର ସୁବର୍ଣ୍ଣ ଜୟନ୍ତୀ ଅବସରରେ ବିବିଧ କାର୍ଯ୍ୟକ୍ରମ ମଧ୍ୟ ଲିପିବଦ୍ଧ ହୋଇ ରହିବ । ଡ. ସଦାନନ୍ଦ ନାୟକଙ୍କ ସ୍ନେହ ଓ ସୌହାର୍ଦ୍ଦ୍ୟ ଏବଂ ଅନ୍ୟତମ ଅନୁଜ ପ୍ରତିମ ଡ. ସମୀର ଭୋଇ ଓ ଡ. ଦେବୀ ଶତପଥୀଙ୍କ ଛାତ୍ର ସୁଲଭ ଉକ୍ତି ଆମ ବିଶ୍ୱବିଦ୍ୟାଳୟରେ ଓଡ଼ିଆ ବିଭାଗକୁ ସୁବର୍ଣ୍ଣ ଜୟନ୍ତୀ ଉପରାନ୍ତ ଏକ ନିର୍ଦ୍ଦିଷ୍ଟ ରୂପରେଖ ଦେବ । ଏଥିରେ ତିଳେ ମାତ୍ର ସନ୍ଦେହ ନାହିଁ ।

•

*ବିଭାଗମୁଖ୍ୟ, ଓଡ଼ିଆ ବିଭାଗ*

*ରାମଚନ୍ଦ୍ର ମର୍ଦ୍ଦରାଜ କଲେଜ, ଖଲ୍ଲିକୋଟ*

# ମୋ ଜୀବନ ମାର୍ଗ ଭଞ୍ଜବିହାର

**ଶ୍ରୀ ବସନ୍ତ କୁମାର ସେଠୀ**

ମୁଁ ମୋ ଛାତ୍ରଜୀବନର ଶେଷ ପାହାଚରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗରେ ଯେତେବେଳେ ପଦାର୍ପଣ କରେ, ସେଦିଦିନ ଠାରୁ ମୋ ଜୀବନର ମୋଡ଼ ଅନ୍ୟ ଦିଗକୁ ଗତି କରେ । ମା' ଓ ନିଜ ଭୂମିକୁ ଛାଡ଼ି ମୁଁ ଆଜି ମାତୃଭାଷାର ସେବା କରିବାରେ ଯେଉଁ ପ୍ରୟାସ ରଖିଛି, ସେଥିରେ ଭଞ୍ଜବିହାରର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ।

୧୯୬୮ ମସିହାରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ସ୍ନାତକୋତ୍ତର ଭାଷା ଓ ସାହିତ୍ୟ ବିଭାଗ ପ୍ରତିଷ୍ଠା ହୋଇଥିଲା । ସେହିବର୍ଷ ବିଭାଗ ମୁଖ୍ୟ ଦାୟିତ୍ୱରେ ଥା'ନ୍ତି ଡ. କୁଞ୍ଜବିହାରୀ ତ୍ରିପାଠୀ । ଆମ ବିଭାଗର ନିଜସ୍ୱ ପାଠଚକ୍ର କୋଠରୀ, ପାଠାଗାର ଓ ପୋଥିଭଣ୍ଡାର ରହିଛି । ଏହି ଭଣ୍ଡାର ମଧ୍ୟରେ ସାରଳା ଦାସଙ୍କ 'ମହାଭାରତ', ଜଗନ୍ନାଥ ଦାସଙ୍କ 'ଭାଗବତ'ଠାରୁ ଆରମ୍ଭ କରି ଉପେନ୍ଦ୍ର ଭଞ୍ଜଙ୍କର ପୋଥିଗୁଡ଼ିକ ସଂରକ୍ଷିତ ହୋଇରହିଛି । ଏହି ପୋଥିଗୁଡ଼ିକ ସଂଗ୍ରହ କରି ସଂରକ୍ଷିତ କରିବା କେତେ କଷ୍ଟସାଧ୍ୟ, ତାହା ଅଙ୍ଗେ ନିଭାଇଥିବା ବ୍ୟକ୍ତି ହିଁ କହିପାରେ । ସେହି ବ୍ୟକ୍ତିମାନେ ହେଉଛନ୍ତି ଆମ ବିଭାଗର - ପ୍ରଫେସର୍ ଅଶ୍ୱିନୀ କୁମାର ପଣ୍ଡା, ପ୍ରଫେସର ଦେବୀପ୍ରସନ୍ନ ପଟ୍ଟନାୟକ ଓ ଡ. ରାଧାଗୋବିନ୍ଦ ପାଢ଼ୀ ।

୨୦୧୪-୧୫ ମସିହାରେ କଳାଭୂଷଣ ଉପାଧି ପାଇଁ ମୁଁ ଏହି ବିଶ୍ୱବିଦ୍ୟାଳୟରେ ପାଦ ଦେଇଥିବାରୁ ଓଡ଼ିଆ ବିଭାଗରେ ଥିବା ଏହି ସବୁ ପାଠ୍ୟ ଭଣ୍ଡାରକୁ ଦେଖିବାର ସୁଯୋଗ ପାଇଥିଲି । ସେହି ସମୟରେ ବିଭାଗ ମୁଖ୍ୟ ଦାୟିତ୍ୱରେ ଥା'ନ୍ତି ପ୍ରଫେସର୍ ଅଶ୍ୱିନୀ କୁମାର ପଣ୍ଡା ଓ ମାର୍ଗ ନିର୍ଦ୍ଦେଶକ ଥିଲେ ପ୍ରଫେସର୍ ପ୍ରସନ୍ନ କୁମାର ସ୍ୱାଇଁ । ପ୍ରଫେସର୍ ସ୍ୱାଇଁଙ୍କ ତତ୍ତ୍ୱାବଧାନରେ ମୁଁ ନିବନ୍ଧ ପ୍ରସ୍ତୁତ କରିଥିଲି । ତାଙ୍କର ଉପଦେଶ, ଲିଖନ ଶୈଳୀ ଓ ଭାଷା ହିଁ ମୋତେ ଆକୃଷ୍ଟ କରିଥିବାରୁ ମୋର ଗବେଷଣା କାର୍ଯ୍ୟ ଏ ଯାବତ୍ ଚାଲିଅଛି ।

୨୦୧୬ ମସିହାରେ ଜାତୀୟ ଅଧିସ୍ୱୀକୃତ ଓ ମୂଲ୍ୟ ନିର୍ଦ୍ଧାରଣ ପରିଷଦ ଆସିଥିଲେ (NAAC) । ସେହି ବର୍ଷ ବିଭାଗର ଏକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ଆରମ୍ଭ ହୋଇଥିଲା । ପ୍ରତ୍ୟେକ ବିଭାଗରେ Smart Class Room ସହ ପ୍ରତି ବିଭାଗରେ ଏକ ପାଠଚକ୍ର କୋଠରୀ ଥିବା ବେଳେ ଆମ ବିଭାଗରେ ଅନ୍ୟ ଏକ ବିଶେଷତ୍ୱ ରହିଥାଏ - ଦକ୍ଷିଣ ଓଡ଼ିଶା

ସାଂସ୍କୃତିକ କେନ୍ଦ୍ର ସହ ବିଭାଗରେ ମଧ୍ୟ ପାଠାଗାର ରହିଛି । ପିଲାମାନଙ୍କ ଉନ୍ନତି ସାଧନ କରିବା ପାଇଁ ବିଭାଗର ଏହା ଏକ ଚିନ୍ତାଶୀଳ ପ୍ରୟାସ ।

ଆମ ବିଭାଗର ଛାତ୍ରଛାତ୍ରୀମାନେ ପ୍ରତିଦିନ କେନ୍ଦ୍ରୀୟ ପାଠାଗାରରୁ କିଛି କିଛି ଜ୍ଞାନ ଆହରଣ କରିଥା'ନ୍ତି । ପାଠାଗାରର ମୁଖ୍ୟ ଅଧ୍ୟକ୍ଷାଙ୍କ ପାଖରୁ ମୁଁ କେତେ ବାର ଶୁଣିଛି, ଆମ ବିଭାଗର ଛାତ୍ରଛାତ୍ରୀଙ୍କ ପ୍ରଶଂସା । ବିଶ୍ୱବିଦ୍ୟାଳୟର ସବୁ ବିଭାଗ ଠାରୁ ଓଡ଼ିଆ ବିଭାଗର ଛାତ୍ରଛାତ୍ରୀମାନେ ଭିନ୍ନ ଏକ ଶୈଳୀରେ ପରିଚାଳିତ । ତାଙ୍କ ପାଖରେ ଥାଏ ଶୃଙ୍ଖଳା, ସଂଯମତା ଓ ବିଭାଗ ପ୍ରତି କର୍ତ୍ତବ୍ୟବୋଧ । ଆମ ବିଭାଗର ପ୍ରଫେସର୍ ଦେବୀପ୍ରସନ୍ନ ପଟ୍ଟନାୟକ ସ୍ନାତକୋତ୍ତର ପରିଷଦର ଅଧ୍ୟକ୍ଷ ହୋଇଥିବାରୁ ଛାତ୍ରଛାତ୍ରୀମାନେ ଗୌରବ ଅନୁଭବ କରନ୍ତି । ଅନ୍ୟ ଏକ ଗୌରବର କଥା ହେଲା, ବିଶ୍ୱବିଦ୍ୟାଳୟର ପ୍ରତ୍ୟେକ ବିଭାଗରେ ଅନୁଷ୍ଠିତ ଜାତୀୟ ପାଠଚକ୍ର କିମ୍ବା ବାର୍ଷିକ ଉତ୍ସବ ପାଳନ କ୍ଷେତ୍ରରେ ଯେଉଁ କୁଳସଙ୍ଗୀତ ଗାନ ହେଉଛି, ସେହି କୁଳସଙ୍ଗୀତର ରଚୟିତା ହେଉଛନ୍ତି ଆମର ଦେବୀପ୍ରସନ୍ନ ପଟ୍ଟନାୟକ ସାର୍ । ତାଙ୍କର ଅବଦାନ ବିଶ୍ୱବିଦ୍ୟାଳୟ ଠାରୁ ବିଭାଗ ପର୍ଯ୍ୟନ୍ତ ପ୍ରଲମ୍ବିତ । ଏହି ବିଭାଗରେ କଳାଭୂଷଣ ପଢ଼ିବା ସମୟରେ ଶିକ୍ଷାଗୁରୁ ଭାବେ ଯାହାଙ୍କୁ ପାଇଥିଲି, ସେମାନେ ହେଉଛନ୍ତି, ପ୍ର. ଅଶ୍ୱିନୀ କୁମାର ପଣ୍ଡା, ପ୍ର. ଦେବୀପ୍ରସନ୍ନ ପଟ୍ଟନାୟକ, ପ୍ର. ପ୍ରସନ୍ନ କୁମାର ସ୍ୱାଇଁ, ଡ. ସଦାନନ୍ଦ ନାୟକ, ଡ. ଦେବୀ ପ୍ରସାଦ ଶତପଥୀ ଓ ଡ. ସମୀର ଭୋଇ ସାର୍ । ଏମାନେ ସମସ୍ତେ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଜଣେ ଜଣେ ସୁପ୍ରତିଷ୍ଠିତ ବ୍ୟକ୍ତି ଭାବରେ ପରିଚିତ ।

ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗ ଯୋଗୁ ମୁଁ ଆଜି ସମାଜରେ ନିଜର ପରିଚୟ ସୃଷ୍ଟି କରିପାରିଛି । ମୁଁ ଏହି ବିଭାଗର ଜଣେ ଛାତ୍ର ଓ ଗବେଷକ ରୂପେ କାର୍ଯ୍ୟ କରୁଅଛି । ମୋର ଯାହା ସାହିତ୍ୟ କ୍ଷେତ୍ରରେ ଉନ୍ନତି ହୋଇଛି, ତା'ର ଏନ୍ତୁଡ଼ିଶାଳ ହିଁ ଏହି ଭଞ୍ଜବିହାର । ଓଡ଼ିଆ ବିଭାଗର ସୁବର୍ଣ୍ଣ ଜୟନ୍ତୀ ଅବସରରେ ମୁଁ ଶ୍ରୀଜଗନ୍ନାଥଙ୍କ ପାଖରେ ଏତିକି ପ୍ରାର୍ଥନା କରୁଛି, ଏହି ବିଭାଗର ଉତ୍ତରୋତ୍ତର ଉନ୍ନତି ହେଉ ।

•

*ଗବେଷକ, ଓଡ଼ିଆ ବିଭାଗ*
*ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ*

# ମୋ ଜୀବନଯାତ୍ରାର ମାଇଲ୍‌ଖୁଣ୍ଟ
# ଭଞ୍ଜବିହାର ଓଡ଼ିଆ ବିଭାଗ

ଡ. ବିଧୁପ୍ରଭା ରଥ

ଛୋଟ ମାନବ ଶିଶୁଟିକୁ ଏକ ପୂର୍ଣ୍ଣାଙ୍ଗ ବ୍ୟକ୍ତିରେ ପରିଣତ କରିବାରେ ଶିକ୍ଷା, ପରିବେଶ, ଶିକ୍ଷକ, ପିତାମାତା, ଶିକ୍ଷାନୁଷ୍ଠାନର ହିଁ ବିଶିଷ୍ଟ ଭୂମିକା ରହିଥାଏ । ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ, ଭଞ୍ଜବିହାରର ଅପୂର୍ବ ପ୍ରାକୃତିକ ପରିବେଶ ସ୍ନାତକୋତ୍ତର ଶିକ୍ଷାଦାନ ଓ ଗବେଷଣାକୁ ଏକ ନୂତନ ଆଭିମୁଖ୍ୟ ପ୍ରଦାନ କରିଥିଲା । ସାହିତ୍ୟ ପ୍ରତି ଥିବା ଗଭୀର ଅନୁରାଗ ମତେ ଓଡ଼ିଆ ଭାଷା-ସାହିତ୍ୟ ପଢ଼ିବା ପାଇଁ ବିଶେଷ ପ୍ରେରଣା ପ୍ରଦାନ କରିଥିଲା । ଗାଳ୍ପିକ ପ୍ରଫେସର୍ ହରିହର ଦାସ, କବି ପ୍ରଫେସର୍ ସୌଭାଗ୍ୟ କୁମାର ମିଶ୍ର ପ୍ରମୁଖ ସେତେବେଳେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ଅଧ୍ୟାପନା କରୁଥିଲେ । ସେମାନଙ୍କର ଗଳ୍ପ, କବିତା ପତ୍ରପତ୍ରିକାରେ ନିୟମିତ ପଢୁଥିଲି । ଓଡ଼ିଆ ସ୍ନାତକ (ସମ୍ମାନ) ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରି ଖଲ୍ଲିକୋଟ ମହାବିଦ୍ୟାଳୟ (ସ୍ୱୟଂଶାସିତ)ରୁ ଡିଷ୍ଟିଂସନ୍ ସହିତ ଉତ୍ତୀର୍ଣ୍ଣ ହୋଇ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ସ୍ନାତକୋତ୍ତର ଓଡ଼ିଆ ଭାଷା-ସାହିତ୍ୟ ବିଭାଗରେ ନାମ ଲେଖାଇଥିଲି । ୧୯୮୧ରୁ ୧୯୮୫ ପର୍ଯ୍ୟନ୍ତ ମୁଁ ଭଞ୍ଜବିହାରରେ ଏମ୍.ଫିଲ୍. ସରିଲା ପର୍ଯ୍ୟନ୍ତ ପଢ଼ିବାର ସୁଯୋଗ ପାଇଥିଲି ।

ଅଧ୍ୟାପନା କରିବାର ଆଗ୍ରହ ଓଡ଼ିଆ ଭାଷା-ସାହିତ୍ୟ ପ୍ରତି ଅଧିକ ରୁଚି ସୃଷ୍ଟି କରିଥିଲା । ଭଞ୍ଜବିହାରର ଅପୂର୍ବ ପ୍ରାକୃତିକ ପରିବେଶ, ଝାଉଁଗଛର ସାଇଁ ସାଇଁ ଶବ୍ଦ, ବଡ଼ ବଡ଼ କୋଠାଘର, ଚଉଡ଼ା ରାସ୍ତା, ପ୍ରଦୂଷଣ ରହିତ ଶାନ୍ତ ଜୀବନ, ଚାରିଆଡ଼େ ଛୋଟବଡ଼ ପାହାଡ଼, କୁଳପତିଙ୍କ ବାସଗୃହ, ଅତିଥିଗୃହ, ପ୍ରଫେସର୍ କ୍ୱାର୍ଟର୍ ଆଗରେ ସୁନ୍ଦର ବଗିଚା, ଅଳ୍ପ ଦୂରରେ ଗୋପାଳପୁର ସମୁଦ୍ରକୂଳ ଏକ ଅନିନ୍ଦ୍ୟ ରୂପର ଗନ୍ତାଘର ଭାବରେ ସମସ୍ତଙ୍କୁ ଆକର୍ଷିତ କରି ଆଣୁଥିଲା । ସେତେବେଳେ ସାମ୍ବାଦିକତା ଓ ଗଣଯୋଗାଯୋଗ ବିଭାଗର ପ୍ରତିଷ୍ଠାତା ତଥା ପ୍ରଥମ ପ୍ରଫେସର୍ ଚିନ୍ତାମଣି ମହାପାତ୍ର (ମୋର ପିଉସା) ଭଞ୍ଜବିହାରରେ ସରକାରୀ ବାସଭବନରେ ରହୁଥିଲେ । ମୁଁ ବି.ଏ. ପଢ଼ିଲା ବେଳରୁ ହିଁ ସବୁବେଳେ ଭଞ୍ଜବିହାର ତାଙ୍କ ଘରକୁ ଯାଉଥିଲି ।

ଭଞ୍ଜବିହାରର ସ୍ନାତକୋତ୍ତର ଓଡ଼ିଆ ଭାଷା-ସାହିତ୍ୟ ବିଭାଗରେ ପ୍ରଖ୍ୟାତ ଭାଷାତତ୍ତ୍ୱର ଗବେଷକ ପ୍ରଫେସର୍ ଗଗନେନ୍ଦ୍ରନାଥ ଦାଶ ଅଧ୍ୟାପନା କରୁଥିଲେ । ଭାଷାବିଜ୍ଞାନ

ସହିତ ଓଡ଼ିଆ ଭାଷାର ନୃତତ୍ତ୍ୱ ଇତିହାସର ବୈଜ୍ଞାନିକ ବିଶ୍ଳେଷଣ କ୍ଷେତ୍ରରେ ଡକ୍ଟର ଦାଶଙ୍କର ଖ୍ୟାତି ଦେଶ ବିଦେଶରେ ଆଲୋକିତ ହେଉଥିଲା । ଓଡ଼ିଆ ଭାଷାତତ୍ତ୍ୱ ଓଡ଼ିଆ ଭାଷା ସାହିତ୍ୟ ବିଭାଗରୁ ସେତେବେଳେ ଅଲଗା ହୋଇ ସ୍ୱତନ୍ତ୍ର ବିଭାଗ ହୋଇ ନଥିଲା । ଶ୍ରେଣୀରେ ଭାଷାତତ୍ତ୍ୱ, ଧ୍ୱନିର ଉତ୍ପତ୍ତି ସମ୍ପର୍କରେ ସାର୍ ପଢ଼ାଇଲା ବେଳେ ଯେଉଁଭଳି ସ୍ୱଚ୍ଛତା, ସରଳ ଭାବରେ ବିଶ୍ଳେଷଣ କରୁଥିଲେ, ତାହା ଆମକୁ ଚମତ୍କୃତ କରିଦେଉଥିଲା । କଷ୍ଟ ବିଷୟକୁ ସହଜ କରିବାର ଅସାଧାରଣ ବ୍ୟୁତ୍ପତ୍ତି ସାର୍‌ଙ୍କର ଅଧ୍ୟାପନା ଶୈଳୀରେ ଥିଲା । ପ୍ରସିଦ୍ଧ ଓଡ଼ିଆ ପ୍ରଫେସର୍‌ମାନଙ୍କ ମଧ୍ୟରେ ଡକ୍ଟର୍ କାହ୍ନୁଚରଣ ମିଶ୍ର ସାର୍‌ଙ୍କର ପ୍ରାଚୀନ ଓଡ଼ିଆ ସାହିତ୍ୟ, ବୈଷ୍ଣବ ସାହିତ୍ୟର 'ବିଦଗ୍ଧ ଚିନ୍ତାମଣି'ର ବିଶ୍ଳେଷଣରେ ଲାଳିତ୍ୟମୟ ଓଜସ୍ୱିନୀ ବକ୍ତବ୍ୟ ଆମକୁ ମନ୍ତ୍ରମୁଗ୍ଧ କରିଦେଉଥିଲା । ପ୍ରଫେସର ସୁଦର୍ଶନ ଆଚାର୍ଯ୍ୟ ସାର୍‌ଙ୍କର ପ୍ରାଚୀନ କାବ୍ୟ-ସାହିତ୍ୟରେ ଅସାଧାରଣ ପାଣ୍ଡିତ୍ୟ ରହିଛି । ଭଞ୍ଜ ସାହିତ୍ୟ ପଢ଼ାଇଲା ବେଳେ ସେ ଯେଉଁ ପରି ଭାବରେ ତଲ୍ଲୀନ-ବିଭୋର ହୋଇ ପଢ଼ାନ୍ତି, ତାହା ମୋର ମନରେ ଅଙ୍କିତ ହୋଇରହିଯାଇଛି । ଭଞ୍ଜସାହିତ୍ୟର ଅପୂର୍ବ ବ୍ୟାଖ୍ୟା ସାର୍ ପଢ଼ାଇଲା ବେଳେ ଭଞ୍ଜଙ୍କର କଷ୍ଟକର କାବ୍ୟର ତାତ୍ତ୍ୱିକ ଅର୍ଥକୁ ଏକ୍‌ବାରେ ସୁଗମ କରି ଦିଅନ୍ତି । ଡକ୍ଟର୍ ଆଚାର୍ଯ୍ୟଙ୍କର ଏହି ଅନନ୍ୟ ଶୈଳୀର ସର୍ଜନଶୀଳତା ମତେ ପରବର୍ତ୍ତୀ ସମୟରେ 'ଉପେନ୍ଦ୍ର ଭଞ୍ଜଙ୍କ ଲାବଣ୍ୟବତୀର ସୌନ୍ଦର୍ଯ୍ୟତାତ୍ତ୍ୱିକ ଅନୁଶୀଳନ' ବିଷୟ ଉପରେ ପିଏଚ୍.ଡି. ଡିଗ୍ରୀ ପାଇଁ ଗବେଷଣାର ଖୋରାକ ଯୋଗାଇଥିଲା । 'ଆଧୁନିକ ଓଡ଼ିଆ ଗଦ୍ୟ ସାହିତ୍ୟ' ପୁସ୍ତକର ପ୍ରଣେତା ଡକ୍ଟର୍ ଶ୍ରୀନିବାସ ମିଶ୍ରଙ୍କର ଆଧୁନିକ ଓଡ଼ିଆ ଗଦ୍ୟ ସାହିତ୍ୟର ଉତ୍ପତ୍ତି ସମ୍ପର୍କରେ ବିଶଦ ବ୍ୟାଖ୍ୟାନ ମତେ ଆଧୁନିକ ଓଡ଼ିଆ ସାହିତ୍ୟ ପଢ଼ିବାରେ ଉତ୍ସାହ ଭରି ଦେଇଥିଲା । ପ୍ରଫେସର୍ ସୀତାରାମ ମହାପାତ୍ରଙ୍କର ସରଳତା, ଛାତ୍ରବତ୍ସଳତା କେବେହେଲେ ମନରୁ ଭୁଲିବାର ନୁହେଁ । ଯୁବ ଅଧ୍ୟାପକ ଭାବରେ ଡକ୍ଟର୍ ଦେବୀପ୍ରସନ୍ନ ପଟ୍ଟନାୟକ, ଡକ୍ଟର୍ ପୂର୍ଣ୍ଣଚନ୍ଦ୍ର ମିଶ୍ର, ଡକ୍ଟର୍ ଅଶ୍ୱିନୀ କୁମାର ପଣ୍ଡା ପ୍ରମୁଖ ଓଡ଼ିଆ ବିଭାଗର ଅଧ୍ୟାପନା ଦିଗନ୍ତକୁ ସୁଦୂରପ୍ରସାରୀ କରିଛନ୍ତି ।

ଇଂରାଜୀ ବିଭାଗର ପ୍ରଫେସର୍ ତଥା ଓଡ଼ିଶାର ପ୍ରସିଦ୍ଧ କବି ଡକ୍ଟର୍ ସୌଭାଗ୍ୟ କୁମାର ମିଶ୍ରଙ୍କର କବିତା 'ଅନ୍ଧ ମହୁମାଛି', 'ଆତ୍ମନେପଦୀ' ଆଧୁନିକ ଓଡ଼ିଆ କବିତାରେ ପଢ଼ା ହେଉଥିଲା । ସେହି ବ୍ୟକ୍ତି ଆମ ବିଶ୍ୱବିଦ୍ୟାଳୟରେ ପାଠ ପଢ଼ାଉଛନ୍ତି ଏବଂ ଆମେ ତାଙ୍କୁ ଦେଖିପାରୁଛୁ, କଥା ହୋଇପାରୁଛୁ । ସେସବୁ ମତେ ଅତ୍ୟନ୍ତ ଆହ୍ଲାଦିତ କରିଥିଲା । ଆଧୁନିକ ଓଡ଼ିଆ କବିତାରେ ମିଥ୍‌ର ପ୍ରୟୋଗ ସମ୍ପର୍କରେ ପଢ଼ାହେଲା ବେଳେ କବି ସୀତାକାନ୍ତ ମହାପାତ୍ର, ରମାକାନ୍ତ ରଥ, ସୌଭାଗ୍ୟ ମିଶ୍ରଙ୍କର କବିତା ଯଥାକ୍ରମେ 'ଅଷ୍ଟପଦୀ', 'ଶ୍ରୀରାଧା',

'ଶକୁନ୍ତଳା' ପଢ଼ା ହେଉଥିଲା । 'ଶକୁନ୍ତଳା' କବିତା ଡକ୍ଟର୍ ସୌଭାଗ୍ୟ ମିଶ୍ରଙ୍କର ଏକ ଅନନ୍ୟ କବିତା, ମିଥ୍‌ର ସାର୍ଥକ ପ୍ରୟୋଗ ଏଥିରେ ହୋଇଛି । ଏହି କବିତାଗୁଡ଼ିକ ହିଁ ଆଧୁନିକ ଓଡ଼ିଆ କବିତାର ଅପୂର୍ବ ପ୍ରୟୋଗଶାଳା କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଆମ ଓଡ଼ିଆ ବିଭାଗର ପ୍ରାଚୀରପତ୍ର ହାତଲେଖା କାଗଜରେ ଲିଖିତ ହୋଇ 'ଯୁଗରୁଚି' ନାମରେ ପ୍ରକାଶ ପାଉଥିଲା । ସେଥିରେ ଓଡ଼ିଆ ବିଭାଗର ଶିକ୍ଷକ, ଛାତ୍ରଛାତ୍ରୀଙ୍କର ହାତଲେଖା କବିତା, ଗଳ୍ପ, ମିନିଗଳ୍ପ, ବ୍ୟଙ୍ଗକବିତା, ପୁସ୍ତକ ସମୀକ୍ଷା ସବୁ ପ୍ରକାଶ ପାଉଥିଲା । ନୋଟିସ୍ ବୋର୍ଡ଼ର ଜାଲି କାଠ ଫ୍ରେମ୍ ଭିତରେ 'ଯୁଗରୁଚି' କୁ ଅଠାରେ କାଗଜରେ ଲେଖା ହୋଇ ଚିପ୍‌କାଇ ଦିଆହେଉଥିଲା । ଲେଖାଟିଏ ପ୍ରକାଶିତ ହେବ ବୋଲି କି ପ୍ରବଳ ଉନ୍ମାଦନା ଥିଲା ସତରେ । ବର୍ଷ ଶେଷରେ 'ଯୁଗରୁଚି'ର ଲେଖାଗୁଡ଼ିକ ପୁସ୍ତକ ଭାବରେ ପ୍ରକାଶିତ ହେଉଥିଲା । ପ୍ରବନ୍ଧ, ରମ୍ୟରଚନା ଲେଖିବାର ଆଗ୍ରହ ମୋର 'ଯୁଗରୁଚି'ରେ ଲେଖିବା ଦ୍ୱାରା ହିଁ ସୃଷ୍ଟି ହୋଇଥିଲା ।

ବିଶ୍ୱବିଦ୍ୟାଳୟ ପି.ଜି. ବିଭାଗ ଦ୍ୱାରା ପ୍ରାଚୀରପତ୍ର 'ଭଞ୍ଜପ୍ରଭା' ମାଧ୍ୟମରେ ଲେଖା ପ୍ରକାଶିତ ହେଉଥିଲା । ବିଶ୍ୱବିଦ୍ୟାଳୟ ସ୍ତରରୁ ହିଁ ଛାତ୍ରଛାତ୍ରୀମାନଙ୍କ ମଧ୍ୟରେ ସାହିତ୍ୟ ସୃଷ୍ଟି ପାଇଁ ଏକ ଅଭିନବ ଉନ୍ମାଦନା ସୃଷ୍ଟି ହେଉଥିଲା, ଯାହାକି ପରବର୍ତ୍ତୀ ସମୟରେ ଭଲ ଗଳ୍ପ, ଉପନ୍ୟାସ, କବିତା, ପ୍ରବନ୍ଧ, ନାଟକ ଲେଖିବାର କ୍ଷେତ୍ରପ୍ରସ୍ତୁତି ପାଇଁ ସେମାନଙ୍କୁ ଦିଗ ନିର୍ଦ୍ଦେଶିତ କରୁଥିଲା । କଅଁଳିଆ ମନ, ଯୌବନର ଉଚ୍ଛଳ ପଣ, ସ୍ୱପ୍ନ ପ୍ରବଣତାରେ ଉଲ୍ଲସିତ ଯୁବସୁଲଭ ସର୍ଜନତାର ପରିପ୍ରକାଶ ଭଞ୍ଜବିହାରର ପ୍ରାଣବନ୍ତ ଛଳଛଳ ସ୍ନିଗ୍ଧ ରୋମାଣ୍ଟିକ୍ ପରିବେଶ ଯୋଗୁଁ ହିଁ ବିଶେଷ ଭାବରେ ଉନ୍ମେଷିତ ହୋଇଥିଲା ।

ବିଭିନ୍ନ ସମୟରେ ଓଡ଼ିଆ ଭାଷା-ସାହିତ୍ୟର ପ୍ରସିଦ୍ଧ ଲେଖକମାନେ ଯଥା- ମହାପାତ୍ର ନୀଳମଣି ସାହୁ, ଶାନ୍ତନୁ କୁମାର ଆଚାର୍ଯ୍ୟ, ଡକ୍ଟର୍ ଫନୀ ମହାନ୍ତି ପ୍ରମୁଖ ଓଡ଼ିଆ ବିଭାଗର ଅତିଥି ହୋଇ ଆସିଥିଲେ । ସେମାନଙ୍କର ମୂଲ୍ୟବାନ୍ ଅଭିଭାଷଣ ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗରେ ରଚନା ପାଇଁ ମୋ ଭିତରେ ଆଗ୍ରହ ସୃଷ୍ଟି କରିଥିଲା । ଓଡ଼ିଆ ବିଭାଗର ଅତିଥି ଅଧ୍ୟାପକ ଭାବରେ ଡକ୍ଟର୍ କୁଞ୍ଜବିହାରୀ ଦାଶ ଆମକୁ ପଢ଼ାଉଥିଲେ । ଲୋକକାହାଣୀ, ଲୋକସଙ୍ଗୀତ, ଲୋକ ସାଂସ୍କୃତିକ ପରମ୍ପରାରେ ଓଡ଼ିଆ ସାହିତ୍ୟର କ୍ରମବିକାଶର ତୁଳନାତ୍ମକ ସମୀକ୍ଷା ସେ ଅତ୍ୟନ୍ତ ବାସ୍ତବ ଶୈଳୀରେ ବୁଝାଉଥିଲେ; ଯାହା କି ଏବେ ବି ମନେ ରହିଛି ।

ଏଭଳି ଗୁଣୀ ଜ୍ଞାନୀ ଓଡ଼ିଆ ପ୍ରଫେସର୍, ସାହିତ୍ୟରେ ରୁଚି ରଖୁଥିବା ଶିକ୍ଷକମାନଙ୍କ ଦ୍ୱାରା ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ସମୃଦ୍ଧ ହୋଇଥିଲା । ଓଡ଼ିଆ ଭାଷା-ସାହିତ୍ୟକୁ ଭଲ

ଭାବରେ ପଢ଼ିବା, ବୁଝିବା, ବିଶ୍ଳେଷଣ କରିବାର ସୁଯୋଗ ମୁଁ ଭଞ୍ଜବିହାରରେ ଓଡ଼ିଆରେ ପି.ଜି. ଓ ଏମ୍.ଫିଲ୍. ପଢ଼ିବା ବେଳେ ପାଇଥିଲି । ସେଥିପାଇଁ ମୁଁ ମହିଳା ଶିଶୁ ବିକାଶ ମିଶନ୍ ଶକ୍ତି ବିଭାଗରେ ବୃତ୍ତିଗତ ଜୀବନ ଆରମ୍ଭ କଲା ବେଳେ ସାଧାରଣ ମଣିଷ ଜୀବନର ସୁଖ, ଦୁଃଖ, ଅସହାୟତା, ଅଭାବ, ସଂଘର୍ଷ, ହିଂସା, ନାରୀର ବାସ୍ତବ ଯନ୍ତ୍ରଣାକୁ ଅନ୍ତରଙ୍ଗ ଭାବରେ ଅନୁଭବ କରିପାରିଥିଲି । ଓଡ଼ିଆ ସାହିତ୍ୟ ପଢ଼ିଥିବାରୁ ଏକ ସମ୍ବେଦନଶୀଳତା, ମାନବିକ ମୂଲ୍ୟବୋଧ ପ୍ରତି ଅଙ୍ଗୀକାରବଦ୍ଧତା ମୋର ସ୍ୱତଃ ସୃଷ୍ଟି ହୋଇଥିଲା । ଲେଖିବାର ପ୍ରବଣତା ବି ବୃଦ୍ଧି ପାଇଥିଲା ।

ମତେ ଆଜି ଭାରି ଖୁସି ଲାଗୁଛି, ଆମର ପ୍ରିୟ ଓଡ଼ିଆ ଭାଷା-ସାହିତ୍ୟ ବିଭାଗ ୫୦ବର୍ଷ ପୂରଣ କରିଛି । ପ୍ରଫେସର୍ ଡକ୍ଟର୍ ପ୍ରସନ୍ନ କୁମାର ସ୍ୱାଇଁ ପୁରାତନ ଛାତ୍ରଛାତ୍ରୀଙ୍କର ଅନୁଭୂତିକୁ ସୁବର୍ଣ୍ଣ ଜୟନ୍ତୀ ପାଳନ ଅବସରରେ ପ୍ରକାଶିତ ହେଉଥିବା ସ୍ମରଣିକାରେ ସ୍ଥାନ ଦେବାର ଅସାଧାରଣ ଉଦ୍ୟମ କରିଛନ୍ତି । ଅତୀତର ସ୍ୱର୍ଣ୍ଣିମ ପୃଷ୍ଠାକୁ ଆଜିର ପିଢ଼ି ନିକଟରେ ଉନ୍ମୋଚନ କରିବାର ଗଠନମୂଳକ ଅସାଧ ଉଦ୍ୟମ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ପକ୍ଷରୁ ସେ କରିଛନ୍ତି; ତାହା ଅତ୍ୟନ୍ତ ପ୍ରଶଂସନୀୟ ଏବଂ ମତେ ଏଥିରେ ସାମିଲ୍ ହେବାର ଅପୂର୍ବ ସୁଯୋଗ ଦେଇଛନ୍ତି, ସେଥିପାଇଁ ମୁଁ କୃତଜ୍ଞ ।

•

*ବ୍ରହ୍ମପୁର*

# ଛୋଟ ମୋର ବିଭାଗଟି

ଶ୍ରୀ ବାଇଲଡୁ ପାଣିଗ୍ରାହୀ

୧୯୭୨ ମସିହା । ବରଷା କାଳ । ଛୋଟ ମୋର ଓଡ଼ିଆ ବିଭାଗଟିରେ ପାଠ ପଢ଼ିବା ପାଇଁ ନାଁ ଲେଖାଇଥିଲି । ବିଶ୍ୱବିଦ୍ୟାଳୟ ନଥିପତ୍ରରେ ତା' ନାଁଟା ଯୋଡ଼ି ହୋଇ ମାତ୍ର ଚାରୋଟି ବସନ୍ତ ଚାଲିଯାଇଥିଲା । ଏ ଯାଏଁ ପାଠପଢ଼ା ହେଉଥିଲା ବ୍ରହ୍ମପୁରରେ, ଭଡ଼ାଘରେ । ଶୀତଋତୁ ବେଳକୁ ଅନ୍ୟ ସବୁ ବିଭାଗ ସହ ଆମ ବିଭାଗଟି ବିଶ୍ୱବିଦ୍ୟାଳୟର ନୂଆଗଢ଼ା ଶିକ୍ଷା ସଦନକୁ ସ୍ଥାନାନ୍ତରିତ ହେଲା । ସହରୀ ଭିଡ଼ ଓ କମ୍ପନରୁ ମୁକ୍ତି ମିଳିଲା । ବିଭାଗ ସବୁ ଜନ-ଜଞ୍ଜାଳ ନଥିବା ଶାନ୍ତ ପରିବେଶରେ ଏକାଠି ରହି ରୁଚିଶୀଳ ଓ ଗରିମାମୟ ମନେ ହେଲେ । ଅସ୍ମିତା ଓ ଆତ୍ମପ୍ରତ୍ୟୟରେ ଗମ୍ଭୀର ବି ଦେଖାଗଲେ । ଏମିତି ଶୃଙ୍ଗାରରେ ବିଦ୍ୟାର୍ଥୀମାନେ ଉଲ୍ଲାସ- ପୁଲକରେ ଉତୁରି ପଡ଼ିଥିଲେ ।

ବିଶ୍ୱବିଦ୍ୟାଳୟ ଧରିତ୍ରୀର ରୂପଶ୍ରୀ ସ୍ୱତନ୍ତ୍ର । ତା'ର ମାଟି, ପାଣି, ଆଲୋକ, ପବନ ଓ ଆକାଶ ଅଧିକ ଉର୍ଜାବାନ୍ ମନେ ହୁଅନ୍ତି । ଏଣୁ, ଏଠି ସବୁକିଛି ଉଜ୍ଜ୍ୱଳ, ମନୋରମ ଓ ଜୀବନ୍ତ ଦେଖାଯା'ନ୍ତି । ପରିବେଶ ପରିଷ୍କାର-ପରିଚ୍ଛନ୍ନ ଓ ପ୍ରଦୂଷଣ ମୁକ୍ତ । ଜଳବାୟୁ ନାତିଶୀତୋଷ୍ଣ ବର୍ଷ ସାରା । ପାଖ ସାଗରରୁ ଅଯାଚିତ ଭାବରେ ବାରମ୍ବାର ବହି ଆସୁଥିବା ସଲିଳ – ହିଲ୍ଲୋଳ ଭୂଭାଗଟିକୁ ସୁଶୀତଳ କରୁଥାଏ । ଏ ହେତୁରୁ ଏଠାର ପ୍ରକୃତି କାନ୍ତ-କୋମଳ ରୂପରେ ସଜେଇ ହୋଇ ରହିଥାଏ ସବୁବେଳେ । ପ୍ରଲମ୍ବିତ ବାହୁ ବଲ୍ଲରୀର ବିନମ୍ର କିଆ କୁଞ୍ଜ, ଝୁମି ଝୁମି ଗୁଞ୍ଜରି ଉଠୁଥିବା ନିରୀହ ଝାଉଁ ଜଙ୍ଗଲ, ଋତୁକ୍ରମରେ ପତ୍ର-ଫୁଲ ଓ ଫଳରେ ନବ ନବୋନ୍ମେଷ କାନ୍ତି ଅଙ୍କନ କରୁଥିବା ତରୁଣ ତୋଟାମାଳ ଦେଖିଲେ ମନ ପୂରି ଉଠେ । ଗଛଲତାମାନେ ମୁଠା ମୁଠା ପ୍ରାଣଶକ୍ତି ଧରି ଛଳଛଳ ଚାହୁଁଥିବା ପରି ଦେଖାଯା'ନ୍ତି । ଏମାନଙ୍କ କୋଳରେ ରହିଆସୁଥିବା ଅକଳନ ବିହଙ୍ଗ ବିହଙ୍ଗୀ ଡାଳରୁ ଡାଳକୁ ଡେଇଁ ରସାଳ ସଙ୍ଗୀତ ଗାଇ ଫୁଲେଇ ହେଉଥା'ନ୍ତି । ପ୍ରଲୁବ୍ଧ ଭ୍ରମର ସୁମନଙ୍କ ବାସ ଚୋରାଇ ନେବ ବୋଲି କହି ହେଉଥାଏ । ମଧ୍ୟାହ୍ନରେ ହଳଦୀବସନ୍ତ ସଙ୍ଗେ ଗୁଣ୍ଡୁଚିର କଳଗିର ଅଲବତ ସ୍ଫୁରିତ ହେଉଥାଏ । ନୁଆଁଣିଆ ସଞ୍ଜରେ ସାଗର ବେଳାରୁ ଆସିଥିବା ବକାଳିକାମାଳିକା ଗଛ ଶିଖରକୁ ଧବଳିମାରେ ଗୋଟାସାରା ଲିପିଦିଅନ୍ତି । ଏତେ ଅଳଙ୍କାରରେ ସଜ୍ଜିତା ଏଠାର ଧରିତ୍ରୀ ଚିତ୍ରପଟ ପାଲଟିଯାଏ ।

ଛୋଟ ମୋର ମଣିଷଗଢ଼ା ଯଜ୍ଞଶାଳାଟିର ଉଦ୍‌ଗାତା ଥିଲେ ଡକ୍ଟର୍ କୁଞ୍ଜବିହାରୀ ତ୍ରିପାଠୀ, ଡକ୍ଟର୍ କାହ୍ନୁଚରଣ ମିଶ୍ର, ଡକ୍ଟର୍ ବେଣୀମାଧବ ପାଢ଼ୀ, ଡକ୍ଟର୍ ସୀତାରାମ ମହାପାତ୍ର

ଓ ଡକ୍ଟର୍ ସୁଦର୍ଶନ ଆଚାର୍ଯ୍ୟ । ଗତ ଶତକର ପରାଧୀନ କାଳ ଓଡ଼ିଶାର ସାମାଜିକ ଜୀବନର ସବୁ କ୍ଷେତ୍ର ଅଭାବ, ଅନଟନ ଓ ଅସମ୍ପନ୍ନତାରେ ସ୍ଥାଣୁ ହୋଇପଡ଼ିଥିବା ପୃଷ୍ଠଭୂମିରୁ ଏମାନେ ନିଜସ୍ୱ ସଂଗ୍ରାମ ବଳରେ ଗଢ଼ି ଉଠିଛନ୍ତି, ପାଠ ପଢ଼ିଛନ୍ତି, ନିଜ ଶିଙ୍ଗରେ ମାଟି ଟାଳି ନିଜ ବ୍ୟକ୍ତିତ୍ୱ ଓ ଚରିତ୍ର ଗଠନ କରିଛନ୍ତି । ଜଗତ ଓ ଜୀବନ ପ୍ରତି ଏମାନଙ୍କର ଦୃଷ୍ଟିଭଙ୍ଗୀ ସକାରାତ୍ମକ, ରୁଚି ସାତ୍ତ୍ୱିକ, ନୀତି ଦୃଢ଼ ନିଶ୍ଚିତ, ଆଦର୍ଶ ଅମାୟିକ । ବିଦ୍‌ବତ୍ତାରେ ଏମାନେ ସମସ୍ତେ ଧୂରୀଣ, ଏକକ ଭାବେ ଅନନ୍ୟ ।

ଅପରିଣତ ତଥା ସାନ ଶିକ୍ଷାଗତ ବ୍ୟକ୍ତିତ୍ୱଟିଏ ଧରି ମୁଁ ବିଭାଗରେ ପହଞ୍ଚିଥିଲି । ବିଭାଗଟି ମୋତେ ସବୁବେଳେ ଶ୍ରୀମୟ ବୋଧ ହେଉଥିଲା, ସାରସ୍ୱତ ବିଦ୍ୟା ବିଭବରେ ଭରି ହୋଇଥିବା ପରି ଲାଗୁଥିଲା । ପରିବେଶ ଥିଲା ଶାନ୍ତ, ଧୀର ଓ ଗମ୍ଭୀର । ଏଠି କେହି ତ କାହିଁ ନିୟମ କରି ନଥିଲେ, ତଥାପି ଶିକ୍ଷକ ଓ ଛାତ୍ର – ସମସ୍ତେ ବିଦ୍ୟାନୁରାଗୀ ଅନୁଶାସନରେ ଛନ୍ଦା । ସନ୍ଦୀପନୀଙ୍କ ଆଶ୍ରମ କି ନାଳନ୍ଦା ଶ୍ରମଣ ବିହାରର ଅଖଣ୍ଡ ଶାନ୍ତିର ବାତାବରଣ ପରି ସବୁ ନିୟମିତ । ଶିକ୍ଷକମାନଙ୍କ ସ୍ନେହଶୀଳ ଓ ଅନାବିଳ ସମ୍ପର୍କ ରଜ୍ଜୁରେ ମୁଁ ବାନ୍ଧି ହୋଇଯାଇଥିଲି । ଦିନେ ହେଲେ କେବେ ଏମାନେ ରାଗିବା କି ବିରକ୍ତ ହେବା ମୁଁ ଦେଖିନି । ନମ୍ରନ୍ତି ଗୁଣିନଃ ଜନାଃ । ଅବିଳମ୍ବେ ମୋ ନମନ-ବଦନର ବିଦ୍ୟାମନ୍ଦିରଟିର ସବୁ ବିଧି ବିଧାନ୍ ସହ ସଂଶ୍ଲେଷିତ ହୋଇଯାଇଥିଲି ସଶ୍ରଦ୍ଧ ଚିତ୍ତରେ ଓ ଓତପ୍ରୋତ ଭାବରେ ।

ବିଭାଗ, ପାଠପଢ଼ା ପାଇଁ ଯୁଗୋପଯୋଗୀ ପାଠ୍ୟକ୍ରମଟିଏ ପ୍ରସ୍ତୁତ କରିଥିଲା । ପ୍ରାଚୀନ ଭାରତୀୟ ଭାଷା-ସାହିତ୍ୟ, ଆଧୁନିକ ପ୍ରାନ୍ତୀୟ ଭାରତୀୟ ସାହିତ୍ୟ ସହ ସମଗ୍ର ଓଡ଼ିଆ ସାହିତ୍ୟ, ଭାଷାତତ୍ତ୍ୱ ଓ ଓଡ଼ିଆ ଭାଷା – ଏ ସବୁ ବିଷୟରେ ସବିଶେଷ ଧାରଣା ଆଣିଦେବା ଲକ୍ଷ୍ୟ ଏଥିରେ ଥିଲା । ଅବଶ୍ୟ ଭାଷାତତ୍ତ୍ୱ ପାଠ୍ୟରେ ସେଦିନ ଭାରତର ଶିକ୍ଷାଳୟମାନଙ୍କ ପରି ଐତିହାସିକ ଓ ତୁଳନାତ୍ମକ ବିଷୟ ଟିକିଏ ଅଧିକ ମାତ୍ରାରେ ରହିଥିଲା । ଏଠି କଥାଟିଏ କହିବାକୁ ଚାହୁଁଛି । ମୋର ଉତ୍ତରପର୍ବ ଅଧ୍ୟୟନ ବର୍ଷ ଲିଓନାର୍ଡ଼ ବ୍ଲୁମଫିଲ୍‌ଡ଼ଙ୍କ 'ଲାଙ୍ଗୁଏଜ୍' ବହିଟି ଦେଖିବାକୁ ପାଇଥିଲି । ଭାଷା ବିଜ୍ଞାନରେ ଅନେକ ଚମତ୍କାର ବିଷୟ ଆଲୋଚିତ ହୋଇଥିବା ସେଠୁ ଧାରଣା ହେଲା । ଥରେ ସାଙ୍ଗମାନଙ୍କ ସହ କୁଳପତି ନ୍ୟାୟମୂର୍ତ୍ତି ଅଭିମନ୍ୟୁ ମିଶ୍ରଙ୍କ ନିକଟରେ ପହଞ୍ଚି ବିଶ୍ୱବିଦ୍ୟାଳୟ ଭାଷାବିଜ୍ଞାନ ବିଭାଗଟିଏ ଖୋଲିଦେଲେ ଆମେ ସବୁ ପଢ଼ିବୁ ବୋଲି ଜଣାଇଥିଲୁ । ସେ ବୋଧେ କିଛି କଲେ । ଟିକିଏ ପରେ ବିଭାଗଟିଏ ଖୋଲିଲା । ସେ ଯାଏଁ ଆମେ ଠିଆ ହୋଇ ରହିପାରିଲୁ ନାହିଁ ।

ଉଚ୍ଚମାନର ପାଠପଢ଼ା ପାଇଁ ବିଭାଗ ସୁନାମ ଅର୍ଜନ କରିଥିଲା । ପାଠପଢ଼ା ବେଳେ ଛାତ୍ରମାନେ କାକସ୍ନାନ, ବକଧ୍ୟାନ, ଶ୍ୱାନନିଦ୍ରା ମୁଦ୍ରାରେ ହିଁ ରହୁଥିଲେ ।

ଶିକ୍ଷାଦାନରେ ପ୍ରତି ଶିକ୍ଷକଙ୍କ ବ୍ୟକ୍ତିତ୍ୱ, ବିଦ୍‌ବତ୍ତା ଓ ରୁଚିର ପ୍ରଭାବ ରହୁଥିଲା । ଉପସ୍ଥାପନ ଭଙ୍ଗୀ ଓ ପ୍ରକାଶନ କୌଶଳରେ ଭିନ୍ନ ଭିନ୍ନ ସ୍ୱାଦ ମିଳୁଥିଲା । ତେବେ ଏଠାର ପାଠପଢ଼ା ରୀତି ଅତ୍ୟନ୍ତ ପ୍ରଭାବଶାଳୀ, ଶକ୍ତିଶାଳୀ ଓ ଗୁଣବତ୍ତାସମ୍ପନ୍ନ ଥିଲା । ଏହା ଛାତ୍ରର ମନପ୍ରାଣକୁ ଛୁଇଁଥିଲା, ଚକ୍ଷୁ ଉନ୍ମୀଳନ କରୁଥିଲା, ବୁଦ୍ଧି, ଜ୍ଞାନ ଓ ଚିନ୍ତା ଜଗତକୁ ଦୃଢ଼ କରି ତା'ର ଶିକ୍ଷାଗତ ବ୍ୟକ୍ତିତ୍ୱ ଓ ଚରିତ୍ରକୁ ଉନ୍ନତ ଭାବରେ ଗଠନ କରି ଦେଉଥିଲା ।

ବିଶ୍ୱବିଦ୍ୟାଳୟର କେନ୍ଦ୍ରୀୟ ଗ୍ରନ୍ଥାଗାରଟିରେ ବହୁ ମୂଲ୍ୟବାନ୍ ଗ୍ରନ୍ଥ ଥିଲା । ଶୁଣିଛି, ଏଠାରେ ଥିବା କେତେକ ଦୁଷ୍ପ୍ରାପ୍ୟ ରଚନା ଓଡ଼ିଶାର ରାଜବାଟୀମାନଙ୍କରୁ ସଂଗୃହୀତ ହୋଇଥିଲା । ଦାନ ବା କ୍ରୟ ସୂତ୍ରରେ ଅନେକ ତାଳପତ୍ର ପୋଥି ଅଣାଯାଇ ବିଶ୍ୱବିଦ୍ୟାଳୟ ମିଉଜିୟମ୍‌ରେ ରଖାଯାଇଥିଲା । ଆମ ବିଭାଗରେ ବି ଉଚ୍ଚମାନର ଗ୍ରନ୍ଥାଗାରଟିଏ ଥିଲା । ଓଡ଼ିଆ ତଥା ଅନ୍ୟ ଭାଷାରେ ପ୍ରଣୀତ ସାହିତ୍ୟ ତତ୍ତ୍ୱ, ସାହିତ୍ୟ ଆଲୋଚନା, ଭାଷାତତ୍ତ୍ୱ, ଭାଷା ଆଲୋଚନା ତଥା ଧର୍ମ-ସମାଜ ସମ୍ପର୍କୀୟ କେତେକ ଉପାଦେୟ ଗ୍ରନ୍ଥ ଏଠି ଥିଲା । ଏ ବହିଗୁଡ଼ିକରୁ ଗୋଟିଏ ପରେ ଗୋଟିଏ ନେଇ ମୁଁ ପଢ଼ି ଚାଲିଲି । ଆବଶ୍ୟକ ତଥ୍ୟ ଟିପି ରଖୁଥିଲି । ମୋର ଏ ଶ୍ରଦ୍ଧାଶୀଳ ପରିଶ୍ରମ ମୋତେ ଅମୂଲ୍ୟ ମୂଲ ଦେଇଥିଲା । 'ବାଗର୍ଥ' ବ୍ୟାପାରଟି ଯେ କେତେ ଅସୀମ ଓ ଅତଳ, ତା'ର ଦେହ ପକ୍ଷ ଓ ଆତ୍ମ ପକ୍ଷରେ ମଣିଷ ସ୍ପନ୍ଦନର କେତେ ରଙ୍ଗବେରଙ୍ଗର ବାର୍ତ୍ତା ସନ୍ନିହିତ, ତାହା ବୁଝିପାରିଥିଲି । ସେ ଦିନର ମୋ ସାଉଁଟା ସମ୍ପତ୍ତି ଏବେ ବି ମୋ କାମରେ ଆସୁଛି ।

ବିଭାଗର ପାଠଚକ୍ର ଭାରି ମନେ ପଡ଼େ । ନିଷ୍ପତ୍ତି ହୋଇଥିଲା ଯେ ପ୍ରତି ଶନିବାର ଦିନ ପାଠଚକ୍ରରେ ପ୍ରବନ୍ଧ ପାଠ କରାଯିବ । ନ ହୋଇପାରିଲେ ତ୍ୱରିତ ଘୋଷଣାରେ ତର୍କ ପ୍ରତିଯୋଗିତା ଅନୁଷ୍ଠିତ ହେବ । ବିଭାଗର ସବୁ ଛାତ୍ର କ୍ରମାନ୍ୱୟରେ ଏଥିରେ ଭାଗନେବା ଥୟ । ଶିକ୍ଷଣର ଏ ପ୍ରୟୋଗାତ୍ମକ ବିଧାନଟି ବିଦ୍ୟାର୍ଥୀଙ୍କୁ ଭାଷଣ କଳା ଶିଖାଇ ଦେଉଥିଲା ଓ ମଞ୍ଚ ଭୟ ଦୂର କରାଇ ଦେଉଥିଲା । ମୋ ଉତ୍ତରପର୍ବ ଅଧ୍ୟୟନ ବର୍ଷ ପ୍ରତି ଛାତ୍ର ଗୋଟିଏ ଲେଖାଏଁ ପ୍ରବନ୍ଧ ପାଠ କରିଥିଲେ । ଏହା ସହ ସାହିତ୍ୟିକମାନଙ୍କ ଜୟନ୍ତୀ, ତିରୋଧାନ ଦିବସରେ ସେମାନଙ୍କୁ ଶ୍ରଦ୍ଧାଞ୍ଜଳି ଦିଆଯାଇ ସେମାନଙ୍କ କୀର୍ତ୍ତି ଓ କୃତି ସମ୍ପର୍କରେ ଆଲୋଚନା କରାଯାଉଥିଲା । ଆନୁଷଙ୍ଗିକ ଭାବେ ଗଣେଶ ପୂଜା, ସରସ୍ୱତୀ ପୂଜା ଅନୁଷ୍ଠିତ ହେଉଥିଲା । ଛାତ୍ର ସଂସଦ ମଧ୍ୟ ସାଂସ୍କୃତିକ ଓ ଶୈକ୍ଷିକ କାର୍ଯ୍ୟକ୍ରମମାନ ଆୟୋଜନ କରୁଥିଲା ।

ଆମ ବିଭାଗ ପରି, ଅନ୍ୟ ସବୁ ବିଭାଗ ମଧ୍ୟ ବେଶ୍ କର୍ମ ତତ୍ପର ଥିଲେ ଓ କୀର୍ତ୍ତିଶାଳୀ ହୋଇପାରିଥିଲେ । ଦେଶ ଭିତରେ ତଥା ବାହାରେ ଯଶସ୍ୱୀ ହୋଇଥିବା କେତେ ଜଣ ଶିକ୍ଷକ ସେମାନଙ୍କ ବିଭାଗ ତଥା ବିଶ୍ୱବିଦ୍ୟାଳୟର ସୁନାମ ଆଣିପାରିଥିଲେ ।

ଜାତୀୟ ଓ ଆନ୍ତର୍ଜାତୀୟ ଖ୍ୟାତି ସମ୍ପନ୍ନ ବିଦ୍ୱାନ୍‌ଙ୍କୁ ଆଣି ଆଲୋଚନାଚକ୍ରମାନ ଆୟୋଜନ କରୁଥିଲେ ।

ଏମିତିରେ ବିଭାଗରେ ମୋ ବ୍ୟବସ୍ଥିତ ଗାଣିତିକ କାଳଖଣ୍ଡଟି ସରି ଆସିଲା । ବିଶ୍ୱବିଦ୍ୟାଳୟ ମୋତେ ସ୍ନାତକୋତ୍ତର ଘୋଷଣା କରିଦେଲା । ମୁଁ ଉତ୍ତର ସ୍ନାନ କର୍ମଟି ସାରିଦେଇଛି ବୋଲି ମୋତେ ମୋ ବନ୍ଦନ-ତର୍ପଣ ଭୂଇଁରୁ ଅପସରି ଯିବାକୁ ହିଁ ପଡ଼ିଲା । ଏଠୁ ଫେରିବା ବେଳକୁ ମୋର ରୂପାନ୍ତରଣ ଘଟିଥିବା ଅନୁଭବ କରିଥିଲି । ମୋ ଦେଖିବା-ଚିହ୍ନିବାରେ ଟିକିଏ ଭିନ୍ନତା ଆସିଥିଲା । ଥୟ ଧରିବା ପାଦରେ ପରିଣତତା ଆଡ଼କୁ ବୋଧେ ଚାଲିପାରୁଥିଲି । ଛୋଟ ମୋର ବିଭାଗଟି ମୋତେ ଏତିକି ଶିଖାଇ ଦେଇଥିଲା ତ !

ବିଭାଗଟି ମୋର ବୟସ୍କ ହେଲାଣି । ତାକୁ ଏବେ ୫୦ତମ ବସନ୍ତ ଛୁଇଁଲାଣି । ଶୈଶବ କାଳର ତା' ଭିତ୍ତିଭୂମିଟି ବଳିଷ୍ଠତମ ଭାବରେ ନିର୍ମିତ ହୋଇଥିବା ମୁଁ ଅନୁଭବିଛି । ସେ କାଳରୁ ଆଜି ଯାଏ ବିଭାଗ ବହୁ ଅନୁଭୂତି ଓ ଅଭିଜ୍ଞତା ସାଉଁଟିଛି । ସେ ସବୁ ଆଧାରରେ ସେ ନିଜକୁ ଅଧିକ ମାର୍ଜିତ ଓ ଶକ୍ତି ସମ୍ପନ୍ନ କରିଛି । ଅନେକ ବିଜ୍ଞ ଓ ମହାନୁଭବଙ୍କ ସମ୍ପର୍କ-ସମନ୍ୱୟରେ ଆସି ଅଶେଷ ପ୍ରାବୀଣ୍ୟ ଅର୍ଜିଛି । ଆବଶ୍ୟକ ଶାଖା-ପ୍ରଶାଖାମାନ ଖୋଲିଛି । ବିବିଧତାର ରଙ୍ଗରେ ପ୍ରଶଂସନୀୟ ବି ହୋଇଛି । ଏଠାରୁ ସୃଷ୍ଟ ବହୁ କୃତୀ ସନ୍ତାନ ଦେଶ ସେବାରେ ନାଁ କରିଛନ୍ତି, ବିଭାଗର ସୁନାମ ଆଣିଛନ୍ତି । ଛୋଟ ମୋର ଏ ବିଭାଗଟି ଭାରତର ଶିକ୍ଷାକାଶରେ ଅଧିକ ଉଜ୍ଜ୍ୱଳିତ ହୋଇ ପ୍ରତିଭାତ ହେଉ - ଏ ଆଶା କରୁଛି । ବିଶ୍ୱବିଦ୍ୟାଳୟର ଅନ୍ୟ ସବୁ ବିଭାଗ ସହ ମୋ ବିଭାଗଟିକୁ 'ଭୁଜ ତଳେ ତାଙ୍କୁ ରଖ ମହାବାହୁ, ବାହୁ ତଳେ ତାଙ୍କୁ ରଖ' - ଶ୍ରୀ ଜଗନ୍ନାଥଙ୍କୁ ଏତିକି ଭିକ୍ଷା କରି ରହୁଛି ।

•

*ଅବସରପ୍ରାପ୍ତ ପ୍ରାଧ୍ୟାପକ*

*ବ୍ରହ୍ମପୁର*

# ମୋ ଦୃଷ୍ଟିରେ ମୋ ବିଭାଗ

ଡ. ଦିବ୍ୟଶକ୍ତି ସାମନ୍ତରାୟ

ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଓଡ଼ିଶାର ଶିକ୍ଷା କ୍ଷେତ୍ରରେ ଏକ ଅଲୋକ ବର୍ତ୍ତିକା । ଏହି ମହାନ୍ ବିଶ୍ୱବିଦ୍ୟାଳୟରେ ଓଡ଼ିଆ ବିଭାଗରେ ପ୍ରାକ୍-ଗବେଷଣା ଶ୍ରେଣୀରେ (୨୦୧୦-୨୦୧୧) ଅଧ୍ୟୟନ କରି ମୁଁ ଗର୍ବିତ । ମୁଁ ଓଡ଼ିଆ ବିଭାଗର ଛାତ୍ର ଥିଲି । ଆଜି ଓଡ଼ିଆ ବିଭାଗ ପ୍ରତିଷ୍ଠା ହେବାର ୫୦ବର୍ଷ ପୂରଣ ହୋଇଛି । ଆନନ୍ଦରେ ଆଖିରେ ଲୁହ ଚାଲି ଆସୁଛି । ଅନ୍ୟ ବିଶ୍ୱବିଦ୍ୟାଳୟର ଛାତ୍ରମାନଙ୍କୁ ଏଠାରେ ସ୍ଥାନ ମିଳେ ନାହିଁ ବୋଲି ମୋ ମନରେ ଥିବା ଭ୍ରାନ୍ତ ଧାରଣା ସେଦିନ ଅପସରି ଯାଇଥିଲା, ଯେଉଁଦିନ ମୁଁ ସେଠାରେ ପଢ଼ିବା ପାଇଁ ଯୋଗ୍ୟ ବିବେଚିତ ହୋଇଥିଲି । ତତ୍‌କାଳୀନ ବିଭାଗ ମୁଖ୍ୟ ଡ. ପ୍ରସନ୍ନ କୁମାର ସ୍ୱାଇଁଙ୍କର ଛାତ୍ରମାନଙ୍କ ସହିତ ବନ୍ଧୁତ୍ୱପୂର୍ଣ୍ଣ ବ୍ୟବହାର ଓ ସମର୍ଥନ ଅନ୍ୟମାନଙ୍କ ପାଇଁ ପ୍ରେରଣା ଥିଲା । ଏହି ବିଭାଗର ଅଧ୍ୟୟନ ସମୟରେ ମୁଁ ମୋର ସାଙ୍ଗଠନିକ ଓ ପରିଚାଳନାଗତ ଦକ୍ଷତା ବୃଦ୍ଧି କରିପାରିଛି । ଶିକ୍ଷାଦାନ କ୍ଷେତ୍ରକୁ ଆସିଲେ ପୂର୍ଣ୍ଣ ସାର୍, ପ୍ରସନ୍ନ ସାର୍, ଦେବୀପ୍ରସନ୍ନ ସାର୍, ବାଉରୀବନ୍ଧୁ ସାର୍, ସଦାନନ୍ଦ ସାର୍, ଅଶ୍ୱିନୀ ସାର୍ ଏକକୁ ଆରେକ ବଳିଯାଉ ।

ସବୁଠାରୁ ବଡ଼ କଥା, ଏହି ବିଭାଗରେ ଅଧ୍ୟୟନ କରିବା ସମୟରେ, ମୁଁ ନିଜକୁ କେବେ ଅସହାୟ ମନେକରି ନାହିଁ । ପ୍ରତ୍ୟେକ କ୍ଷେତ୍ରରେ ପ୍ରସନ୍ନ ସାର୍ ଏବଂ ଅଫିସ କର୍ମଚାରୀ ରାଧାଗୋବିନ୍ଦ ସାର୍, ମନୁଭାଇ, ଉମା ଭାଇ ସହଯୋଗ କରିଛନ୍ତି । ସମୀର ସାର୍, ଦେବୀ ଶତପଥୀ ସାର୍‌ଙ୍କ ଯୋଗଦାନ ଆମ ଜୀବନରେ ଅନେକ ନୂଆ ସମ୍ପର୍କ ଯୋଡ଼ି ପାରିଥିଲା ।

ତତ୍ତ୍ୱାବଧାରକ ଭାବରେ ପ୍ରସନ୍ନ କୁମାର ସ୍ୱାଇଁ ମହୋଦୟ ଅତି ପାରିବାରିକ ଥିଲେ । ତାଙ୍କର ସେଦିନର ଗୋଟିଏ ଗାଳି ମୋ ପାଇଁ ଆଶୀର୍ବାଦ ସଦୃଶ ଥିଲା । 'ତୋର ଆଦୌ ଭାଷା ଜ୍ଞାନ ନାହିଁ' ବୋଲି ଥରେ ସେ ଗାଳି ଦେଇଥିଲେ । ସେବେଠାରୁ ମୁଁ ନିଜକୁ ଅନେକ ସୁଧାରି ପାରିଛି । ଯାହାର ମୌଖିକ ପ୍ରମାଣ ଶାନ୍ତି ନିକେତନର ଏକ ପାଠଚକ୍ରରେ ଡକ୍ଟର୍ ସବିତା ପ୍ରଧାନ ମହୋଦୟା ଦେଇଥିଲେ । ଭବିଷ୍ୟତରେ ଯେଉଁ ସୋପାନକୁ ଛୁଇଁବି, ସେଥିରେ ପ୍ରସନ୍ନ ସାର୍‌ଙ୍କ ପରୋକ୍ଷ ପ୍ରେରଣା ହିଁ ମୋତେ ଆଗକୁ ବାଟ କଢ଼ାଇ ନେବ ।

ଆମ ସମୟରେ ଓଡ଼ିଆ ବିଭାଗ ନୂତନ ରୂପରେଖ ପାଇଥିଲା । ଦକ୍ଷିଣ ଓଡ଼ିଶାର ଲୋକ ସାହିତ୍ୟ ଓ ସଂସ୍କୃତି ଉପରେ ଗବେଷଣାର କେନ୍ଦ୍ର ଭାବରେ ୟୁଜିସି ସ୍ୱୀକୃତ

ପାଇଥିଲା । ଫଳରେ ଦୁଇଟି ଜାତୀୟ ପାଠଚକ୍ର ସେଠାରେ ଅନୁଷ୍ଠିତ ହୋଇଥିଲା । ଶିକ୍ଷା, ସଂସ୍କୃତି ସହିତ ଦକ୍ଷିଣ ଓଡ଼ିଶାର କଥିତ ଭାଷା ଉପରେ ମୋତେ ପୂର୍ଣ୍ଣ ଧାରଣା ଦେଇଥିଲା ଓଡ଼ିଆ ବିଭାଗ । ଆମ ବିଭାଗରେ ଉତ୍ସବ ହେଲେ ଖାଇବା ଭଲ ହୁଏ, ସେ କଥା ଆଦୌ ଭୁଲି ହେବ ନାହିଁ । ଆଜି ବି ସ୍ୱପ୍ନରେ ଓଡ଼ିଆ ବିଭାଗର କ୍ରିୟାକଳାପ ମାନ ମୋ ମନରେ ରୂପ ନେଇ ଝଲକି ଉଠୁଛି ।

ସେଦିନ ଦୁଇ ଧାର ଲୁହ ମଧ୍ୟ ଆସି ଯାଇଥିଲା । ଯେଉଁଦିନ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରୁ ସ୍ଥାନାନ୍ତର ପ୍ରମାଣପତ୍ର ନେଇ ବିଶ୍ୱଭାରତୀରେ ପ୍ରଦାନ କରିଥିଲି । ମାତ୍ର ଓଡ଼ିଆ ବିଭାଗ, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ସମୃଦ୍ଧି ପାଇଁ ସଂକଳ୍ପବଦ୍ଧ ଓ ସମଗ୍ର ଜୀବନ ଉତ୍ସର୍ଗୀକୃତ । ଏ ବିଭାଗ ଆମର ଓ ଏହି ବିଭାଗ ପାଇଁ ଆମେ ଗର୍ବିତ ।

•

*ଅଧ୍ୟାପକ, ଗୋପବନ୍ଧୁ ବିଜ୍ଞାନ ମହାବିଦ୍ୟାଳୟ,*
*ଆଠଗଡ଼, କଟକ*

# ସ୍ମୃତି : ତାହା ଭୁଲି ହୁଏନା

ଅଧ୍ୟାପକ ରବୀନ୍ଦ୍ର କୁମାର ପଣ୍ଡା

ମୁଁ କିଏ ? କ'ଣ ମୋର ପରିଚୟ ? ଆଜି କିଛି ଲେଖିଲା ବେଳେ ଭାବେ କାହିଁକି ଏହା ଲେଖୁଛି ? ଆଉ କ'ଣ ଲେଖିବି ? ଏମିତି ଅନେକ ପ୍ରଶ୍ନର ସନ୍ଧାନ ପଥରେ ମନ ମୋର ଫେରିଯାଏ ସେଇ ଦିନଗୁଡ଼ିକୁ, ଯେଉଁଦିନ ମୁଁ ମୋ ପରିଚୟର ଆଭାସ ପାଇଥିଲି । ବିଶ୍ୱବିଦ୍ୟାଳୟରେ ବିତେଇଥିବା ସେଇ ସୁବର୍ଣ୍ଣ ଦିନଗୁଡ଼ିକୁ । ମୋର ସ୍ମୃତିକୁ ଆଲୋକବର୍ତ୍ତିକା କରି ଚାଲିଛି ମୋର ଜୀବନ ପଥରେ । ସବୁ ତ ପାଇଛି । ଆଉ କିଛି ରହିଯାଇନି ତ ! କଲେଜ ସମୟର କଥା । ଥରେ ଜଣେ ସାରଙ୍କ ସହ ଗୋପାଳପୁର ଯାଉଥାଏ । ବସ୍ ଯାତ୍ରା ସମୟରେ ହଠାତ୍ ଗୋଟିଏ ସ୍ଥାନରେ ସେ ବାହାରକୁ ମୁହଁ କାଢ଼ି ମୁଣ୍ଡିଆଟିଏ ମାରିଲେ । ଦେଖିଲି ଆଖପାଖରେ ମନ୍ଦିର ତ ନାହିଁ ତେବେ ! ପଚାରିବାରୁ ସାର୍ କହିଲେ, "ଏଇଟା ୟୁନିଭରସିଟି; ବ୍ରହ୍ମପୁର ୟୁନିଭରସିଟି- କୌଣସି ଦେବାଳୟ ଠାରୁ କମ୍ ନୁହେଁ । ସେଦିନ ତାଙ୍କ କଥାକୁ ପ୍ରକୃତରେ ବୁଝି ନଥିଲି । ବୁଝିଲି ସେଇଦିନ, ଯେଉଁଦିନ ଯାଇ ପାଦ ଦେଲି ସେଇ ପବିତ୍ର ଭୂଇଁରେ । କେତେ ମହର୍ଷି, ବିଦ୍ୱାନ୍‌ଙ୍କର ସାଧନାସ୍ଥଳୀ ଏଇ ବିଶ୍ୱବିଦ୍ୟାଳୟ । ପ୍ରକୃତରେ ବିଶ୍ୱବିଦ୍ୟାଳୟ କ'ଣ, ଆଗରୁ କେବେ ଦେଖିନଥିଲି । ପ୍ରଥମତଃ ଓଡ଼ିଆ ସ୍ନାତକୋତ୍ତର ଶ୍ରେଣୀରେ ନାମ ଲେଖାଇ ମାତୃଭାଷାର ସେବାର ସୁଯୋଗ ପାଇଲି । ଦ୍ୱିତୀୟତଃ ସେଇ ତୀର୍ଥସ୍ଥଳୀରେ ବିହାର କରିଥିଲେ ସାହିତ୍ୟମାତାର ଯୋଗ୍ୟତମ ସନ୍ତାନ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ବୋଲି ମୋର ଅନୁମାନ ହେଲା । ସେଇ ଭଞ୍ଜବିହାରରେ ନାମ ଲେଖାଇ ମୁଁ ଗର୍ବିତ ହୋଇଥିଲି । ଜୀବନ କିପରି ବଞ୍ଚିବାକୁ ହୁଏ, ସେ କୌଶଳ ମୁଁ ଶିଖିଲି ମୋ ବିଭାଗର ଅଧ୍ୟାପକମାନଙ୍କ ଠାରୁ । ପାଠ ପଢ଼ାଇବାର ସେ ଯେଉଁ ଅଦ୍ଭୁତ ଶୈଳୀ, ତା ସାଙ୍ଗକୁ ଉଦାହରଣ ମାଧ୍ୟମରେ କଠିନ ବିଷୟର ସରଳୀକରଣ, ଲାଗୁଥାଏ ମୋର ଯେମିତି ନିଜ ପ୍ରତି ଏକ ବିଶ୍ୱାସ ବଢ଼ିଚାଲିଛି । ଆଉ ଯେତେବେଳେ ବାଟ ଭୁଲି ଅବାଟକୁ ଯିବାକୁ ମନ ଛନଛନ ହୋଇଛି, ଛାଟଟିଏ ଧରି ବାପା ମା' ପରି ଶିକ୍ଷକମାନେ ଆକଟିଛନ୍ତି । ସେଦିନ ବଡ଼ ଭାଇଭଉଣୀଙ୍କ ଠାରୁ ସ୍ୱାଗତ ପାଇ ସାହିତ୍ୟ ବିଭାଗ ପରିବାରର ସଦସ୍ୟ ହୋଇ ବହୁ ଖୁସି ଲାଗିଥିଲା । ସେମାନଙ୍କୁ ଅଶ୍ରୁଳ ବିଦାୟ ଦେଇ କାନ୍ଦିଥିଲୁ ଅନେକ । ଆଉ ଯେଉଁଦିନ ଆମେ ବିଦାୟ ନେଲୁ, ସେଦିନ ଲାଗିଲା- ହୃଦୟଟା ଯେମିତି ଶୂନ୍ୟ ହୋଇଗଲା । ସେଇ ଶୂନ୍ୟସ୍ଥାନ ଅପୂରଣୀୟ ହୋଇ ରହିଗଲା ସବୁଦିନ ପାଇଁ ।

ମୋ ଜୀବନ ଅଟ୍ଟାଳିକାର ସୁଦୃଢ଼ ସ୍ତମ୍ଭମାନ ଥିଲେ ମୋ ବିଭାଗର ଶିକ୍ଷକମାନେ । ଦେବୀସାର୍ ଓ ଅଶ୍ୱିନୀସାର୍ ଉଭୟ ପରିବାରର ଜ୍ୟେଷ୍ଠ । ଉଭୟଙ୍କୁ ଦେଖିଲେ ସମ୍ମାନରେ ସଦା ତଳକୁ ନଇଁ ଆସେ ମୁଣ୍ଡ । ସେମାନେ ସବୁବେଳେ କହନ୍ତି, ଯାହା ଦରକାର

ଆମକୁ କହିବ । କେବେ କାହାକୁ କେଉଁ କଥାରେ ମନା କରିବା ମୁଁ କେବେ ବି ଶୁଣି ନାହିଁ ଉଭୟଙ୍କ ମୁହଁରୁ । ଆଉ ପ୍ରସନ୍ନ ସାର୍, ନାଁଟି ପରି ସଦା ପ୍ରସନ୍ନ । କାହିଁକି କେଜାଣି ପିଲାମାନେ ତାଙ୍କୁ ବେଶି ଭୟ କରନ୍ତି । ମୁଁ କିନ୍ତୁ କେବେ ସେଭଳି ଅନୁଭବ କରିନି । ହଁ ଅନ୍ୟାୟ ଓ ଭୁଲ୍ କଥାକୁ ସେ କେବେ ପ୍ରଶ୍ରୟ ଦିଅନ୍ତିନି । ଅବାଟରୁ ଟାଣି ଆଣିବାର ଯେଉଁ ଛୋଟ କଥା ପୂର୍ବେ କହିଥିଲି, ସେଇ ଅଦୃଶ୍ୟ ଛାଟଟି ଥିଲା ତାଙ୍କ ପାଖରେ । ଜୀବନରେ ଆଜି ଯେଉଁଠି ବି ପହଁଞ୍ଚିଛି ତା'ର ବଡ଼ ଶ୍ରେୟ ଦେବି ସେଇ ପ୍ରସନ୍ନ ସାର୍‌ଙ୍କୁ । ତାଙ୍କ ପାଖରେ ମୁଁ କୃତଜ୍ଞ । ମୋ'ର କ୍ଷୁଦ୍ର ଜୀବନର ମହତ୍ତ୍ୱପୂର୍ଣ୍ଣ ଅଙ୍ଗ ସଦାନନ୍ଦ ସାର୍ । ସେ ତ ଖାଲି ଶିକ୍ଷକ ନଥିଲେ ଥିଲେ ଜଣେ ବନ୍ଧୁ । ଜୀବନର ସବୁ ଟିକିନିଖି କଥା ତାଙ୍କ ସହ ବାଣ୍ଟିଛି । ତାଙ୍କ ଠାରୁ ବହୁତ ଶିଖିଛି ଆଉ ଶିଖୁଛି ମଧ୍ୟ । କେହି ଯଦି କହିଦିଏ, ତୁ କ'ଣ ସଦାନନ୍ଦ ସାର୍‌ଙ୍କ ପରି କହୁଛୁ । କାହିଁକି କେଜାଣି ଛାତି କୁଣ୍ଢେ ମୋଟ ହୋଇଯାଏ । ସେ ଥିଲେ ପ୍ରେରଣାର ସ୍ରୋତ । ମୋ ହୃଦୟର ଖୁବ୍ ନିକଟ । ବିଭାଗର ଆଉ ଦୁଇଜଣ ଶିକ୍ଷକ ସମୀର ସାର୍ ଓ ଦେବୀପ୍ରସାଦ ସାର୍ ମଧ୍ୟ ନିଜର ସ୍ନେହ ଶ୍ରଦ୍ଧା ବାଢ଼ି ଦେବାରେ କେବେ କୃପଣ କରିନାହାନ୍ତି । ସବୁବେଳେ କିଛି ନା କିଛି ନୂଆ କଥା ତାଙ୍କ ଠାରୁ ଶିଖିବାକୁ ମିଳିଛି । ବିଭାଗର ଅନ୍ୟ ସଦସ୍ୟମାନେ ବି ମତେ ଭଲ ପାଆନ୍ତି । ମୁଁ ଈଶ୍ୱରଙ୍କୁ ପ୍ରାର୍ଥନା କରେ ସବୁବେଳେ ସେମାନଙ୍କ ପାଖରେ ମୁଁ ଯେମିତି ସେଇ ସାନ ରବି ହୋଇ ରହିଥିବି ।

ସୁଖର ଦିନଗୁଡ଼ାକ କେତେ ଶୀଘ୍ର ସରିଯାଏ । କଣ୍ଟିଲୋ ନୀଳମାଧବ ଓ ହରିଶଙ୍କରରେ ପିକ୍‌ନିକ୍, ବିଶ୍ୱବିଦ୍ୟାଳୟରେ ଆୟୋଜିତ ପାଠଚକ୍ର, ଆଉ ଯେତେବେଳେ ସିଲେକସନ୍ ବୋର୍ଡ଼ ଦ୍ୱାରା ଅଧ୍ୟାପକ ଭାବେ ମୋର ଚୟନ ହେଲା, ସେତେବେଳେ ମୋ ସାର୍‌ମାନଙ୍କ ଆଖିର ଚମକ, ଆଜି ବି ଅଭୁଲା ସ୍ମୃତି ହୋଇ ରହିଛି । ଅନେକ ବିଶ୍ୱବିଦ୍ୟାଳୟ ବୁଲିଛି । କାହିଁ କେଉଁଠାରେ ତ ଏତେ ଆନନ୍ଦ ପାଇନି । ଖାଲି ଅବସୋସ ରହିଛି, କେତେବେଳେ ମୁଁ ପୁଣି ଥରେ ଫେରିଆସିବି ମୋର ଏଇ ପୁରୁଣା ଘରକୁ । ସାଉଁଟିବି ସେଇ ବାକି ରହିଯାଇଥିବା ମୁହୂର୍ତ୍ତକୁ । ସଭିଙ୍କ ଆଶୀର୍ବାଦରୁ ଆଜି ସରକାରୀ କଲେଜରେ ଅଧ୍ୟାପକ ଭାବେ ନିଯୁକ୍ତି ହେବାର ସୁଯୋଗ ପାଇଛି । ସେଥିପାଇଁ ମତେ ଯଦି କେହି ଯୋଗ୍ୟ କରିଚି, ସେ ହେଉଛି ମୋର ଏଇ ସ୍ନାତକୋତ୍ତର ଓଡ଼ିଆ ବିଭାଗ, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ । ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଏଇ ସ୍ମୃତି ମୋର ହୃଦୟରେ ଅକ୍ଷତ ରହିଥିବ । ଆଜି ବିଶ୍ୱବିଦ୍ୟାଳୟରେ ମୋ ବିଭାଗର ୫୦ବର୍ଷ ପୂର୍ତ୍ତି ଅବସରରେ ମୋ' ସାଉଁଟା ସ୍ମୃତିକୁ ଲେଖାର ରୂପ ଦେଇ ମୁଁ ଆନନ୍ଦିତ ଓ ଗର୍ବିତ ।

•

*ଅଧ୍ୟାପକ, ଓଡ଼ିଆ ବିଭାଗ,*
*ବିନାୟକ ଆଚାର୍ଯ୍ୟ କଲେଜ, ବ୍ରହ୍ମପୁର*

# ବିଶ୍ୱବିଦ୍ୟାଳୟରେ ମୋ ସମୟ

**ଅଧ୍ୟାପିକା ଦୀପାଶ୍ରୀ ମହାପାତ୍ର**

ମୋ ଜୀବନର ସ୍ରୋତ ବହି ଚାଲିଛି ଅବିରାମ ଗତିରେ । ସୁଖ, ଦୁଃଖ, ମିଠା ଅନୁଭୂତି ଓ ସ୍ମୃତିର ସମାହାରକୁ ନେଇ ମୋ ଏ କ୍ଷୁଦ୍ର ଜୀବନ । ସ୍ମୃତି ତ ଅନେକ, କିନ୍ତୁ କିଛି ସ୍ମୃତି ଅଭୁଲା । କିଛି ଅନୁଭୂତି ଜୀବନରେ ସ୍ୱତନ୍ତ୍ର । ଯାହା ଜୀବନର ଗତିପଥ ବଦଳାଇ ଦିଏ । ତାକୁ ହିଁ ପାଥେୟ କରି ଗଡ଼ିଚାଲେ ଜୀବନ ରଥ । ସେହିପରି ଏକ ଅନୁଭୂତି ହେଉଛି ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ବିତାଇଥିବା ମୋର ସମୟ ।

ଘର ଠାରୁ ବହୁ ଦୂରରେ ହଷ୍ଟେଲ୍‌ରେ ଆସି ରହିବାର ଅନୁଭୂତି କେବେ ନଥିଲା । ଯେତେବେଳେ ବିଶ୍ୱବିଦ୍ୟାଳୟରେ ଓଡ଼ିଆ ସ୍ନାତକୋତ୍ତର ଶ୍ରେଣୀରେ ନାମ ଲେଖାଇଲି, ହଷ୍ଟେଲ୍‌ରେ ରହିବା ବ୍ୟତୀତ ଅନ୍ୟ ଉପାୟ ନଥିଲା । ମନରେ ଭୟ ଥିଲା ଅନେକ । କିଛି ଦିନ ଭିତରେ ଏ ବିଶ୍ୱବିଦ୍ୟାଳୟ ମୋର ଅତି ଆପଣାର ହୋଇଗଲା । ସେହି ସମୟରେ ମୁଁ ଯେଉଁମାନଙ୍କ ସଂସ୍ପର୍ଶରେ ଆସିଲି, ସେମାନଙ୍କ ସ୍ଥାନ ମୋ ପାଖରେ ହୋଇଗଲା ସ୍ୱତନ୍ତ୍ର । ମୁକ୍ତ ପକ୍ଷୀଟିଏ ପରି ଉଡ଼ିଲା ମୋର ମନ ସେହି ମନୋହର ପରିବେଶରେ । ଏତେ ଖୁସି, ଏତେ ମିଠା ଅନୁଭୂତି ସତରେ ଆଗରୁ କେବେ ଅନୁଭବ କରି ନଥିଲି ।

ନିଜ ଘର ପରିବାର ପରେ ଓଡ଼ିଆ ବିଭାଗ ହେଲା ମୋର ଦ୍ୱିତୀୟ ପରିଚୟ; ମୋର ଠିକଣା । ମୁଁ ସୁଯୋଗ ପାଇଲି ସ୍ୱନାମଧନ୍ୟ ବିଶ୍ୱବିଦ୍ୟାଳୟର ଗୌରବାବହ ଓଡ଼ିଆ ବିଭାଗର ସଦସ୍ୟ ହେବାର । ସେଦିନ ପ୍ରକୃତରେ ମୁଁ ନିଜକୁ ଗର୍ବିତ ମନେ କଲି । ବଡ଼ ଭାଇଭଉଣୀଙ୍କ ସ୍ନେହ, ସହପାଠୀଙ୍କ ଅନ୍ତରଙ୍ଗ ବନ୍ଧୁତ୍ୱ ଓ ସାର୍‌ମାନଙ୍କର ସୁନ୍ଦର ପାଠପଢ଼ା ମୋର ପରିବାର ଠାରୁ ଦୂରରେ ରହିବାର ଦୁଃଖକୁ ପ୍ରଥମ ଥର ପାଇଁ ଭୁଲେଇ ଦେଇଥିଲା । ସ୍ୱାଗତ ସମ୍ବର୍ଦ୍ଧନା ଉତ୍ସବ । ଏଥିରେ ଶାଢ଼ୀ ପିନ୍ଧିବାର ଖୁସି ଥିଲା ନିଆରା । ବୋଧହୁଏ ନିର୍ଭୟ ବାତାବରଣ ଓ ଓଡ଼ିଆ ପରିବାରର ଆତ୍ମୀୟତା ଏ ଦିଗରେ ସାହସ ପ୍ରଦାନ କରିଥିଲା । ବିଭାଗ ଦ୍ୱାରା ଆୟୋଜିତ ପାଠଚକ୍ରଗୁଡ଼ିକରେ ଭାଗ ନେଇ ଅନେକ ଶିକ୍ଷଣୀୟ କଥା ଜାଣିବାର ସୁଯୋଗ ମିଳିଥିଲା । ଯେଉଁ ସମାଲୋଚକମାନଙ୍କ ପୁସ୍ତକ ପଢୁଥିଲି ସେମାନଙ୍କୁ ଆଖି ଆଗରେ ତର୍କ ସଙ୍ଗତ ଆଲୋଚନା କରିବାର ଦେଖି ବହୁତ ଖୁସି ଲାଗିଥିଲା । ସତରେ ସେହିଦିନ ଠାରୁ ପାଠ ପଢ଼ିବାର ଏକ ଅପୂର୍ବ ଆଗ୍ରହ ସୃଷ୍ଟି ହେଲା ମୋର ମନରେ ।

କେବଳ ପାଠପଢ଼ା ନୁହେଁ, ଅନେକ ସୁଖର ମୁହୂର୍ତ୍ତ ମଧ୍ୟ ମୁଁ ସେଠି ବିତାଇଛି । ଓଡ଼ଗାଁ ରଘୁନାଥ ଜୀଉ ପୀଠ ହେଉ ଅବା କଣ୍ଟିଲୋ ନୀଳମାଧବରେ ପିକ୍‌ନିକ୍ । ଆଉ ବସ୍‌ରେ ରାତିସାରା ଉଜାଗର ରହି ନୃସିଂହନାଥ ଓ ହରିଶଙ୍କରକୁ ଯାତ୍ରାର ସ୍ମୃତି ଜୀବନରେ ଭୁଲିବା ଅସମ୍ଭବ । ଏମିତି ଅନେକ ଅପାସୋରା ଅନୁଭୂତିକୁ ମୁଁ ସାଉଁଟିଥିଲି ସେହି ଦିନମାନଙ୍କରେ । ମୋ ବାପା, ମା' ମତେ ନେଇ ଯେଉଁ ସ୍ୱପ୍ନ ଦେଖିଥିଲେ, ତାକୁ ସାକାର ରୂପ ପ୍ରଦାନ କରିଥିଲେ ମୋର ଅଧ୍ୟାପକମାନେ । ତାଙ୍କର ଆଶୀର୍ବାଦରୁ ହିଁ ମୁଁ ସିଲେକ୍‌ସନ୍ ବୋର୍ଡ଼ ଦ୍ୱାରା ଅଧ୍ୟାପିକା ଭାବରେ ଚୟନ ହୋଇଥିଲି । ମୋ ଶିକ୍ଷକମାନଙ୍କ ସହଯୋଗ ଓ ଶିକ୍ଷା ପାଇଁ ମୁଁ ତାଙ୍କ ନିକଟରେ ଚିର କୃତଜ୍ଞ । ଆଜି ସେହି ଦିନଗୁଡ଼ିକୁ ମୁଁ ମନେ ପକାଏ । ଭାବେ, ସତରେ ଆଉ ଥରେ ଫେରି ଆସନ୍ତାନି କି ସେ ସୁଖର ଦିନ । କେତେ ଭଲ ହୁଅନ୍ତା ସତେ !

ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗ ତା'ର ପଚାଶ ବର୍ଷ ପୂରଣ କରିବାକୁ ଯାଉଛି । ଦୀର୍ଘ ଅର୍ଦ୍ଧ ଶତାବ୍ଦୀର ନିରବଚ୍ଛିନ୍ନ ସେବା ସାଙ୍ଗକୁ ଅନେକଙ୍କୁ ଉଚ୍ଚତାର ଚରମ ସୀମାରେ ପହଞ୍ଚାଇଛି ଏ ବିଭାଗ । ସତରେ ଏଇ ମୁହୂର୍ତ୍ତରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଓ ମୋର ଓଡ଼ିଆ ବିଭାଗକୁ ମୁଁ ଦୀପାଶ୍ରୀ ମଥାପାତି ପ୍ରଣାମ କରୁଛି । ଏଠାରେ ଅଧ୍ୟୟନ କରି ନିଜକୁ ଗର୍ବିତ ମନେ କରୁଛି ।

•

*ଅଧ୍ୟାପିକା ଓଡ଼ିଆ ବିଭାଗ,*
*କବିସମ୍ରାଟ ଉପେନ୍ଦ୍ରଭଞ୍ଜ ମହାବିଦ୍ୟାଳୟ,*
*ଭଞ୍ଜନଗର*

# ଜୀବନର ମଧୁର ମଧ୍ୟାନ୍ତର : ଭଞ୍ଜବିହାର

ଡ. ଶରତ କୁମାର ଜେନା

କେନ୍ଦୁବାଡ଼ିରୁ କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ ଆସିବା ନିମନ୍ତେ ଯିଏ ମୋ ହୃଦୟରେ ଶିକ୍ଷା ଓ ଦୀକ୍ଷାର ପ୍ରେରଣା ଭରି ଦେଉଥିଲା, ସିଏ ହେଲା ଭଞ୍ଜବିହାର । ଯିଏ ଏବେ ବି ମୋ ସ୍ମୃତିରେ ଉଜ୍ଜୀବିତ, ସଜଳ ଓ ଚଳଚଞ୍ଚଳ । ଏବେ କାହିଁକି, ଯେବେ ବି ମୁଁ ସ୍ମୃତିର ଆଇନାରେ ପଛକୁ ଫେରିଚାହେଁ, ସେତେବେଳେ ଜଳଜଳ ହୋଇ ଦେଖାଯାଏ ଭଞ୍ଜବିହାରର ଅଭୁଲା ଅତୀତ; ଯାହାର ମାଟି, ପାଣି, ପବନର ଦୃଶ୍ୟ ମୋତେ ଏବେ ବି ପୁଲକିତ ଓ ଚମକିତ କରେ । ସେ ମୋତେ ଶିଖେଇଥିଲା ଜୀବନ ବଞ୍ଚିବାର କୌଶଳ, ଦେଖେଇଥିଲା ଜୀବନକୁ ଚାଲିବାର ରାସ୍ତା । ତା'ରି କୋମଳ କୋଳରେ ମୁଁ ପଢ଼ିବା ଶିଖିଛି, ଗଢ଼ିବା ଶିଖିଛି, ବନ୍ଧୁ ବାନ୍ଧିବାର ତରିକା ଶିଖିଛି । ସେଇଠି ମୁଁ କବିତା ଲେଖିଛି, ଚିତ୍ର ଆଙ୍କିଛି, ପ୍ରେମ କରିଛି, ହସିଛି, କାନ୍ଦିଛି, ଖେଳିଛି, ବୁଲିଛି, ଜୀବନକୁ ଜୀବନ ଭଳି ଦେଖିଛି । ସତେ ଯେମିତି 'ଭଞ୍ଜବିହାର: ମୋ ଜୀବନର ମଧୁର ମଧ୍ୟାନ୍ତର' ।

୧୯୯୪ ମସିହା । କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ମହାବିଦ୍ୟାଳୟ, ଭଞ୍ଜନଗରରୁ ଓଡ଼ିଆ ଅନର୍ସରେ ବି.ଏ. ପରୀକ୍ଷା ଦେଇ ଘରେ ଥାଏ । ପରୀକ୍ଷାଫଳ ପ୍ରକାଶ ପରେ ଶୁଣିଲି ଯେ, ମୁଁ ବିଶ୍ୱବିଦ୍ୟାଳୟ ସ୍ତରରେ ଓଡ଼ିଆ ଅନର୍ସରେ ଟପ୍ପର ହୋଇଛି । ସେହିବର୍ଷ ପ୍ରଥମ ଥର ପାଇଁ ଭଞ୍ଜବିହାରରେ ଏମ୍.ଏ. ଏନ୍‌ଟ୍ରାନ୍ସ ପରୀକ୍ଷା ନିମନ୍ତେ ଦୁଇ ମାସ ପୂର୍ବରୁ ଫର୍ମ ଫିଲ୍‌ଅପ୍ ସରିଥାଏ । ଗାଁରେ ରହୁଥିବା ଯୋଗୁଁ ଏଣ୍ଟ୍ରାନ୍ସ ପରୀକ୍ଷା ସମ୍ପର୍କରେ କିଛି ଖବର ରଖି ନଥିଲି କି ଏପ୍ଲାଏ କରି ନଥିଲି । ତଥାପି ଅନ୍ୟାନ୍ୟ ସାଙ୍ଗସାଥୀମାନଙ୍କଠୁ ଶୁଣି ଭଞ୍ଜବିହାରରେ ପଢ଼ିବାର ସ୍ୱପ୍ନଟିଏ ମନ ଭିତରେ ଉଙ୍କି ମାରିଥାଏ । ସେଇ ସ୍ୱପ୍ନର ସାର୍ଥକତା ନିମନ୍ତେ ଅର୍ଥାତ୍ କୌଣସି ପ୍ରକାରେ ଭଞ୍ଜବିହାର ଓଡ଼ିଆ ବିଭାଗରେ ଜଏନ୍ କରିବା ନିମନ୍ତେ ଦିନେ ଭଞ୍ଜବିହାର ଯାଇ ତତ୍‌କାଳୀନ ଓଡ଼ିଆ ବିଭାଗ ମୁଖ୍ୟ ଡ. ଦେବୀପ୍ରସନ୍ନ ପଟ୍ଟନାୟକଙ୍କ ସହ ଦେଖାକଲି । ସେବର୍ଷ ଆଉ ଜଏନ୍ ହୋଇପାରି ନାହିଁ ଓ ଆସନ୍ତା ବର୍ଷ ପୁଣି ଥରେ ଆବେଦନ କରିବାର ପ୍ରତିଶ୍ରୁତି ନେଇ ଫେରି ଆସିଲି । ସେ ବର୍ଷ ପାଠପଢ଼ାରୁ ବଞ୍ଚିତ ରହିଲି । ବିଶ୍ୱବିଦ୍ୟାଳୟର ଟପ୍ପର୍ ହୋଇ ବି ପଢ଼ି ନପାରିବାର ଅବସୋସ ମୋ ଭିତରେ ଯେତିକି ନଥିଲା, ଭଞ୍ଜବିହାରକୁ ଗୋଟିଏ ବର୍ଷ ହରାଇବାର ଅବସୋସ ତା'ଠାରୁ ଅଧିକ ଥିଲା ।

୧୯୯୫ ମସିହା ଅଗଷ୍ଟ ମାସରେ ଭଞ୍ଜବିହାର ଓଡ଼ିଆ ବିଭାଗରେ ଏମ୍.ଏ. ଶ୍ରେଣୀରେ ଜଏନ୍ କଲି । ଭଞ୍ଜନଗର ତଥା ଅନ୍ୟାନ୍ୟ ବି.ଏ. ଶ୍ରେଣୀର ସହପାଠୀମାନେ

ପୂର୍ବବର୍ଷ ଜଏନ୍ କରିସାରିଥା'ନ୍ତି । ତେଣୁ ପୂର୍ବବର୍ଷ ଓ ମୋ ବର୍ଷ- ଦୁଇ ବର୍ଷର ଛାତ୍ରଛାତ୍ରୀମାନଙ୍କ ସହ ମୋର ଉତ୍ତମ ବନ୍ଧୁତା ସ୍ଥାପିତ ହୋଇଥିଲା । ମୋର ପ୍ରଥମ ବର୍ଷ ବେଳକୁ ଭଞ୍ଜବିହାରର ଶୈକ୍ଷିକ ବାତାବରଣ ବେଶ୍ ଭଲ ଥିଲା । ପ୍ରଫେସର ସୁଦର୍ଶନ ଆଚାର୍ଯ୍ୟ, ପ୍ରଫେସର ଦାଶରଥି ଦାସ, ଡ. ବାଉରୀବନ୍ଧୁ କର, ଡ. ଅଶ୍ୱିନୀ କୁମାର ପଣ୍ଡା, ଡ. ଦେବୀପ୍ରସନ୍ନ ପଟ୍ଟନାୟକ ଓ ଡ. ପୂର୍ଣ୍ଣଚନ୍ଦ୍ର ମିଶ୍ର ଓଡ଼ିଆ ବିଭାଗର ଅଧ୍ୟାପକ ଭାବେ ଶିକ୍ଷାଦାନ କରୁଥିଲେ । ଦିନ ଦଶଟାରୁ ଅପରାହ୍ଣ ୪ଟା ପର୍ଯ୍ୟନ୍ତ ପାଠପଢ଼ା ହେଉଥିଲା ।

ପ୍ରଫେସର ସୁଦର୍ଶନ ଆଚାର୍ଯ୍ୟ ଜଣେ ଶାଳପ୍ରାଂଶୁ ଓ ସୁଦର୍ଶନ ଚେହେରା ସମ୍ପନ୍ନ ବ୍ୟକ୍ତିତ୍ୱ । ମୁଖମଣ୍ଡଳର ଗାମ୍ଭୀର୍ଯ୍ୟ ତାଙ୍କର ବୌଦ୍ଧିକତାକୁ ଅଧିକ ପ୍ରସ୍ଫୁଟିତ କରୁଥିଲା । ସଫାରି ପରିଧାନ କରି ହାତରେ ଗୋଟେ ଆଟାଚ୍ ଧରି ବସ୍‌ରୁ ଓହ୍ଲେଇ କରିଡ଼ର ଦେଇ ଓଡ଼ିଆ ବିଭାଗକୁ ପଶିଲା ବେଳକୁ ରାସ୍ତା ପାର୍ଶ୍ୱରେ ଠିଆ ହୋଇଥିବା ଛାତ୍ରଛାତ୍ରୀଙ୍କ ମଥା ନଇଁ ଆସୁଥିଲା । ସେ ଆମକୁ 'କର୍ପୂର ମଞ୍ଜରୀ' ସଟ୍ଟକ, ପୁରାଣ ସାହିତ୍ୟ ଓ ରସ, ରୀତି, ଗୁଣାଦି ପ୍ରାଚ୍ୟ ସାହିତ୍ୟ ତତ୍ତ୍ୱ ଓ ମଧ୍ୟଯୁଗୀୟ କାବ୍ୟ ପଢ଼ାଉଥିଲେ । ସଂସ୍କୃତ ଶ୍ଳୋକମାନଙ୍କୁ ସେ ଅନର୍ଗଳ ଉଚ୍ଚାରଣ କରୁଥିଲେ ଓ କଳାପଟାରେ ଲେଖୁଥିଲେ । ତାଙ୍କର ବିଦ୍ୟାଦାନ କୌଶଳ ବେଶ୍ ହୃଦୟସ୍ପର୍ଶୀ ଥିଲା ।

ପ୍ରଫେସର ଦାଶରଥି ଦାସ ଆମକୁ 'ରାସପଞ୍ଚାଧ୍ୟାୟୀ' ଓ 'କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ' ପଢ଼ାଉଥା'ନ୍ତି । ପଦାବଳୀ ସାହିତ୍ୟ, ବୈଷ୍ଣବ ତତ୍ତ୍ୱ ଓ ରାଧାକୃଷ୍ଣ ପ୍ରେମାଖ୍ୟାନ ପଢ଼ାଇଲା ବେଳେ ସେ ବିମୁଗ୍ଧ ହୋଇଯାଆନ୍ତି । ସେ ଗୋଟିଏ ବିଷୟକୁ ବୁଝେଇ ଶେଷ ପଦଟି ଛାଡ଼ି ଦେଉଥିଲେ, ଯାହାକୁ ଆମେ ପୂରଣ କରୁଥିଲୁ ।

ବାଉରୀ ସାର୍ ପଢ଼େଇଲା ବେଳେ ଭାରି ଭାବପ୍ରବଣ ଓ ଗଦ୍‌ଗଦ୍ ହୋଇପଡୁଥିଲେ । 'କୁମାର ସମ୍ଭବମ୍'ର ପାର୍ବତୀଙ୍କୁ କିମ୍ବା 'ପରଜା' ଉପନ୍ୟାସର ଆଦିବାସୀ ମହିଳା ସମ୍ପର୍କରେ ପଢ଼େଇଲା ବେଳେ ସେ ଭାବବିହ୍ୱଳ ଓ ରସିକ ସ୍ୱଭାବ ମନେ ହୁଅନ୍ତି । ଶ୍ଳୀଳ ଅଶ୍ଳୀଳ ଊର୍ଦ୍ଧ୍ୱକୁ ଉଠି ସେ ଅନେକ କଥାକୁ ବ୍ୟଞ୍ଜନାରେ ପରିପ୍ରକାଶ କରନ୍ତି । ପ୍ରବନ୍ଧର ଅନେକ ପଙ୍‌କ୍ତି ତାଙ୍କର ମନରେ ରହିଥାଏ ।

ଅଶ୍ୱିନୀ ସାର୍‌ଙ୍କ ପାଠଦାନ ଶୈଳୀ ଟିକେ ସ୍ୱତନ୍ତ୍ର । ସେ ସବୁଦିନେ ଉପରବେଳା ତିନିଟା କିମ୍ବା ଚାରିଟା ପରେ ଆସି ପିଲାଙ୍କୁ ଖୋଜନ୍ତି ଓ ଯେତେ ଜଣ ଥାଆନ୍ତି ସେମାନଙ୍କୁ ନେଇ କ୍ଲାସ୍ କରନ୍ତି । ଭାଷା ବିଜ୍ଞାନ ଓ ଧ୍ୱନି ବିଜ୍ଞାନକୁ ସେ ବ୍ୟାବହାରିକ ଢଙ୍ଗରେ ବୁଝେଇବାକୁ ଚେଷ୍ଟା କରନ୍ତି । ବେଳେବେଳେ କରିଡ଼ର୍‌ରୁ ଆରମ୍ଭ କରି ଆନନ୍ଦ ବଜାର, ଚା'ଖଟି ଯାଏ, ଏପରିକି ବେଳେବେଳେ ହନୁମାନ ମନ୍ଦିର ଯାଏ ଗପ କରିବା ଭିତରେ ତାଙ୍କର ପାଠପଢ଼ା ଚାଲିଥାଏ ।

ଦେବୀସାର୍‌ଙ୍କ ପାଠଦାନ ଶୈଳୀ ସମ୍ଭ୍ରାନ୍ତସୁଲଭ ଓ ଗାମ୍ଭୀର୍ଯ୍ୟପୂର୍ଣ୍ଣ । ପାଠ ପଢ଼ାଇବା ବେଳେ ସାର୍‌ଙ୍କ ଶାବ୍ଦିକ ବିନ୍ୟାସ ଓ ଶାରୀରିକ ଭାଷା ମୋତେ ଚମତ୍କୃତ କରେ । ପାଶ୍ଚାତ୍ୟ ସାହିତ୍ୟ ତତ୍ତ୍ୱ ହେଉ, କି ଆଧୁନିକ କାବ୍ୟ କବିତା ହେଉ ପଢ଼େଇବା ବେଳେ ସାର୍‌ଙ୍କ ହୃଦୟ ନିଃସୃତ ଶବ୍ଦ ସବୁ ଆପେଆପେ ଝରିଆସେ ଓ ସ୍ୱତନ୍ତ୍ର ବ୍ୟକ୍ତିତ୍ୱଟିଏ ବାରି ହୋଇପଡ଼େ । ତଥାକଥିତ ଓଡ଼ିଆ ଅଧ୍ୟାପକମାନଙ୍କ ମଧ୍ୟରେ ସେ ଏକ ବ୍ୟତିକ୍ରମ । ସାର୍‌ଙ୍କ ଠାରୁ ଶବ୍ଦ ପ୍ରୟୋଗ ବିଧି ଓ ବାକ୍ୟ ବିନ୍ୟାସ ଅନେକ ସମୟରେ ମୁଁ ଶିଖିବାକୁ ଚେଷ୍ଟା କରିଛି ।

ପୂର୍ଣ୍ଣ ସାର୍ ଆମକୁ 'ପାଲି ଧମ୍ମପଦ' ଓ 'ଚର୍ଯ୍ୟାଗୀତିକା' ପଢ଼ାଉଥାନ୍ତି । ଗୋଟିଏ ପୁରୁଣା ଟିପାଖାତାରୁ ଦେଖି ଡାକିଦେଲେ ତାକୁ ପିଲାମାନେ ଲେଖିଯା'ନ୍ତି । ସେ ଖାତାଟି ଅନେକ ବର୍ଷ ପୂର୍ବରୁ ଓ ଅନେକ ବର୍ଷ ଯାଏଁ ଥିଲା । ତାହାରି ଭିତରେ ଅନେକ ମୌଳିକତା ଆମେ ଅନୁଭବ କରୁଥିଲୁ ।

ମୋର ଦ୍ୱିତୀୟ ବର୍ଷରେ ଦାଶରଥି ଦାସ ସାର୍ ଓ ପରବର୍ତ୍ତୀ ସମୟରେ ସୁଦର୍ଶନ ସାର୍ ସେବାନିବୃତ୍ତ ହୋଇଥିଲେ । ସେତେବେଳେ ମୁଁ ବିଭାଗର ପାଠଚକ୍ର ସମ୍ପାଦକ ଥିଲି । ଦୁହିଁଙ୍କ ଉଦ୍ଦେଶ୍ୟରେ ଅଭିନନ୍ଦନ ସଭା ସହ ସ୍ମରଣିକା ପ୍ରକାଶ କରାଯାଇଥିଲା । ମୁଁ ସେଭଳି ଦୁଇ ଜଣ ବିଦ୍ୱାନ୍ ବ୍ୟକ୍ତିଙ୍କ ପାଖରେ ପ୍ରତ୍ୟକ୍ଷ ଛାତ୍ର ହେବାର ସୁଯୋଗ ଲାଭ କରିଥିବାରୁ ନିଜକୁ ଗୌରବାନ୍ୱିତ ମନେ କରୁଥିଲି ।

ଏମ୍.ଏ. ଶ୍ରେଣୀରେ ଦୁଇ ବର୍ଷ ଅଧ୍ୟୟନ ଭିତରେ ଦୁଇ ଥର ପିକ୍‌ନିକ୍ ହୋଇଛି । ଦୁଇ ଥର ପାଠ୍ୟଭ୍ରମଣ ନିମନ୍ତେ କୋରାପୁଟ, ଲକ୍ଷ୍ମୀପୁର, ଗୁପ୍ତେଶ୍ୱରାଦି ଯାତ୍ରା କରିଛୁ । ମୋର ହାତଲେଖାରେ ତିନି ଚାରି ଥର କାନ୍ଥ ପତ୍ରିକା 'ଯୁଗରୁଚି' ପ୍ରକାଶ ପାଇଛି ଓ 'ଆକାଂକ୍ଷା' ବି ପ୍ରକାଶ ପାଇଛି । ଗଣେଶ ପୂଜା, ସରସ୍ୱତୀ ପୂଜାଦି ବିଭିନ୍ନ ସାଂସ୍କୃତିକ କାର୍ଯ୍ୟକ୍ରମରେ ସମସ୍ତଙ୍କର ସହଭାଗିତା ଅନୁଭବ କରିଛି । ଛାତ୍ରଛାତ୍ରୀମାନଙ୍କ ମଧ୍ୟରେ ଯେଉଁ ସଦ୍‌ଭାବ ଓ ଅନ୍ତରଂଗତା ସ୍ଥାପିତ ହୋଇଥିଲା, ତାହା ଏବେ ବି ସତେଜ ରହିଛି ।

ବିଶ୍ୱବିଦ୍ୟାଳୟ ସ୍ତରୀୟ ବିଭିନ୍ନ କାର୍ଯ୍ୟକ୍ରମ ଓ ପ୍ରତିଯୋଗିତାରେ ଆମେ ଅଂଶଗ୍ରହଣ କରି ଓଡ଼ିଆ ବିଭାଗର ସୁନାମକୁ ବଜାୟ ରଖୁଥିଲୁ । ୧୯୯୬/୯୭ ମସିହାରେ ଦେବୀସାର୍‌ଙ୍କ ନେତୃତ୍ୱରେ ପଚାଶ ଜଣ ଆଧୁନିକ କବିଙ୍କ କବିତାକୁ ନେଇ ବିଭିନ୍ନ ଜାଗାରେ ଆବୃତ୍ତି କରିଥିଲେ ଓ ତା'ର ଭିଡ଼ିଓ ରେକର୍ଡ଼ିଙ୍ଗ କରାଯାଇଥିଲା । ଏହାର ସଂଯୋଜନା ଦାୟିତ୍ୱ ମୁଁ ନେଇଥିଲି । କୋରାପୁଟର ପରବ୍ ଯାତ୍ରା ସହ ବିଭିନ୍ନ ଅଞ୍ଚଳ ବୁଲି ଆଦିବାସୀ ଜୀବନ ଓ ସଂସ୍କୃତିର ଫଟୋ ଓ ଭିଡ଼ିଓ ସଂଗ୍ରହ କରିଥିଲି । ବିଭାଗର ପାଠାଗାରକୁ ସଜେଇବା ଠାରୁ ଆରମ୍ଭ କରି ବିଭାଗର ଯାବତୀୟ କାର୍ଯ୍ୟକ୍ରମରେ ଅଂଶଗ୍ରହଣ କରିବାରେ ମୁଁ ନିଜକୁ ଗର୍ବିତ ମନେ କରୁଥିଲି ।

ମୋର ଏମ୍.ଏ. ଶେଷ ହେବା ପରେ ବିଭାଗରେ ଡ. କୃଷ୍ଣଚନ୍ଦ୍ର ପ୍ରଧାନ, ଡ. ପ୍ରସନ୍ନ କୁମାର ସ୍ୱାଇଁ ଓ ଶ୍ରୀ ସଦାନନ୍ଦ ନାୟକ ନୂଆ କରି ଅଧ୍ୟାପକ ଭାବେ ଯୋଗ ଦେଲେ । ସେମାନଙ୍କ ସହ ମୋର ଶିକ୍ଷକ ତୁଲ୍ୟ ସମ୍ପର୍କ ରହିଆସିଛି । ପରବର୍ତ୍ତୀ ସମୟରେ ମୁଁ ସେଠାରେ ଗବେଷଣା କରିବା ସମୟରୁ ଏ ଯାବତ୍ ସେହି ଗୁରୁଶିଷ୍ୟ ସମ୍ପର୍କ ଅତୁଟ ରହିଛି ।

ଭଞ୍ଜବିହାର ଓଡ଼ିଆ ବିଭାଗ ସହିତ ମୋର ଦୀର୍ଘ ବର୍ଷର ସମ୍ପର୍କ । ୧୯୯୫ ମସିହାରୁ ୨୦୦୩ ମସିହା ଯାଏଁ ପ୍ରତ୍ୟକ୍ଷ ଭାବେ ଜଡ଼ିତ । ଋଷିକୁଲ୍ୟା ଛାତ୍ରାବାସରେ ଛଅ ବର୍ଷ ଓ ଯୋଗେନ୍ଦ୍ର ଛାତ୍ରାବାସରେ ତିନି ବର୍ଷ ରହି ବିଭାଗକୁ ମୁଁ ନିଜ ପରିବାର ମନେ କରିଛି । ଓଡ଼ିଆ ବିଭାଗରେ ଯୋଗଦେଇ ମୁଁ ସାହିତ୍ୟ ମନସ୍କ, କଳାମନସ୍କ ହୋଇଛି । ଯାହା ମତେ ପରବର୍ତ୍ତୀ ସମୟରେ ଉତ୍ସାହ ପ୍ରଦାନ କରିଛି । ଭଞ୍ଜବିହାରରେ କଟିଥିବା ମୋର ସେଇ ନଅ ବର୍ଷ ମୋ ଜୀବନର ମଧ୍ୟାହ୍ନ କାଳ । ସେଇ ସମୟର ବିମୁଗ୍ଧ ସ୍ମୃତି ସଂକ୍ଷେପରେ ଲେଖିବା କଣ ଏତେ ସହଜ ? ପରବର୍ତ୍ତୀ ସମୟରେ ବିସ୍ତୃତ ଭାବେ ଲେଖିବି । 'ଭଞ୍ଜବିହାର: ମୋ ଜୀବନର ମଧୁର ମଧ୍ୟାନ୍ତର' ।

(ଏକ ଦୀର୍ଘ ସ୍ମୃତିଲେଖର କିୟଦଂଶ)

•

*ସହକାରୀ ପ୍ରଫେସର, ଓଡ଼ିଆ ବିଭାଗ,*
*ବିଶ୍ୱଭାରତୀ, ଶାନ୍ତିନିକେତନ*

# ଭଞ୍ଜବିହାରରେ ଚାରି ବର୍ଷ

**ଡ. କାହ୍ନୁଚରଣ ସାହୁ**

ପ୍ରଥମରୁ ସ୍ନାତକ-ଦୀର୍ଘ ଦେଢ଼ ଦଶନ୍ଧି ବିଦ୍ୟା ଅଧ୍ୟୟନ ପରେ ୧୯୯୫ ମସିହାରେ ପାଦ ଥାପିଥିଲି ସଦା ମନୋରମ, ସଦା କୋମଳିତ, ସଦା କୁସୁମିତ, ପରମ ପ୍ରେମମୟ, ଅପାର ଶକ୍ତିମୟ, ପୁଣ୍ୟ ପୁଣ୍ୟାତ୍ମା ନାମଧାରୀ, ଶୀତଳ ସମୀର ପ୍ରବାହୀ, ଚିରବସନ୍ତ ବିହାରୀ ସେଇ ପବିତ୍ର ମାଟିରେ; ଯାହାର ନାଁ ଭଞ୍ଜବିହାର । ଆଜି ଚଉରାଳିଶଟି ବସନ୍ତ ପାର ହୋଇଥିଲେ ମଧ୍ୟ ଭଞ୍ଜବିହାର ମାଟିରେ କଟାଇଥିବା ଚାରୋଟି ବସନ୍ତ ଏବେ ମଧ୍ୟ ମୋ ମନକୁ ଆନ୍ଦୋଳିତ କରିଥାଏ । ତା'ର ବାସ୍ନା ଏବେ ମଧ୍ୟ ନୂଆ ନୂଆ ଲାଗେ । ତା'ଛଡ଼ା ଯିଏ ଯେଉଁ ବିଭାଗର ହୁଅନ୍ତୁନା କାହିଁକି, ସେ ଓଡ଼ିଆ ବିଭାଗ ହେଉ, ଅର୍ଥନୀତି, ରାଜନୀତି ବିଜ୍ଞାନ, ଗୃହ ବିଜ୍ଞାନ, ବଟାନି କିମ୍ବା ବାଣିଜ୍ୟ ବିଭାଗ ହେଉ, ଯିଏ ଏଠାରେ ଅଧ୍ୟୟନ କରିଛି, ତା'ର ସୁମଧୁର ସୁରଭି ଆଉ ଅସୁମାରୀ ଆହ୍ଲାଦ, ତା' ସ୍ମୃତିପଟରେ ଯେ ରୋମନ୍ଥିତ ହେଉଥିବ, ଏଥିରେ କେହି ଦ୍ୱିମତ ହେବେ ନାହିଁ ।

ମୁଁ ପଢ଼ିଲା ବେଳେ ବ୍ରହ୍ମପୁରରେ ରହୁଥାଏ । ଛାତ୍ରଛାତ୍ରୀମାନଙ୍କ ଯିବା ଆସିବା ପାଇଁ ପଡ଼ିଥାଏ ୟୁନିଭରସିଟି ତରଫରୁ ତିନୋଟି ବସ୍ । ଯାହାର ନାମଗୁଡ଼ିକ ଅତି ସୁନ୍ଦର; ଯାହାକି ଆମ ସାଙ୍ଗସାଥୀମାନେ ଦେଇଥାନ୍ତି । ଯଥା- ରୁବି, ଧଳାହାତୀ, ରୋଡ୍‌ଟ୍ରେନ୍ । ଆଉ ଗୋଟିଏ ମଜା କଥା, ସେତେବେଳେ ଆମମାନଙ୍କ ମଧ୍ୟରେ ପ୍ରଚାରିତ ହୋଇଥିଲା – ରୋଡ୍‌ଟ୍ରେନ୍ ଆଉ ଧଳାହାତୀର ସଙ୍ଗମରେ ରୁବିର ଜନ୍ମ । ଏବେ ଆଉ ଧଳାହାତୀ, ରୁବି କିମ୍ବା ରୋଡ୍‌ଟ୍ରେନ୍ ନାହିଁ । ରୋଡ୍ ଟ୍ରେନ୍‌ରେ ଯିଏ ଯାଇଛି, ତାର ମଜା ସିଏ ଉପଲବ୍ଧି କରିଛି । ଗୋଟିଏ ଅଧା ନାଲିରଙ୍ଗ ଛାଡ଼ି ଯାଇଥିବା ପୁରୁଣା ଓ.ଏସ୍.ଆର୍.ଟି.ସି. ବସ୍ ସହିତ ଅନ୍ୟ ଗୋଟିଏ ଇଞ୍ଜିନ୍ ବିହୀନ ଧଡ଼ଧଡ଼ିଆ, ଚାରିପାଞ୍ଚ ଗୋଟି ଚିରା ସିଟ୍ ଯୁକ୍ତ ବସ୍‌କୁ ଯୋଡ଼ି ସେଇ 'ରୋଡ୍‌ଟ୍ରେନ୍' ନିର୍ମିତ । ଯାହାର ଡ୍ରାଇଭର୍ ନାମ ମଧ୍ୟ କଉତୁକିଆ ଆଉ ଯୁବସୁଲଭ । ଅମିର ଖାଁ ରୂପରେ ଦେଖିବାକୁ ଅତ୍ୟନ୍ତ ରୁଗ୍‌ଣ, ଜୀର୍ଣ୍ଣଶୀର୍ଣ୍ଣ; ବୟସରେ ସତୁରି ନହେଲେ ମଧ୍ୟ ଦେଖାଯାଆନ୍ତି ସତୁରି ବର୍ଷରୁ ଅଧିକ । ଓଜନରେ ପଚିଶରୁ ତିରିଶ କିଲୋଗ୍ରାମ୍‌ରୁ ଅଧିକ ହେବାର ସମ୍ଭାବନା ବି ନାହିଁ । ତାଙ୍କୁ ମଧ୍ୟ ଆମ ମଧ୍ୟରୁ କେତେକ ପିଲା 'ଅମିର ଅଜା' ବୋଲି ସମ୍ବୋଧନ କରି ଡାକିଥା'ନ୍ତି । ମୋର ମନେ ଅଛି, ରୋଡ୍‌ଟ୍ରେନ୍‌ରେ ସିଟ୍ କମ୍ ଥିବାରୁ ପ୍ରାୟ ନବେ ଭାଗରୁ ଊର୍ଦ୍ଧ୍ୱ ପିଲା ଛିଡ଼ା ହୋଇ ଯାଇଥାଉ । ଅବଶ୍ୟ ଆଜିକାଲି ମେଟ୍ରୋ କିମ୍ବା ମେମୋ ଟ୍ରେନ୍ ପରି ଛାତ ତଳକୁ ଓହଳି ରହିବା ପାଇଁ ରହିଥାଏ ହୁକ୍ ବ୍ୟବସ୍ଥା । ଗୋଟିଏ ହୁକ୍‌କୁ ଦୁଇରୁ ତିନି ଜଣ

ଛାତ୍ରଛାତ୍ରୀ ମିଶାମିଶି ହୋଇ ଧରିଯିବାକୁ ହେଉଥାଏ । ସେଥିରେ ଦେହକୁ ଦେହ ବାଜୁଥିବାରୁ ମଜା ବି ଲାଗେ । ଆଉ ସେଥିରେ ଗୁଲି ଗପ ସହିତ ପଲ୍ଲୀରୁ ଦିଲ୍ଲୀ ପର୍ଯ୍ୟନ୍ତ ସବୁ ଆଲୋଚନା ପର୍ଯ୍ୟାଲୋଚନା ହୁଏ । ଗୋଟିଏ ଘଟଣା ଆଜି ବି ମନେ ପଡ଼ିଲେ ହସ ଲାଗେ ଏବଂ ଗୁଲି ପରି ମନେ ହେଉଥିଲେ ମଧ୍ୟ ଗୁଲି ବି ନୁହେଁ । ଥରେ ମୋର ଜଣେ ବନ୍ଧୁ (ନାମ ଜାଣି ହେଉ ନାହିଁ) ମୋ ପାଖ ହୁକ୍‌କୁ ଧରି ଛିଡ଼ା ହୋଇଥା'ନ୍ତି । ସେହି ସମୟରେ କମାପଲ୍ଲୀ ଠାରେ ଦୁଇ ତିନି ଜଣ ଛାତ୍ରୀ ବସ୍‌ରେ ଚଢ଼ିଥା'ନ୍ତି । ପୁରୁଣା ବସ୍‌ଷ୍ଟାଣ୍ଡ୍‌ରୁ କମାପଲ୍ଲୀ ଯିବା ଭିତରେ ବସ୍‌ଟି ଛାତ୍ରଛାତ୍ରୀ ପୂର୍ଣ୍ଣ ହୋଇଯାଉଥିବାରୁ ପ୍ରାୟତଃ ସେମାନଙ୍କୁ ସବୁବେଳେ ଅନ୍ୟମାନଙ୍କ ହୁକ୍‌କୁ ଧରି ଆଡ଼ଜଷ୍ଟ୍‌ମେଣ୍ଟ୍ ହୋଇଯିବାକୁ ହୁଏ । ସେଦିନ ବି ଭାରି ଭିଡ଼ ଥାଏ । ଉପରକୁ ହାତଟେକି ସଖି କଣ୍ଢେଇ ପରି ସମସ୍ତେ ହଲିଦୋହଲି ସବୁ ଦିନ ପରି ଯାଉଥାନ୍ତି । ସେଦିନ ମୋ ବନ୍ଧୁ ଜଣକ, ଶ୍ରୀକୃଷ୍ଣଙ୍କ ଜଳକ୍ରୀଡ଼ାରେ ଗୋପୀମାନେ ହାତ ଟେକି ଛିଡ଼ା ହେଲା ପରି ଛିଡ଼ା ହୋଇଥିବା ମନ୍ତବ୍ୟ ଦେବାରୁ ତରୁଣୀ ଛାତ୍ରୀମାନଙ୍କ ମଧ୍ୟରୁ ଜଣେ ତରୁଣୀ କ'ଣ ଦେଖିଲେ କେଜାଣି ଆର ପାର୍ଶ୍ୱକୁ ମୁହଁ ବୁଲାଇ, ଗୋଟିଏ ମନ୍ତବ୍ୟ ଦେଲେ- ତୁମ କାକଟପୁରରେ ତ ଏତେ, ତମ କୋଣାର୍କରେ କେତେ ?" ତତ୍‌କ୍ଷଣାତ୍ ବୁଦ୍ଧିମତୀ ତରୁଣୀ ଜଣକ ଅପର ପାର୍ଶ୍ୱକୁ ବୁଲିପଡ଼ି ଚୁପ୍‌କରି ମନ୍ତବ୍ୟଟିଏ ଦେଲେ - "ମୋର କୋଣାର୍କରେ ଯେତେ ତମ ମୁଣ୍ଡରେ ନଥିବ ସେତେ ।" ଅବଶ୍ୟ ବନ୍ଧୁ ଜଣକ ଟିକେ ଚନ୍ଦା ହୋଇଥିବାରୁ ମୁଣ୍ଡ ଆଡ଼େ ହାତ ବୁଲାଇ ନେଇ ଲାଜରେ ଦୁଇ ତିନୋଟି ହୁକ୍ ଛାଡ଼ି ପଛକୁ ଚାଲିଯାଇଥିଲେ ।

ଭଞ୍ଜବିହାରକୁ ଯିବା ବେଳର ଏହିପରି ସ୍ମୃତି ସବୁ ଅଭୁଲା ।

ଶିକ୍ଷା କ୍ଷେତ୍ରରେ ମୋର ଓଡ଼ିଆ ବିଭାଗ ଥିଲା । ସେତେବେଳେ ଶିକ୍ଷକ ଓ ଶିକ୍ଷାର୍ଥୀମାନଙ୍କ ମଧ୍ୟରେ ସୁସମ୍ପର୍କ ଭରି ରହିଥିଲା । ବିଭାଗର ପ୍ରଫେସର୍ ଭାବରେ ସେତେବେଳେ ଥିଲେ ଓଡ଼ିଶାର ଦୁଇ ଜଣ ବିଶିଷ୍ଟ ଶିକ୍ଷାବିତ୍ । ଜଣେ ହେଲେ, ପ୍ରାଚୀନ ଓଡ଼ିଆ ସାହିତ୍ୟ ଅଧ୍ୟୟନରେ ଅଶେଷ କୃତିତ୍ୱ ହାସଲ କରିଥିବା 'ସ୍ରଷ୍ଟା ଓ ସୃଷ୍ଟି', 'ସାହିତ୍ୟ ଓ ସାହିତ୍ୟିକ', 'ଓଡ଼ିଆ କାବ୍ୟ କୌଶଳ' ପରି ଉଚ୍ଚକୋଟୀର ସମାଲୋଚନା ପୁସ୍ତକର ରଚୟିତା ପ୍ରଫେସର୍ ସୁଦର୍ଶନ ଆଚାର୍ଯ୍ୟ ମହୋଦୟ । ଅନ୍ୟ ଜଣେ ଥିଲେ ସୁସମାଲୋଚକ 'ସାହିତ୍ୟ ସନ୍ଧାନ', 'କାବ୍ୟ ସମ୍ବାଦ', 'ଆଧୁନିକ କାବ୍ୟ ଜିଜ୍ଞାସା : ଚିତ୍ରକଳ୍ପ', 'କବିସୂର୍ଯ୍ୟ କାବ୍ୟବିଭା', 'ବିବିଧ ସମାଲୋଚନା', 'ମୃତ୍ୟୁଲୋକରେ ଋତୁ ସପ୍ତମ', 'ଚିହ୍ନା ମାଟି ଅଚିହ୍ନା ଆକାଶ' ଓ 'ବିବିଧ ସମାଲୋଚନା' ପୁସ୍ତକର ସୃଷ୍ଟିକାରୀ ପ୍ରଫେସର୍ ଦାଶରଥି ଦାସ ମହୋଦୟ । ରିଡ଼ର୍ ଭାବରେ ଥିଲେ ଡ. ବାଉରୀବନ୍ଧୁ କର, ଡ. ଅଶ୍ୱିନୀ କୁମାର ପଣ୍ଡା, ଡ. ପୂର୍ଣ୍ଣଚନ୍ଦ୍ର ମିଶ୍ର ଓ ଡ. ଦେବୀପ୍ରସନ୍ନ ପଟ୍ଟନାୟକ ସାର୍ । ପରବର୍ତ୍ତୀ ସମୟରେ

ମୋର ଏମ୍.ଫିଲ୍. ପଢ଼ିଲା ବେଳେ ଅଧ୍ୟାପକ ଭାବେ ଯୋଗ ଦେଇଥିଲେ ଡ. କୃଷ୍ଣଚନ୍ଦ୍ର ପ୍ରଧାନ, ଡ. ପ୍ରସନ୍ନ କୁମାର ସ୍ୱାଇଁ ଓ ଡ. ସଦାନନ୍ଦ ନାୟକ ।

ମୋର ଆଜି ବି ମନେ ପଡୁଛି, ପ୍ରଫେସର୍ ସୁଦର୍ଶନ ଆଚାର୍ଯ୍ୟ ସାର୍‌ଙ୍କର ପ୍ରଥମ କ୍ଲାସ୍‌ରେ 'ଆରମ୍ଭ'କୁ ନେଇ ଆଲୋଚନା । ପ୍ରଥମେ ସାର୍ ତାଙ୍କ ଗୁରୁଗମ୍ଭୀର କଣ୍ଠରେ ପ୍ରଶ୍ନ କରିଥିଲେ- 'ଆରମ୍ଭ' କାହାକୁ କହନ୍ତି ଓ 'ଶେଷ'କାହାକୁ କହନ୍ତି ? ଆମ ଶ୍ରେଣୀର କେହି ବି ଛାତ୍ରଛାତ୍ରୀ ତାର ଉତ୍ତର ଦେଇପାରି ନଥିଲେ । ଶେଷରେ ସାର୍ ନିଜେ ତା'ର ଉତ୍ତର ଦେଇଥିଲେ - 'ଆରମ୍ଭ' ହେଉଛି ପୂର୍ବରୁ କିଛି ନଥିଲା ଏବଂ ଶେଷ ହେଉଛି ପରେ କିଛି ନାହିଁ ।" ଏହି ପ୍ରଥମ କ୍ଲାସ୍‌ଟି ମୋର ଅଭୁଲା ହୋଇ ରହିଛି ।

ପ୍ରଫେସର୍ ଦାଶରଥି ସାରଙ୍କର ଗୋଟିଏ କଥା ଆଜି ବି ମନେ ପଡୁଛି - 'କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ'ର ପ୍ରଥମ ଦୁଇ ଧାଡ଼ି "କି ହେଲାରେ, କହି ତ ନୁହଇ ଭାରତୀରେ" ଅତି ସରଳ ହେଲେ ବି, ଏତିକି ବୁଝାଇବା ପାଇଁ ଆମର ଦୁଇଟି କ୍ଲାସ୍ ନେଇଥିଲେ । କେତେ ତା' ସମ୍ପର୍କିତ ଉଦାହରଣ କେତେ ଲୋକକଥା, କେତେ ଲୋକ ପ୍ରଚଳିତ ଅବ୍ୟୟପଦ ସମ୍ପର୍କରେ ବୁଝାଇଥିଲେ, ତା'ର ଇୟତ୍ତା ନାହିଁ । ଶିକ୍ଷାର କୋଡ଼ିଏ ବର୍ଷ ପରେ ମଧ୍ୟ ମୋ ମନରେ ଏହା ଅଭୁଲା ହୋଇ ରହିଛି ।

ଡ. ବାଉରୀବନ୍ଧୁ କର ସାର୍‌ଙ୍କ କ୍ଲାସ୍‌ଗୁଡ଼ିକ ଅତି ରସରସିଆ ଥିଲା । ସାର୍‌ଙ୍କ କ୍ଲାସ୍‌କୁ ସବୁ ପିଲା ଅନାଇ ରହିଥା'ନ୍ତି । ସେ ଅତ୍ୟନ୍ତ ଗୁରୁଗମ୍ଭୀର କଥାକୁ ଅତି ସରଳ ଭାବରେ ଏମିତି ଅଙ୍ଗଭଙ୍ଗୀ କରି ବୁଝାଇଥା'ନ୍ତି, ଯାହାକି ପିଲାଙ୍କଠାରେ ରସ ଭରିଦିଏ । ପିଲାଙ୍କ ମନସ୍ତତ୍ତ୍ୱ ଜାଣି ହସେଇ ମଜେଇ ପଢ଼େଇବାର କଳା ତାଙ୍କୁ ବେଶ୍ ଜଣା ଥିଲା । ଗୋଟିଏ ମଜା କଥା, ପାଠ ବହିର୍ଭୂତ ହେଲେ ମଧ୍ୟ ସାର୍‌ଙ୍କ କ୍ଲାସ୍‌ରେ ଘଟିଥିଲା । ଥରେ ମୋର ଜଣେ ସହପାଠିନୀ ତରତର ହୋଇ ସାର୍‌ଙ୍କ କ୍ଲାସ୍ ଆରମ୍ଭ ହେବାର ପନ୍ଦର ମିନିଟ୍ ପରେ ପହଞ୍ଚିଲେ । ସାର୍ ତାଙ୍କ ଠାଣିରେ ପଚାରିଲେ - ତୁମେ ହଷ୍ଟେଲ୍‌ରେ ରହୁଛ ? ସେ କହିଲା - ହଁ ! ସାର୍ କହିଲେ - ରୁମ୍ ପାଇଛ ? ସେ କହିଲା ନାଁ ! ଝିଅଟି ଭାରି ନର୍ଭସ୍ ବି ହୋଇ ପଡ଼ିଥିଲା । ସାର୍ କହିଲେ - ତେବେ ତ ତମେ ତଳେ ଶୋଉଥିବ, ସେ ଉପରେ ଶୋଉଥିବ । ସେତିକିରେ ଆମ କ୍ଲାସ୍‌ର ସମସ୍ତ ପିଲା ହସିହସି ବେଦମ୍ ହୋଇଯାଇଥିଲେ । ତେବେ ସାର୍‌ଙ୍କ ସହିତ ମୋର ବ୍ୟକ୍ତିଗତ ସମ୍ପର୍କ ଭଲ । ତାଙ୍କ ତତ୍ତ୍ୱାବଧାନରେ ମୁଁ ଏମ୍.ଫିଲ୍. କରିଛି, ପିଏଚ୍.ଡି. ବି କରିଛି । ସାର୍ ପ୍ରଫେସର୍ ଭାବରେ ବହୁବର୍ଷ ବିଭାଗରେ କାର୍ଯ୍ୟ କଲା ପରେ ଏବେ ରିଟାୟାର୍ଡ଼ କରି ଭୁବନେଶ୍ୱରରେ ଅବସ୍ଥାନ କରୁଛନ୍ତି ।

ଡ. ଦେବୀପ୍ରସନ୍ନ ପଟ୍ଟନାୟକ ସାର୍ ଅତ୍ୟନ୍ତ ମାର୍ଜିତ, ବୌଦ୍ଧିକ ଭାଷାରେ ଆଧୁନିକ ସାହିତ୍ୟକୁ ଅତି ନିଖୁଣ ଭାବରେ ବୁଝାଇ ପାରୁଥିଲେ । ତାଙ୍କ ପଢ଼ାଇବା ଶୈଳୀ

ବୁଦ୍ଧିଦୀପ୍ତ ହେଲେ ମଧ୍ୟ ଆମମାନଙ୍କୁ ବୁଝିବାରେ କୌଣସି ଅସୁବିଧା ନଥାଏ । ସେ ଥିଲେ ଜଣେ ଛାତ୍ରବତ୍ସଳ ଶିକ୍ଷକ । ଛାତ୍ରମାନଙ୍କୁ ସେ ବନ୍ଧୁ ଭାବରେ ଗ୍ରହଣ କରୁଥିଲେ । ସାର୍‌ଙ୍କର ଏହି ଭାବନା ମୋତେ ବ୍ୟକ୍ତିଗତ ଭାବରେ ବହୁ ପ୍ରେରଣା ଦେଇଛି । ସାର୍ ବର୍ତ୍ତମାନ ବିଭାଗର ବରିଷ୍ଠ ପ୍ରଫେସର୍ ସହିତ ପି.ଜି. କାଉନ୍‌ସିଲ୍‌ର ଚେୟାରମ୍ୟାନ୍ ଭାବରେ ଅବସ୍ଥାପିତ ହୋଇଛନ୍ତି । ବିଭାଗର ଉନ୍ନତି ସହିତ ଦକ୍ଷିଣ ଓଡ଼ିଶାର ଏଇ ସର୍ବବୃହତ୍ ଶିକ୍ଷାୟତନର ସର୍ବାଙ୍ଗୀନ ଉନ୍ନତି ପାଇଁ ସେ ସତତ ଚେଷ୍ଟିତ ।

ଡ. ପ୍ରସନ୍ନ କୁମାର ସ୍ୱାଇଁ ସାର୍ ଆମର ଏମ୍.ଫିଲ୍. କ୍ଲାସ୍ କମ୍ ନେବାର ସୁଯୋଗ ପାଇଥିଲେ ମଧ୍ୟ ବ୍ୟକ୍ତିଗତ ଭାବରେ ସାର୍‌ଙ୍କ ସହିତ ମୋର ସମ୍ପର୍କ ଭଲ । ୟୁନିଭରସିଟିରେ ଇଣ୍ଟରଭ୍ୟୁ ଦେବାକୁ ଆସିବା ବେଳେ, ମୋର ବ୍ୟାବସାୟିକ ପ୍ରତିଷ୍ଠାନରେ ସାର୍‌ଙ୍କ ସହିତ ପରିଚୟ ହୁଏ । ସେହିଦିନ ଠାରୁ ଅର୍ଥାତ୍ ୧୯୯୬ ମସିହା ଠାରୁ ଆଜି ପର୍ଯ୍ୟନ୍ତ ସାର୍‌ଙ୍କ ସାହାଯ୍ୟ ଓ ସହଯୋଗ ଅଭୁଲା ହୋଇ ରହିଛି । ସେ ଶାନ୍ତଶିଷ୍ଟ, ଜଣେ ଉଦାର ମଣିଷ । ସାର୍ ବର୍ତ୍ତମାନ ବିଭାଗର ବରିଷ୍ଠ ପ୍ରଫେସର୍ ସହିତ ବିଭାଗ ମୁଖ୍ୟ କାର୍ଯ୍ୟ ସମ୍ପାଦନ କରୁଛନ୍ତି । ବିଭାଗର ଗୋଲ୍‌ଡେନ୍ ଜୁବୁଲି ଅବସରରେ ତାଙ୍କ ସାଧୁ ଉଦ୍ୟମରେ ପ୍ରକାଶିତ ହେବାକୁ ଯାଉଥିବା ଏବଂ ମୋତେ ମୋର ଭଞ୍ଜବିହାର ସ୍ମୃତି ସମ୍ପର୍କରେ ଲେଖା ଖଣ୍ଡେ ମାଗିଥିବାରୁ ସାର୍‌ଙ୍କୁ ସାଧୁବାଦ ଜଣାଉଛି । ଲକ୍ଷ୍ମୀଙ୍କ ରୋଷଶାଳ ପରି ସାଙ୍ଗସାଥୀ ମେଳରେ ଭଞ୍ଜବିହାର ଅନ୍ୟ ଏକ ଅଧ୍ୟାୟ ହେବ ।

ପରିଶେଷରେ ମୁଁ ଏତିକି କହିବି, ଅନ୍ୟ ସାଙ୍ଗମାନଙ୍କ ପରି ମୁଁ କୌଣସି ଝିଅଙ୍କ ପ୍ରେମରେ ପଡ଼ିନି, ପଡ଼ିନି ମଧ୍ୟ କୁସଙ୍ଗରେ । ଶିକ୍ଷା-ଶିକ୍ଷକ-ଶିକ୍ଷାୟତନର ଗୁରୁ ଗାରିମାକୁ ଉତ୍ତରରୁ ଉତ୍ତରୋତ୍ତରକୁ ନେବାକୁ ସତତ ଚେଷ୍ଟା କରିଛି । ସତ୍ୟ-ଶିବ-ସୁନ୍ଦରର ଆରାଧନା କରିଛି । ଏଇ ଭଞ୍ଜବିହାର ମୋତେ ଶାଶ୍ୱତ ଆନନ୍ଦ ଦେଇଛି, ଚିରନ୍ତନ ଶିକ୍ଷା ଦେଇଛି, ଆଉ ଦେଇଛି ମଧ୍ୟ ପିଏଚ୍.ଡି. ଉପାଧି । ତାକୁ ପାଥେୟ କରି ମୋ ଜୀବନ ତରୀଟି ସୁରୁଖୁରୁରେ ଆଗକୁ ଆଗକୁ ନିର୍ଭୀକ ଭାବରେ ମାଡ଼ି ଚାଲିବାରେ ବେଶ୍ ସହାୟକ ହୋଇଛି ।

●

*ଡଲଫିନ୍ ସର୍ବସେସ୍,*
*ପୁରୁଣା ବସ୍‌ଷ୍ଟାଣ୍ଡ, ବ୍ରହ୍ମପୁର*

# ମୁଁ ଓ ମୋ ବିଶ୍ୱବିଦ୍ୟାଳୟ

ଡ. ପ୍ରସନ୍ନ କୁମାର ବିଷୋୟୀ

ସତ୍ୟବାଦୀ ବନ ବିଦ୍ୟାଳୟର ବକୁଳ ବନ ନଥିଲା । ଶୁଭୁ ନଥିଲା ସେଠାରେ ଭାର୍ଗବୀ ନଦୀର କୁଳୁକୁଳୁ ନାଦ । ନଥିଲେ ସେଠାରେ ପରମ ପୂଜ୍ୟ ପଞ୍ଚସଖା । କିନ୍ତୁ ପୁଣ୍ୟ ପୟୋଧି ବଙ୍ଗୋପସାଗରର ଅନତି ଦୂରରେ ଝାଉଁବଣର ଅପୂର୍ବ ଶୋଭାରାଶି ମଧ୍ୟରେ ବିରାଜିତ ଥିଲା ଆମ ଦକ୍ଷିଣ ଓଡ଼ିଶାର ଶିକ୍ଷା, ସଂସ୍କୃତିର ସ୍ମାରକୀ ସୌଧ, ଇତିହାସର ଚଳନ୍ତି ସାକ୍ଷୀ - ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ । ଓଡ଼ିଆ ବିଭାଗରେ ଶିକ୍ଷାଦାନ କରୁଥିଲେ ପ୍ରାଜ୍ଞ, ବିଜ୍ଞ, ଅଭିଜ୍ଞ ସପ୍ତରଥୀ-ସର୍ବଶ୍ରୀ ପ୍ରଫେସର୍ ସୁଦର୍ଶନ ଆଚାର୍ଯ୍ୟ, ପ୍ରଫେସର୍ ଦାଶରଥି ଦାସ, ପ୍ରଫେସର୍ ବାଉରୀବନ୍ଧୁ କର, ପ୍ରଫେସର୍ ସୀତାରାମ ମହାପାତ୍ର, ପ୍ରଫେସର୍ ଅଶ୍ୱିନୀ କୁମାର ପଣ୍ଡା, ପ୍ରଫେସର୍ ପୂର୍ଣ୍ଣଚନ୍ଦ୍ର ମିଶ୍ର, ପ୍ରଫେସର୍ ଦେବୀପ୍ରସନ୍ନ ପଟ୍ଟନାୟକ । ଏମିତି ଏକ ମହାର୍ଘ ଅନୁଷ୍ଠାନରୁ ଓଡ଼ିଆ ଭାଷାରେ ସ୍ନାତକୋତ୍ତର ଉପାଧି ହାସଲ କରିବାର ମହତ୍ତ୍ୱାକାଂକ୍ଷା ନେଇ ପଦାର୍ପଣ କଲି ୧୯୮୮ ମସିହା ଜୁଲାଇ ମାସରେ । ମନ ଗହ୍ୱରରେ ଉଙ୍କି ମାରୁଥାଏ ଅନେକ ଆଶା । ନୂତନ ଏକ ଅନୁଭୂତି ପାଇ ଶରୀର ରୋମାଞ୍ଚିତ ଏବଂ ପୁଲକିତ ହେଉଥାଏ । ଆଖିରେ ଲାଖି ରହିଥାଏ ଅସୁମାରୀ ସ୍ୱପ୍ନ ।

ଏମିତିରେ ଆରମ୍ଭ ହେଲା ଶିକ୍ଷା ଗ୍ରହଣ ପ୍ରକ୍ରିୟା । ବରିଷ୍ଠ, ଗରିଷ୍ଠ, ବିଶିଷ୍ଟ, ବଶିଷ୍ଠ ଅଧ୍ୟାପକ, ପ୍ରାଧ୍ୟାପକ ଏବଂ ପ୍ରଫେସରଙ୍କ ଓଜସ୍ୱିନୀ ଶିକ୍ଷାଦାନ, ଭାଷାଶାସ୍ତ୍ରରେ ଅଗାଧ ପାଣ୍ଡିତ୍ୟ, ଛାତ୍ର ବତ୍ସଳତା, କର୍ତ୍ତବ୍ୟ ପରାୟଣତାରେ ବିମୋହିତ ହୋଇ ଉଠୁଥିଲେ ଶିକ୍ଷାର୍ଥୀମାନେ । ପ୍ରାତଃ ସ୍ମରଣୀୟ ଗୁରୁମାନଙ୍କ ଶିକ୍ଷାଦାନ ଚାତୁରି, ଶ୍ରେଣୀ ବର୍ଜନ କରି ଘଞ୍ଚଝାଉଁ ବନର ଶୀତଳତା ପ୍ରାପ୍ତି କିମ୍ବା ବଙ୍ଗୋପସାଗରର ସୁଦୀର୍ଘ ବାଲୁକାରାଶି ଉପରେ ଅର୍ଦ୍ଧଶାୟିତ ଭଙ୍ଗୀରେ ସୁନେଲୀ ସ୍ୱପ୍ନ ଦେଖିବାର ଅଦମ୍ୟ ଲାଳସା ରୂପୀ ଉତ୍ତାଳ ତରଙ୍ଗରେ ଭଟ୍ଟା ଆଣିଦେଉଥିଲା । ସେମାନେ ଶିକ୍ଷା ଦେଇଛନ୍ତି - ସମୟାନୁବର୍ତ୍ତିତା, ସହିଷ୍ଣୁତା, ଦାୟିତ୍ୱ ପରାୟଣବୋଧତା ଏବଂ ଲକ୍ଷ୍ୟ ସାଧନ କରିବାର ଏକାଗ୍ରତା ।

ତେବେ ଯୌବନର ଉଦ୍ଦାମତା, ଚାପଲ୍ୟରେ ଛନ୍ଦି ହୋଇ ବହୁ ସମୟ ଅତିବାହିତ ହୋଇଛି ବନ୍ଧୁମେଳରେ । ଉଚିତ୍ ଦାବି ହାସଲ ନିମନ୍ତେ ସ୍ୱର ଉତ୍ତୋଳନ କରିଛି ଯଥାର୍ଥ ମାର୍ଗରେ । ରୋଡ୍ ଟ୍ରେନ୍‌ରେ ଯାତ୍ରା ବେଳର ଅନନ୍ୟ ଅନୁଭୂତିକୁ ସାଇତି ରଖା ହୋଇଛି ହୃଦୟର ନିଭୃତ କୋଣରେ । ରାଜନୀତିର ପଙ୍କିଳ ମାର୍ଗରେ ପାଦ ଥାପି ପଥଭ୍ରଷ୍ଟ କିମ୍ବା ଲକ୍ଷ୍ୟ ଭ୍ରଷ୍ଟ ହୋଇ ନାହିଁ କେବେ ।

"ସମୟ ଏବଂ ସ୍ରୋତ କାହାକୁ ଅପେକ୍ଷା କରେ ନାହିଁ"– ଏହି ଉକ୍ତିର ଯଥାର୍ଥତା ପ୍ରତିପାଦିତ ହୋଇଆସିଛି ସଦାସର୍ବଦା । ଠିକ୍ ସେହିପରି ଗୁରୁମାନଙ୍କ ବାତ୍ସଲ୍ୟ ଭାବ, ବନ୍ଧୁମାନଙ୍କ ସ୍ନେହ ପ୍ରବଣତାରେ ଅତିବାହିତ ହୋଇଗଲା ଦୁଇ ବର୍ଷ । ସ୍ନାତକୋତ୍ତର ଶିକ୍ଷାର ସମାପ୍ତି ହେଲା ବିଶ୍ୱବିଦ୍ୟାଳୟର ସବୁଜ ସ୍ମୃତିକୁ ସାଉଁଟି ।

କିଛି ବର୍ଷର ଅନ୍ତରାଳରେ ବିଶ୍ୱବିଦ୍ୟାଳୟ ପୁଣି ମୋତେ ଆକର୍ଷିତ କରିଥିଲା – ଓଡ଼ିଆ ଭାଷା ସାହିତ୍ୟରେ ସର୍ବୋଚ୍ଚ ଉପାଧି ପିଏଚ୍.ଡି. ବା ଡକ୍ଟରେଟ୍ ଉପାଧି ପ୍ରାପ୍ତି ଲକ୍ଷ୍ୟରେ । ଏଥିପାଇଁ ସମସ୍ତ ଶ୍ରେୟ ଯିବ – ସଦାସର୍ବଦା ଧୋବ ଧାଉଳିଆ, ପରିଷ୍କାର ପରିଚ୍ଛନ୍ନ ପୋଷାକ ପରିଧାନ କରିଥିବା – ବରେଣ୍ୟ ଶିକ୍ଷକ ପ୍ରଫେସର୍ ବାଉରୀବନ୍ଧୁ କର ମହାଭାଗଙ୍କୁ । ତାଙ୍କରି ପ୍ରତ୍ୟକ୍ଷ ତତ୍ତ୍ୱାବଧାନ ଏବଂ ଉଚିତ୍ ମାର୍ଗଦର୍ଶନରେ ଡକ୍ଟରେଟ୍ ଉପାଧି ପ୍ରାପ୍ତି ନିମନ୍ତେ ଯୋଗ୍ୟ ବିବେଚିତ ହେଲି । ସେହି ମହାନୁଭବଙ୍କ ଠାରେ ମୁଁ ଚିର ଋଣୀ ।

ଆଜି ଯଦି ସମାଜରେ ପ୍ରତିଷ୍ଠିତ ହୋଇପାରିଛି – ତାହା କେବଳ ମୋ ପୂଜନୀୟ ଗୁରୁମାନଙ୍କ ସ୍ନେହାଶୀର୍ବାଦ, ସଦିଚ୍ଛା ପ୍ରୟାସ ଏବଂ ସଫଳ ମାର୍ଗଦର୍ଶନରେ । ସେହି ଗୁରୁମାନଙ୍କ ଚରଣ କମଳରେ ମୋର ସହସ୍ର ପ୍ରଣିପାତ ।

•

*ଅଧ୍ୟାପକ,*
*ଓଡ଼ିଆ ବିଭାଗ, ମହୁରୀକାଳୁଆ ମହାବିଦ୍ୟାଳୟ*
*ବାଲିପଡ଼ା, ଗଞ୍ଜାମ*

# ଜୀବେମ୍ ଶରଦ ଶତ ସହସ୍ରମ୍

ଡ. କାହ୍ନୁଚରଣ ପାଢ଼ୀ

ବ୍ୟକ୍ତି ଭଳି ଅନୁଷ୍ଠାନ ଜନ୍ମ ନିଏ । ବ୍ୟକ୍ତି ଭଳି ଏହା ମଧ୍ୟ ବାଲ୍ୟ, ପୌଗଣ୍ଡ, କୈଶୋର, ଯୌବନ ଦେଇ ଗତି କରେ । କିନ୍ତୁ, ଅନୁଷ୍ଠାନ ଜୀବନରେ ପ୍ରୌଢ଼ତ୍ୱ ପରେ ବାର୍ଦ୍ଧକ୍ୟ କେବେ ବି ବାଞ୍ଛନୀୟ ନୁହେଁ । ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠା ଦକ୍ଷିଣ ଓଡ଼ିଶାବାସୀଙ୍କ ବହୁ ସଂଗ୍ରାମ ଓ ସଂଘର୍ଷର ଫଳ । ସଂଘର୍ଷ ଓ ସଂଗ୍ରାମର ଏ ସ୍ମରଣୀୟ ସ୍ତମ୍ଭକୁ ଚିର ପ୍ରୌଢ଼ତ୍ୱ ବିରାଜୁଥାଉ, କେବେ ବି ଏହାକୁ ବାର୍ଦ୍ଧକ୍ୟ ନ ଗ୍ରାସୁ; ଏହା ଅନ୍ୟ ବହୁ ନିଷ୍ପାପ, ନିଃସ୍ୱାର୍ଥ, ନିରୀହ ବ୍ୟକ୍ତିଙ୍କ ଭଳି ମୋର ମଧ୍ୟ ଅନ୍ତରର ପ୍ରାର୍ଥନା । କେବଳ ସ୍ୱର୍ଣ୍ଣ ଜୟନ୍ତୀ ଅବସରରେ ନୁହେଁ, ଚିରକାଳର, ନିତ୍ୟ ଜୀବନର ସମସ୍ତ ପାହାନ୍ତି ପ୍ରହରରେ ମୋର ଏ ପ୍ରାର୍ଥନାରେ ଆନୁଷ୍ଠାନିକତା ଅପେକ୍ଷା ଅନ୍ତରଙ୍ଗ ଆକୁତି ଟିକେ ଅଧିକ । କାରଣ, ଆମ ଉଭୟଙ୍କର ଜନ୍ମ ଓ ବିକାଶ ସମାନ୍ତରାଳ । ଜନ୍ମରୁ ଭଞ୍ଜବିହାର ସହ ଏହା ମୋର ସମ୍ପର୍କର ହେତୁ । ବାଲ୍ୟରେ ଯେଉଁ ସମ୍ପର୍କ ଥିଲା, ସ୍ୱଚ୍ଛ ସମୟର ପ୍ରବାହରେ ତାହା ହୋଇଛି ଅଧିକ ସ୍ନିଗ୍ଧ ଓ ବିସ୍ତୃତ । ଏପରିକି ଆନୁଷ୍ଠାନିକ ଛାତ୍ରତ୍ୱ ସମାପ୍ତି ପରେ, ବିଭାଗର ନୂତନ ସମବୟସୀ ଓ କନିଷ୍ଠ ଅଧ୍ୟାପକମାନଙ୍କ ସହ ସମ୍ପର୍କ ମାଧ୍ୟମରେ ଏହା ଅଧିକ ବ୍ୟାପ୍ତ ହୋଇଛି । ନିୟତିର ସ୍ୱାଭାବିକ ଗତିକ୍ରମରେ ଏହା ଆମର ବନ୍ଧୁତ୍ୱର ସ୍ୱବାରି ସିଞ୍ଚନରେ ପୁଷ୍ଟ ଯେମିତି ହୋଇଛି, ସ୍ୱାର୍ଥ ଓ ଈର୍ଷାର ଅନଳରେ ମଧ୍ୟ ସେମିତି ଦଗ୍ଧ ହୋଇଛି; କିନ୍ତୁ କେବେ ବି ସମ୍ପୂର୍ଣ୍ଣ ରୂପେ ନାହିଁନାଡ଼ର ଏ ବନ୍ଧନ ସକଳ କମ୍ପନ ସତ୍ତ୍ୱେ ତୁଟି ଯାଇନି ।

ପୌଗଣ୍ଡ କାଳରେ ଯେଉଁ ଭଞ୍ଜବିହାର ସହ ସମ୍ପର୍କ ଥିଲା ପାହାନ୍ତି ପହରର ସ୍ୱପ୍ନ ଭଳି ଆମୋଦଦାୟକ, କୈଶୋରରେ ସେ ସମ୍ପର୍କ ହେଲା ଅଧିକ ଦୃଢ଼ । ସ୍ନାତକୋତ୍ତର ଓଡ଼ିଆ ବିଭାଗରେ ଆନୁଷ୍ଠାନିକ ଭାବେ ଛାତ୍ରତ୍ୱ ଗ୍ରହଣ ପୂର୍ବରୁ ସ୍କୁଲ୍ ପଢ଼ା ସରୁ ସରୁ ଏ ଦୃଢ଼ ସମ୍ପର୍କର ମୂଳଦୁଆ ପଡ଼ିଲା । ଉପଲକ୍ଷ୍ୟଟି ହେଉଛି ଛାତ୍ର ଆନ୍ଦୋଳନ । ଛାତ୍ର ସଂସଦ କର୍ମକର୍ତ୍ତାଙ୍କ ପଦବୀର ନୂତନ ନାମକରଣ ନେଇ ଯେଉଁ ଛାତ୍ର ଆନ୍ଦୋଳନ ଆରମ୍ଭ ହୋଇଥିଲା, ତାର ଆନୁଷ୍ଠାନିକ ପ୍ରତିନିଧି ମଣ୍ଡଳରେ ଜଣେ ଆଗ ଧାଡ଼ିର ଛାତ୍ର ଭାବେ ଖଲ୍ଲିକୋଟ କଲେଜର ଛାତ୍ର ସଂସଦ କର୍ମକର୍ତ୍ତାଙ୍କ ସହ ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷଙ୍କୁ ଭେଟି ଆଲୋଚନା କରିବାକୁ ମୁଁ ରୋଡ୍‌ଟ୍ରେନ୍‌ରେ ବିଶ୍ୱବିଦ୍ୟାଳୟ ଯାଇଥିଲି । ତତ୍କାଳୀନ କୁଳସଚିବଙ୍କ ସହ ସୌହାର୍ଦ୍ଦ୍ୟପୂର୍ଣ୍ଣ ଆଲୋଚନା ହୋଇଥିଲା । ଏହା ପୂର୍ବରୁ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଅଧ୍ୟାପକ/ପ୍ରାଧ୍ୟାପକ ଥିବା ବେଣୀମାଧବ ପାଢ଼ୀ, ସୁଦର୍ଶନ ଆଚାର୍ଯ୍ୟ,

ସୀତାରାମ ମହାପାତ୍ର, ହରିହର ଦାସ, ପ୍ରହ୍ଲାଦ ପଣ୍ଡାଙ୍କ ସହ ବ୍ୟକ୍ତିଗତ ସମ୍ପର୍କ ସାହିତ୍ୟ ସଭା ଓ ଛାତ୍ର ଆନ୍ଦୋଳନ ମାଧ୍ୟମରେ ରହି ଆସିଥିଲା । ସ୍ନାତକ ଶ୍ରେଣୀରେ ଅଧ୍ୟୟନ ବେଳେ ଅଧ୍ୟାପକ ନରେନ୍ଦ୍ର ପଟ୍ଟନାୟକଙ୍କ ବ୍ୟକ୍ତିଗତ ବନ୍ଧୁ ଭାବେ ପୁଣି କବିରାଜ କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କ ଆଶୀର୍ବାଦ ସିକ୍ତ ପାତ୍ର ରୂପେ ଅଧ୍ୟାପକ ପୂର୍ଣ୍ଣଚନ୍ଦ୍ର ମିଶ୍ରଙ୍କ ସହ ସମ୍ପର୍କ ଗଢ଼ି ଉଠିଥିଲା ।

ଏ ସମୟର ଏକ ଆମୋଦଦାୟକ ଅନୁଭବ ଆଜି ମଧ୍ୟ ଶିହରିତ ଓ ବିଭୋର କରେ । ସେଇଟି ହେଉଛି ଛାତ୍ର ସଂଘର ସୁବର୍ଣ୍ଣ ଜୟନ୍ତୀ ବେଳର । ବ୍ୟକ୍ତିଗତ ରୁଚି ଦୃଷ୍ଟିରୁ ମୁଁ ଆଜନ୍ମ ଚାନ୍ଦା ମାଗିବାର ଘୋର ବିରୋଧୀ । ସେଦିନ କିନ୍ତୁ ମୁଁ ବିଶ୍ୱବିଦ୍ୟାଳୟର ଛାତ୍ର ସଂସଦର ସଭାପତିଙ୍କ ସହ ଭଞ୍ଜବିହାର ଯାଇଥିଲି । ଆଉ ସେ ମୋ ସମକ୍ଷରେ ଅନେକ ଅଧ୍ୟାପକଙ୍କୁ ଚାନ୍ଦା ମାଗିଥିଲେ । ଅନେକ ଚାନ୍ଦା ଦେଇ ନଥିଲେ ବା ନ ଦେବାକୁ ନାନା ବାହାନା କରିଥିଲେ । ପ୍ରାଧ୍ୟାପକ ସୁଦର୍ଶନ ଆଚାର୍ଯ୍ୟ କିନ୍ତୁ ନଗଦ ନାହିଁ କହି କୋଡ଼ିଏ ଟଙ୍କାର ବିୟରର୍ ଚେକ୍‌ଟିଏ ଦେଇଥିଲେ । ଏ ସମୟରେ ଆଉ ଯେଉଁମାନଙ୍କ ସହ ଭେଟ ହୋଇଥିଲା, ସେ ମଧ୍ୟରୁ ଗୋପାଳକୃଷ୍ଣ ରଥ, ଗଗନେନ୍ଦ୍ରନାଥ ଦାଶ ଓ ସୌଭାଗ୍ୟ କୁମାର ମିଶ୍ରଙ୍କ ସହ ସମ୍ପର୍କ ଚିର ସ୍ମରଣୀୟ ହୋଇଗଲା । ମୋର ଏ ସମ୍ପର୍କରେ କୌଣସି ଆଶା କି ଆବିଳତା ନଥିଲା; ନ ଥିଲା ମଧ୍ୟ କୌଣସି ସ୍ୱାର୍ଥ । ଏବେ ବି ମୋର ନିତ୍ୟ ଅନୁଭବ; ଛାତ୍ର-ଶିକ୍ଷକର ସମ୍ପର୍କ ଦିବ୍ୟ । ପିତାମାତାଙ୍କ ସହ ସନ୍ତାନର ସମ୍ପର୍କ କ୍ଷିତିଜ ହୋଇପାରେ, ସେଥିରେ ପ୍ରତ୍ୟାଶାର ସ୍ୱପ୍ନ ଥାଇପାରେ । କିନ୍ତୁ, ଛାତ୍ର-ଶିକ୍ଷକର ସମ୍ପର୍କ ଅନାବିଳ, ଏହା ଆବିଳତା ଓ ସ୍ୱାର୍ଥାନ୍ଧତା ଠାରୁ ବହୁ ଦୂରରେ । ଜଣେ ଛାତ୍ର ଭାବେ କୈଶୋର ଓ ଯୌବନରେ ପୁଣି ଜଣେ ଆତ୍ମସଂତପ୍ତ ଶିକ୍ଷାକର୍ମୀ ଭାବେ ସମଗ୍ର ଯୌବନ କାଳରେ ଓ ଆଜି ବାର୍ଦ୍ଧକ୍ୟର ଦ୍ୱାର ଦେଶରେ ଉପନୀତ ହେବା ସମୟରେ ଏହା ହିଁ ମୋ ଜୀବନର ନିଷ୍କର୍ଷ । ଏ ନିଷ୍କର୍ଷକୁ ଆଜିର ଏ ଅବସରରେ ଆଉ ଟିକିଏ ବିସ୍ତୃତ ଓ ଉନ୍ମୁକ୍ତ ରୂପରେ ସଂସାର ସମକ୍ଷରେ ମୁଁ ଉପସ୍ଥାପନ କରିବାକୁ ଚାହେଁ । ତାହା ହେଉଛି : ଛାତ୍ର-ଶିକ୍ଷକର ଦିବ୍ୟ ସମ୍ପର୍କ ଆନୁଷ୍ଠାନିକତାରେ ବନ୍ଧା ହୋଇ ନପାରେ । ନିଜ ବିଭାଗର ଆନୁଷ୍ଠାନିକ ଛାତ୍ର ସହ କେବଳ ନୁହେଁ, ଅନ୍ୟ ବିଭାଗର ଯଥାର୍ଥ ଛାତ୍ର ସହ ମଧ୍ୟ ଜଣେ ଶିକ୍ଷକର ଅଧିକ ନିବିଡ଼ ସମ୍ପର୍କ ରହିପାରେ । ଖଲ୍ଲିକୋଟ କଲେଜ ଓ ଭଞ୍ଜବିହାରର ବହୁ ଅଣବିଭାଗୀୟ ଶିକ୍ଷକ ମୋର କୃତିତ୍ୱ ଖବର ଶ୍ରବଣରେ ଅନେକ ବିଭାଗୀୟ ଅଧ୍ୟାପକଙ୍କ ଠାରୁ ମଧ୍ୟ ଅଧିକ ଉଲ୍ଲସିତ ହେଉଥିଲେ । ଏହା ମୋର ପ୍ରତ୍ୟକ୍ଷ ଅନୁଭବ । ମୁଁ ମଧ୍ୟ ଜଣେ ଶିକ୍ଷାକର୍ମୀ ଭାବେ ଅଣବିଭାଗୀୟ ଏପରିକି ଅନ୍ୟ ଅନୁଷ୍ଠାନର ବହୁ ଯୋଗ୍ୟ ଛାତ୍ରଛାତ୍ରୀଙ୍କ କୃତିତ୍ୱ ଖବର ପ୍ରତ୍ୟକ୍ଷୀକରଣରେ ଦିବ୍ୟ ଉଲ୍ଲାସ ବହୁବାର ଅନୁଭବ କରିଛି ।

ଏହା ଉଲ୍ଲେଖ କରିବାର ମର୍ମ ହେଲା : ଖଲ୍ଲିକୋଟ କଲେଜ ଓ ଭଞ୍ଜବିହାରରେ ଜୀବନର ଯେଉଁ ଭିତ୍ତି ପଡ଼ିଥିଲା, ତାହା ଆଜି ବି ଏକମାତ୍ର ଭିତ୍ତି ହୋଇ ରହିଛି । ଏହା ଉତ୍‌ଖାତ ହେବା ଦୂରେ ଥାଉ; ଏଥିରେ ଏ ପର୍ଯ୍ୟନ୍ତ ସାମାନ୍ୟ ପରିବର୍ତ୍ତନ ବି ଆସି ନାହିଁ । ଏଭଳି ଦୃଢ଼ ଭିତ୍ତି ସ୍ଥାପନ ଯେଉଁମାନଙ୍କ ପାଇଁ ହୋଇପାରିଛି, ମୋ ଜୀବନର ଏକମାତ୍ର ଅର୍ଜନ, ଏକମାତ୍ର ଜମା ପୁଞ୍ଜି ସେଇ ବନ୍ଧୁ, ସଖା, ତୀର୍ଥଙ୍କରମାନଙ୍କୁ କୃତଜ୍ଞତାର ସହ ହୃଦୟବେଦୀରେ ନିତ୍ୟ ନୈବେଦ୍ୟ ଅର୍ପଣ କରିବା ଭିନ୍ନ ଏ ଅଧମ, ଅନାଡ଼ି, ଅପରିବାର ବୈରାଗୀ - ସଂସାରୀଟି ପକ୍ଷେ ଆଉ କିଛି ସମ୍ଭବ ନୁହେଁ । ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ସ୍ନାତକୋତ୍ତର ଓଡ଼ିଆ ବିଭାଗ ମୋର କାଳଜୟୀ ହେଉ : ଏତିକି ମାତ୍ର ପ୍ରାର୍ଥନା ।

•

*ବିଭାଗ ମୁଖ୍ୟ, ଓଡ଼ିଆ ବିଭାଗ*
*ଶଶିଭୂଷଣ ରଥ ସରକାରୀ ମହିଳା ମହାବିଦ୍ୟାଳୟ,*
*ବ୍ରହ୍ମପୁର*

# ଓଡ଼ିଆ ବିଭାଗ ଭଞ୍ଜବିହାର
# ୟୁନିଭର୍ସିଟି ଆଟ୍ ଗୋପାଳପୁର

**ଡ. ପ୍ରକାଶ କୁମାର ପରିଡ଼ା**

ଗୋପାଳପୁର ସାମୁଦ୍ରିକ ବେଳାଭୂମି ଠାରୁ ଅଳ୍ପ ପୂର୍ବରେ ଅବସ୍ଥିତ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଓରଫ୍ ଭଞ୍ଜବିହାର । ଓଡ଼ିଶାର ଉଚ୍ଚଶିକ୍ଷା କ୍ଷେତ୍ରରେ ଉପାଧ୍ୟୁତ୍ତର ଓ ଗବେଷଣା ସ୍ତରର ତୃତୀୟ ହ୍ୟୁମାନିଟିଜ୍ ଓ ସାଇନ୍ସ ବିଭାଗ ସମୂହର ବିଶ୍ୱବିଦ୍ୟାଳୟ । ପ୍ରତିଷ୍ଠା କାଳ ୧୯୬୭ ।

ଏହି ବିଶ୍ୱବିଦ୍ୟାଳୟର ଅନ୍ୟତମ ପ୍ରାଚୀନ ବିଭାଗ 'ସ୍ନାତକୋତ୍ତର ଓଡ଼ିଆ ଭାଷା-ସାହିତ୍ୟ ବିଭାଗ' ।

ବିଶ୍ୱବିଦ୍ୟାଳୟ କ'ଣ ? ତାହା ମହାବିଦ୍ୟାଳୟଗୁଡ଼ିକ ଠାରୁ କିପରି ପୃଥକ୍ ? ତାହା ମୋତେ ଜଣା ନଥିଲା ନିଜେ ଉପାଧି ସ୍ତର ଅତିକ୍ରମ (୧୯୭୯-୮୦ ଶିକ୍ଷାବର୍ଷ) କରିବା ପର୍ଯ୍ୟନ୍ତ । ଉପାଧ୍ୟୁତ୍ତର ପାଠ୍ୟକ୍ରମରେ ଦାଖଲ ହେବାକୁ ଉତ୍କଳ ବିଶ୍ୱବିଦ୍ୟାଳୟକୁ ଡାକ ଯୋଗେ ଦରଖାସ୍ତ (ଫର୍ମ କାହା ଜରିଆରେ ଅଣାଯାଇଥିଲା) କରି ନାମଲେଖା ସୁଯୋଗ ପାଉଛି କି ନାହିଁ ଖୋଜଖବର ନେବାକୁ ବାଣୀବିହାର ଯାଇ ବିଶ୍ୱବିଦ୍ୟାଳୟର ଆକାର ପ୍ରକାର ଉପରେ ଗୋଟିଏ ଧାରଣା ହୋଇଥିଲା । ଅବଶ୍ୟ ପଢ଼ା ହେଲା ରେଭେନ୍ସା ମହାବିଦ୍ୟାଳୟରେ ।

କିନ୍ତୁ ଠିକଣାରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟକୁ ଦେଖିଥିଲି ୧୯୭୫ ମସିହାରେ । ସେହିବର୍ଷ ଆସନ୍ତାକାଲି ପତ୍ରିକାରେ କବି ସୌଭାଗ୍ୟ କୁମାର ମିଶ୍ରଙ୍କ ବିଶେଷ ସମ୍ପାଦନାରେ ପ୍ରକାଶ ପାଇଥାଏ 'କବି ଆସନ୍ତାକାଲିର' ସ୍ତମ୍ଭ / ପୃଷ୍ଠା ଅଧୀନରେ କବି ସରୋଜ କୁମାର ନାୟକଙ୍କ ୨ଟି କବିତା ସ୍ୱତନ୍ତ୍ର ଭାବେ । ସେହି ପୃଷ୍ଠା ୨ଟି ସଚିତ୍ର ଓ ରଙ୍ଗୀନ୍ ହୋଇଥାଏ । କବିଙ୍କ ଠିକଣା - ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଓ ଥାଏ ସ୍ଥାୟୀ ଠିକଣା ଗହଗା- ନରସିଂହପୁର, ଦାନପୁର, କଟକ । ସ୍ଥାନଟି ଆମ ଗାଁକୁ ପାଖ । ମୁଁ ଲେଖାଲେଖି ଆରମ୍ଭ କରିଦେଇଥାଏ ତ; ବିସ୍ମିତ ଓ ଈର୍ଷିତ ବି ହେଲି ଯେ, ଆମ ଗାଁରେ ମୋ'ଠୁ ଆଗରୁ କବି ବି ଅଛନ୍ତି, ପୁଣି ସିଏ ପତ୍ରିକାରେ ବି ପ୍ରକାଶିତ ହୋଇପାରନ୍ତି ! ପୁଣି ଜାଣିଲି ଯେ ସେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରୁ ଓଡ଼ିଆ ଏମ୍.ଏ. ପାଠ୍ୟକ୍ରମରେ ଦୁଇ ଦୁଇଟି ସ୍ୱର୍ଣ୍ଣପଦକ ବିଜେତା !

ବ୍ରହ୍ମପୁର ବିଶ୍ୱବିଦ୍ୟାଳୟକୁ କଳ୍ପନାରେ ଠଉର କଲି ମହାବିଦ୍ୟାଳୟ ପାଠ୍ୟଧାରାରେ ଇଣ୍ଟରମିଡ଼ିଏଟ୍ ସାଇନ୍ସ ଛାତ୍ର ଭାବେ ଦାଖଲ ହୋଇଥିବା ବେଳେ ।

ସେତେବେଳେ ରେଭେନ୍ସା କଲେଜକୁ ବସ୍‌ରେ ଗଲା ବେଳେ (ଚାନ୍ଦିନୀଚୌକ୍-କେନ୍ଦ୍ରାପଡ଼ା) ଦେଖିଥାଏ କେବଳ । ଏବେ ପଢୁଥାଏ ଢେଙ୍କାନାଳ କଲେଜ୍‌ରେ ।

ସଂଯୋଗ ଯେ ୧୯୭୬ ମସିହାରେ ମୋର ପ୍ରଥମ ମୁଦ୍ରିତ ଗଳ୍ପ ('ଆସନ୍ତାକାଲି', 'ନବରବି' ଦ୍ୱାରା ପ୍ରତ୍ୟାଖ୍ୟାତ ଓ କଟକ କାଳିଗଳିରୁ ପ୍ରକାଶିତ 'ସତରଞ୍ଚ' ତଥା ବାରବାଟୀ ଷ୍ଟାଡ଼ିୟମ ଠିକଣାର 'ଜୋକର୍' ପତ୍ରିକା ଦ୍ୱାରା ସ୍ୱାଗତ ହୋଇ ମଧ୍ୟ ଚାକ୍ଷୁଷ ହୋଇ ନଥିବା କାରଣରୁ) ସେହି ବ୍ରହ୍ମପୁରର ଆଳାପ ଓ ସଂଳାପ ସାହିତ୍ୟ ସଂସ୍ଥାର ମୁଖପତ୍ର 'ଆଳାପନୀ'ରେ ହିଁ ସ୍ଥାନିତ ହୁଏ । ମୋ ଲେଖାଲେଖିର ମୁଦ୍ରଣ ଯୋଗ୍ୟତା ସାବ୍ୟସ୍ତ କରାଇଛି ବ୍ରହ୍ମପୁର । ଏଣୁ ବ୍ରହ୍ମପୁର ପ୍ରତି ମୋର ସମ୍ମାନ ୧୯୭୬ ଠାରୁ ।

ଅନୁଷ୍ଠାନଟିକୁ ଦେଖିଲି – ଓଡ଼ିଆ ବିଭାଗ ମାଧ୍ୟମରେ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ଆୟୋଜିତ ଏକ ସଂପାନରେ ଆଲୋଚନା ପ୍ରବନ୍ଧଟିଏ ପାଠ କରିବା ସୁଯୋଗ ପାଇ – ୨୦୦୭ ମସିହାରେ । ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗର ପ୍ରଫେସରଙ୍କ ଠାରୁ ଛାତ୍ରଛାତ୍ରୀଙ୍କ ଯାଏଁ ଯେଉଁ ଆତିଥେୟତା ପ୍ରଦର୍ଶନ କରିଥିଲେ, ତାହା ଅବିସ୍ମରଣୀୟ ।

ଏ ଘଟଣାର ବହୁ ପୂର୍ବରୁ ବିଭାଗର ଅଧ୍ୟାପକ ଡକ୍ଟର୍ ପ୍ରସନ୍ନ କୁମାର ସ୍ୱାଇଁଙ୍କ ସହ ପରିଚୟ ହୋଇସାରିଥାଏ । ମୋ ସମ୍ପାଦିତ 'ସମୀକ୍ଷକ ଦୃଷ୍ଟିରେ ଦାନାପାଣି'ରେ ତାଙ୍କର ଲେଖାଟିଏ ଥାଏ (୧୯୯୪) ଓ ତାଙ୍କ ସମ୍ପାଦିତ ଗୋପୀନାଥ ମହାନ୍ତିଙ୍କ ଚର୍ଚ୍ଚିତ ଗ୍ରନ୍ଥ 'ଅମୃତ ସ୍ୱାକ୍ଷର' ସଙ୍କଳନରେ ମୋର 'ମାଟିମଟାଳ-ଏକ କ୍ଲାସିକ୍ ଉପନ୍ୟାସ' ରଚନାଟି ସ୍ଥାନ ପାଇଥାଏ । ବନ୍ଧୁ (ଅନର୍ସ ବେଳର) ଡ. କୃଷ୍ଣଚନ୍ଦ୍ର ପ୍ରଧାନ ସେହି ବିଶ୍ୱବିଦ୍ୟାଳୟର ଅଧ୍ୟାପକ ହୋଇ ସାରିଥା'ନ୍ତି ।

ସେଇଠି ପରିଚୟ ହୁଏ ବନ୍ଧୁ ଡକ୍ଟର୍ ଦେବୀପ୍ରସନ୍ନ ପଟ୍ଟନାୟକଙ୍କ ସହିତ । ୧୯୮୧ ଏମ୍.ଏ. ବ୍ୟାଚ୍‌ର ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ ଟପର ହୋଇଥିବା ଦେବୀପ୍ରସନ୍ନଙ୍କ ସମ୍ପର୍କରେ କେବଳ ଜାଣିଥାଏ । ସେ ଯେ ଏଡ଼ିକି ସୁନ୍ଦର ଦେଖି ନଥାଏ । ତହୁଁ ଅଧିକ ତାଙ୍କ ବ୍ୟବହାର- ମିତ୍ରପଣ ।

ସେଇଠି ଭାଇନା ସମ୍ବୋଧନ ପାଉଥିବା ପ୍ରାଧ୍ୟାପକ ଡକ୍ଟର ଅଶ୍ୱିନୀ କୁମାର ପଣ୍ଡାଙ୍କ ବ୍ୟକ୍ତିତ୍ୱରେ ମୁଗ୍ଧ ହୁଏ ।

ଏ ପର୍ଯ୍ୟନ୍ତ ବିଭାଗ ସହିତ ମୋର ଆଉ କିଛି ସମ୍ପର୍କ ଯୋଡ଼ି ହୋଇନଥାଏ ।

ସମ୍ପର୍କ ସ୍ଥାପନା ହେଲା ବିଶ୍ୱବିଦ୍ୟାଳୟରେ ପ୍ରଫେସର୍ ପଦବୀ ପାଇଁ ଆବେଦନ କରି ମୌଖିକ ସାକ୍ଷାତକାରରେ ପହଞ୍ଚିବାରୁ ।

ବନ୍ଧୁ ଦେବୀପ୍ରସନ୍ନ ପଟ୍ଟନାୟକଙ୍କୁ କହିଲି – ମୋର ଏମ୍.ଏ. ରେଭେନ୍ସା, ପିଏଚ୍.ଡ଼ି. ବିଶ୍ୱଭାରତୀ, ରିସର୍ଚ୍ଚ ଏସୋସିଏଟ୍‌ସିପ ଉତ୍କଳରେ । ଡି.ଲିଟ୍. ବ୍ରହ୍ମପୁରରେ କରିବି ।

ବନ୍ଧୁ ପଚାରିଲେ - ଗାଇଡ୍ କାହାଙ୍କୁ ନେବେ ନା ଅଟୋ ସୁପର୍‌ଭିଜନ୍ ?

ମୁଁ କହିଲି - ଗାଇଡ୍ ଆପଣଙ୍କୁ ନେବି ।

ବନ୍ଧୁ ବିସ୍ମିତ ହେଲେ । କହିଲେ - ଆପଣଙ୍କୁ ମୁଁ ଗାଇଡ୍ କରିବି ?

ମୁଁ କହିଲି - ହଁ, ମୋର ବନ୍ଧୁ ଗୌରହରି ତ ମୋ ସୁପରଭିଜନ୍‌ରେ କାମ କରିଛନ୍ତି ।

ଅତଃ ସେହିଦିନ ୨୦୧୩ ମସିହା ମାର୍ଚ୍ଚ ମାସରେ ମୁଁ ଓଡ଼ିଆ ଭାଷା-ସାହିତ୍ୟ ବିଭାଗର ଗବେଷଣା-ଛାତ୍ର ଭାବେ ପଞ୍ଜୀକରଣ ପ୍ରସ୍ତୁତି ଆରମ୍ଭ କରିବା ମାର୍ଫତ୍‌ରେ ବସ୍ତୁତଃ ଛାତ୍ର ପାଲଟିଗଲି । ପାଲଟିଲି ୧୦/୨୦୧୩ ପଞ୍ଜୀକରଣ କ୍ରମାଙ୍କ ସହିତ ।

ଶୋଧ ନିବନ୍ଧ ପ୍ରସ୍ତୁତି ଓ ଦାଖଲ ଭିତରେ ବିଭାଗର ଅଧ୍ୟାପକ ଡ. ସଦାନନ୍ଦ ନାୟକଙ୍କ ସହ ଥିବା ପୂର୍ବ ପରିଚୟ (ଉତ୍କଳରେ ୧୯୯୨-୯୫ ସମୟରେ ମୁଁ ରିସର୍ଚ୍ଚ ଆସୋସିଏଟ୍ ଥିବା ବେଳେ ସେ ସେଠାରେ ଗବେଷକ ଥିଲେ) ଘନିଷ୍ଠ ହୁଏ ।

ଚିହ୍ନା ହୁଅନ୍ତି ମୋର ଆଦର୍ଶ ଓ ଈର୍ଷଣୀୟ ଗବେଷକ ଡକ୍ଟର୍ ପ୍ରସନ୍ନ କୁମାର ପଟ୍ଟନାୟକ । ଈର୍ଷଣୀୟ ଏଇଥି ପାଇଁ ଯେ, ତାଙ୍କ ମୁଦ୍ରିତ ଗବେଷଣା ସନ୍ଦର୍ଭ 'ଓଡ଼ିଆ କବିତାରେ ଶାସ୍ତ୍ରୀୟ ଚିନ୍ତାଧାରା' ପଢ଼ି ହଜମ କରିବା କଷ୍ଟ ହୋଇଥିଲା ଓ ତହିଁରେ ବେଦ ଠାରୁ ସର୍ବାଧୁନିକ ସାହିତ୍ୟ ବିଚାରରୁ ତଥ୍ୟ ଆହରଣ, ବିନିଯୋଗ ଏବଂ ସ୍ୱ-ମତ ସାବ୍ୟସ୍ତର ପ୍ରସାରିତ ଦିଗନ୍ତ ମୋତେ ଅଭିଭୂତ କରିଥିଲା ।

ବନ୍ଧୁ ଦେବୀପ୍ରସନ୍ନ ତତ୍ତ୍ୱାବଧାରକ । ଏଣୁ ମୋର ସେ ସାର୍ ପାଲଟିଗଲେ । ଏପରିକି ତାଙ୍କୁ ମୋ ପ୍ରତିଷ୍ଠିତ ସୁରେନ୍ଦ୍ର ଗବେଷଣା ଅକାଦେମୀର ବାର୍ଷିକୋତ୍ସବରେ ଜଣେ ପ୍ରବନ୍ଧ ଉପସ୍ଥାପକ ଅତିଥି ଭାବେ ବରଣ କରି କୃତକାମ ହୋଇପାରିଲି । ଅବଶ୍ୟ ସମ୍ବଲପୁର ବିଶ୍ୱବିଦ୍ୟାଳୟର ରିଫ୍ରେସର୍ ପାଠ୍ୟକ୍ରମରେ ତାଙ୍କର ୨ଟି ପାଠ୍ୟଦାନ ଶୁଣି ସାରିଥିଲି ଓ ପ୍ରଭାବିତ ହୋଇଥିଲି । ତାଙ୍କର ଗୋଟିଏ ପେପ୍‌ର ଥିଲା - ଡାଇଲଗିଜ୍‌ମ୍ ।

ତେବେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ ସ୍ନାତକୋତ୍ତର ବିଭାଗ ପ୍ରତି ଅନ୍ୟତମ ଓ ପ୍ରମୁଖ ଦୁର୍ବଳତାର କାରଣ ନିହିତ ଅଛି ବିଭାଗର ପ୍ରଫେସର୍‌ମାନଙ୍କ ଓଡ଼ିଆ ସମୀକ୍ଷା ସାହିତ୍ୟ ପ୍ରତି ଅବଦାନ ପାଠକ/ଗ୍ରାହକ ଭାବେ ।

ପ୍ରଫେସର୍ କାହ୍ନୁଚରଣ ମିଶ୍ର - 'ଓଡ଼ିଶୀ ବୈଷ୍ଣବଧର୍ମ,' ପ୍ରଫେସର୍ ସୁଦର୍ଶନ ଆଚାର୍ଯ୍ୟ - 'ଓଡ଼ିଆ କାବ୍ୟକୌଶଳ', ପ୍ରଫେସର୍ ଗଗନେନ୍ଦ୍ରନାଥ ଦାଶ - 'ଓଡ଼ିଆ ଭାଷାଚର୍ଚ୍ଚାର ପରମ୍ପରା', ପ୍ରଫେସର୍ ଦାଶରଥି ଦାସ - 'ସାହିତ୍ୟ ସନ୍ଧାନ' ଆଦି ଓଡ଼ିଆ ସମୀକ୍ଷା ସାହିତ୍ୟକୁ ଋଦ୍ଧିମନ୍ତ କରିଥିବା ପ୍ରବୀଣ ଆଚାର୍ଯ୍ୟଗଣ ଚିରକାଳ ସାହିତ୍ୟ ପାଠକ / ଆଲୋଚକଙ୍କ ପ୍ରଣମ୍ୟ; ଅତଏବ ମୋର ମଧ୍ୟ । ଏମାନଙ୍କ ବିଦ୍‌ବତ୍ତା, ଗବେଷଣା ଓ

ଗବେଷଣା ଦିଗ୍‌ଦର୍ଶନରେ ପ୍ରତ୍ୟକ୍ଷ ନହେଲେ ବି ପରୋକ୍ଷରେ ମୁଁ ଉପକୃତ । ଏମାନେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ସ୍ନାତକୋତ୍ତର ଓଡ଼ିଆ ବିଭାଗକୁ ମଣ୍ଡନ କରିଥିବା କାରଣରୁ ସ୍ୱଭାବତଃ ମୁଁ ବିଭାଗ ପ୍ରତି କୃତଜ୍ଞ / ଅନୁରକ୍ତ ।

ମୋ ସାମସମୟିକ ଖଣ୍ଡରେ ପ୍ରଫେସର୍ ଦେବୀପ୍ରସନ୍ନ ପଟ୍ଟନାୟକ ମୌଳିକ କବିତା ଓ ପ୍ରବନ୍ଧ ରଚନାରେ ଯେମିତି ନିଜେ ନିଜର ଉଦାହରଣ; ସେମିତି ସମୀକ୍ଷା ରଚନା ଓ ସଙ୍କଳନ ତଥା ସମ୍ପାଦନା କ୍ଷେତ୍ରରେ ଅବିକଳ୍ପ । ତାଙ୍କ ରଚନାବଳୀର ମୁଁ ପ୍ରିୟ ପାଠକ ତଥା ତାଙ୍କ ସମ୍ପାଦିତ ସମୀକ୍ଷା ସଂଗ୍ରହ ଓ ଗବେଷଣା ନିବନ୍ଧର ପ୍ରିୟ ପ୍ରଶଂସକ ମଧ୍ୟ । ସାମାନ୍ୟ ଈର୍ଷା ସହିତ । ସେଇଥିପାଇଁ ତ ତାଙ୍କୁ ଡି.ଲିଟ୍. ଗବେଷଣାର ଦିଗ୍‌ଦର୍ଶକ ଭାବେ ଗ୍ରହଣ କରିଛି ।

ମୋର ବନ୍ଧୁ ପ୍ରଫେସର୍ କୃଷ୍ଣଚନ୍ଦ୍ର ପ୍ରଧାନ ଏହି ବିଭାଗରେ ଥାଇ ତାଙ୍କ ସର୍ଜନା ସମୁଚ୍ଚୟର ଅଧିକ ଭାଗ ଲିଖନ ଓ ପ୍ରକାଶନ କରାଇପାରିଛନ୍ତି । ଲୋକ ସାହିତ୍ୟ, ସାହିତ୍ୟର ସାଂସ୍କୃତିକ ଇତିହାସ ପୁସ୍ତକଗୁଡ଼ିକ ତ ବିପୁଳ ପାଠକୀୟ ଶ୍ରଦ୍ଧା ପାଇଥାଏ ତଥା ତାଙ୍କ ସମ୍ପାଦିତ 'ମନୋଜ କଳା କଳନା' ଓ 'ଉତ୍ତର ଆଧୁନିକ ସାହିତ୍ୟ' ଗ୍ରନ୍ଥ ଦୁଇଟି ଗବେଷକମାନଙ୍କ ପାଇଁ ଅତି ଉପାଦେୟ । ପ୍ରଫେସର୍ ପ୍ରଧାନଙ୍କ ସମୀକ୍ଷା କ୍ଷେତ୍ରକୁ ଅବଦାନ ସ୍ୱତନ୍ତ୍ର ପ୍ରବନ୍ଧର ଅପେକ୍ଷା ରଖେ ।

ଅନୁଜ ପ୍ରତିମ ପ୍ରଫେସର୍ ପ୍ରସନ୍ନ କୁମାର ସ୍ୱାଇଁଙ୍କ ଗବେଷଣା କୁଶଳତା, ସମୀକ୍ଷା ଆଗ୍ରହ ଓ ସମ୍ପାଦନା ସାମର୍ଥ୍ୟ ମଧ୍ୟ ସଂପୃକ୍ତ କ୍ଷେତ୍ରରେ ତାଙ୍କୁ ପ୍ରତିଷ୍ଠା ଦେଇଛି । ତାଙ୍କ ସାମର୍ଥ୍ୟରେ ସେ ଆହୁରି ଶୀର୍ଷକୁ ଉଠିବା ନିଃସନ୍ଦେହ ।

୨୦୦୫-୨୦୦୭ ମସିହାରେ ବିଭାଗର ଛାତ୍ର ମନୋରଞ୍ଜନ ବିଷୋୟୀ ତାଙ୍କ ବ୍ୟବହାର କୁଶଳତାରେ ମୋର ପ୍ରିୟତା ଅର୍ଜିଥିଲେ । ତାଙ୍କ ସହିତ ମୋର ଫଟୋଟିଏ ଅଛି ସେହି ସେମିନାର ଚାଲୁଥିଲା ବେଳେ । ସେ ସୁରେନ୍ଦ୍ର ମହାନ୍ତିଙ୍କ କଥା ସାହିତ୍ୟର ଗବେଷକ ଅଛନ୍ତି ଜାଣିଲି ପ୍ରଫେସର ପଦ ପାଇଁ ଇଣ୍ଟରଭ୍ୟୁ ଦେଉଥିଲା ବେଳେ । ତାଙ୍କ କାମରେ ଲାଗିବ ଓ ମୋର ବୋଝ ଊଣା ହେବ । ତେଣୁ ତାଙ୍କୁ ମୋ ସମ୍ପାଦିତ 'ସୁରେନ୍ଦ୍ର ସାହିତ୍ୟ ସମୀକ୍ଷଣ' ଓ 'ଶତାବ୍ଦୀର ସାରସ୍ୱତ ସ୍ୱର ସରସ୍ୱତୀ ସୁରେନ୍ଦ୍ର' ବହି ତାଙ୍କୁ ଉପହାର ଦେଇଥିଲି । ସମ୍ପ୍ରତି ସେ ବିଭାଗର ଆସିଷ୍ଟାଣ୍ଟ ପ୍ରଫେସର୍ । ଡକ୍ଟରେଟ୍ ଡିଗ୍ରୀପ୍ରାପ୍ତ । ତାଙ୍କୁ ମୋ ସଚିବତ୍ୱରେ ପରିଚାଳିତ ପୁନର୍ନବା ସାହିତ୍ୟ ସଂସଦର (ସ୍ଥା-୧୯୮୨) ୩୭ତମ ଜନ୍ମ ଉତ୍ସବରେ 'ସୁରେନ୍ଦ୍ର ଗବେଷଣା ସମ୍ମାନ' ପ୍ରାପକ ଭାବେ ପାଇ ଆନନ୍ଦିତ ହୋଇଥିଲି ।

ମୋ ସନ୍ଦର୍ଭ (ଡି.ଲିଟ୍.) ଦାଖଲ କଲା ବେଳେ ଦାପ୍ତରିକ କାର୍ଯ୍ୟରେ ତାଙ୍କର ସହଯୋଗ ଅବିସ୍ମରଣୀୟ ରହିବ । ଅଧିକନ୍ତୁ ସେ ମୋତେ ନବ ପ୍ରତିଷ୍ଠିତ ଦକ୍ଷିଣ ଓଡ଼ିଶାର

ସାଂସ୍କୃତିକ ଗବେଷଣା କେନ୍ଦ୍ର ଓ ସଂଗ୍ରହାଳୟ ବୁଲାଇ ଦେଖାଇ ଦକ୍ଷିଣ ଓଡ଼ିଶାର ସାହିତ୍ୟ-ସଂସ୍କୃତି- କଳା-ଲୋକ ଉପାଦାନ ସହିତ ପ୍ରତ୍ୟକ୍ଷ କରାଇଦେଇଥିଲେ ।

ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ ସ୍ନାତକୋତ୍ତର ଓ ଗବେଷଣା ବିଭାଗ ଓଡ଼ିଆ ଭାଷା-ସାହିତ୍ୟ କ୍ଷେତ୍ରକୁ ବହୁ ଭାବରେ ସମୃଦ୍ଧ କରିଛି । ବିଭାଗ ସହିତ ମୋର ନାହିନାତ୍ ଏଇ ପାଞ୍ଚ-ଛ'ବର୍ଷର । ତେବେ ମୁଁ ଗୌରବାନ୍ୱିତ ଯେ ମୁଁ ମଧ୍ୟ ବିଭାଗର ଜଣେ ଛାତ୍ର ସଦସ୍ୟ । ଓଡ଼ିଆ ଭାଷା-ସାହିତ୍ୟ ବିଭାଗର ସମ୍ମାନ ପାଠାଗାରକୁ ମୋ ଲିଖିତ ସମସ୍ତ ପୁସ୍ତକର ଏକକିତା ପ୍ରଦାନ କରିବାକୁ ଅଙ୍ଗୀକାର କରୁଛି ମୋର ସାମାନ୍ୟତମ ଋଣମୁକ୍ତି ଭାବେ ।

ଏହି ବିଭାଗର ସୁବର୍ଣ୍ଣ ସମ୍ବତ୍ସର ଅବକାଶରେ ବିଭାଗର ମୁଖପତ୍ର 'ଆକାଙ୍କ୍ଷା'ର ସ୍ୱତନ୍ତ୍ର ବିଶେଷାଙ୍କ ପାଇଁ ମୋର ଏହି ସ୍ମୃତିଚାରଣ ସମ୍ପାଦନା କତୁରି ଅତିକ୍ରମ କରିପାରିଲେ, ନିଜକୁ ଗୌରବାନ୍ୱିତ ମନେ କରିବି ।

•

*ପ୍ରାଧ୍ୟାପକ, ଓଡ଼ିଆ ବିଭାଗ,*
*ଚାନ୍ଦୋଳ କଲେଜ, ଚାନ୍ଦୋଳ, କେନ୍ଦ୍ରାପଡ଼ା*

# ଭଞ୍ଜବିହାରରେ ଅଭୁଲା ସ୍ମୃତି

**ଡ. ହରିକୃଷ୍ଣ ନାୟକ**

"ସ୍ମୃତି ତ କଦାପି ନୁହେଁ ଫିଙ୍ଗିବାର
ପାରିଲେ ଫିଙ୍ଗି ସେ ଲଭନ୍ତା ନିସ୍ତାର ।" (ନନ୍ଦିକେଶ୍ୱରୀ)

ଯୁଗସ୍ରଷ୍ଟା କବିବର ରାଧାନାଥ ରାୟଙ୍କ ରଚିତ 'ନନ୍ଦିକେଶ୍ୱରୀ' କବ୍ୟାଂଶଟିରେ ଏକ ଲୁକ୍କାୟିତ ଭାବସତ୍ତା ରହିଛି । ତାହା ବର୍ତ୍ତମାନ ମୁଁ ମର୍ମେ ମର୍ମେ ଉପଲବ୍ଧି କରୁଛି । ସ୍ମୃତିକୁ କେବେ ଫିଙ୍ଗି ଦିଆଯାଇପାରେନା, କାରଣ ଏହା ଫିଙ୍ଗିବାର ଦ୍ରବ୍ୟ ନୁହେଁ ।

"ଏ' ବିଶ୍ୱବିଦ୍ୟାଳୟ ମୋ ସ୍ମୃତିପୀଠ କେତେ ଆପଣାର
ଭକ୍ତିରେ ମୋ ମଥା ନଇଁଯାଏ ତା'ପାଦେ ମୋ କୋଟି ନମସ୍କାର ।"

ଆଜକୁ ପ୍ରାୟ ୩୮ବର୍ଷ ହେବ ୧୯୮୦ ମସିହାରେ ବିଜ୍ଞାନ ମହାବିଦ୍ୟାଳୟ, ହିଞ୍ଜିଳିକାଟୁରୁ ବି.ଏ. ଶ୍ରେଣୀରେ ଉତ୍ତୀର୍ଣ୍ଣ ହେବା ପରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ଓଡ଼ିଆ ଭାଷା ସାହିତ୍ୟରେ ସ୍ନାତକୋତ୍ତର (ଏମ୍.ଏ.) ଶ୍ରେଣୀର ଅଧ୍ୟୟନ କରିବା ସୁଯୋଗ ଓ ସୌଭାଗ୍ୟ ଲାଭ କଲି । ୧୯୮୨ ମସିହାରେ ସ୍ନାତକୋତ୍ତର ଶିକ୍ଷା ସମାପ୍ତ ହେଲା । ବିଦ୍ୟାର୍ଜନ କାର୍ଯ୍ୟ ସମାପ୍ତ ହୋଇଯାଇଥିଲେ ମଧ୍ୟ ବିଶ୍ୱବିଦ୍ୟାଳୟରେ ସହାଧ୍ୟାୟୀ ବନ୍ଧୁମାନଙ୍କ ସହ ହର୍ଷ-ବିଷାଦ ମୁହୂର୍ତ୍ତ ଅତିବାହିତ ହୋଇଛି । ଆଜି ସେହି ଅତୀତର ଛବିମାନ ଗୋଟି ଗୋଟି କରି ମୋ ଚକ୍ଷୁ ସମ୍ମୁଖରେ ନାଚିଯାଉଛି । ମୋ ପରି ମୋର ସହାଧ୍ୟାୟୀ ବନ୍ଧୁମାନେ ଗଞ୍ଜାମ ତଥା ଓଡ଼ିଶାର ବିଭିନ୍ନ ମହାବିଦ୍ୟାଳୟରେ ଅଧ୍ୟାପକ ଭାବେ ଅଧ୍ୟାପନା କରି ଛାତ୍ରଛାତ୍ରୀମାନଙ୍କର ପ୍ରିୟଭାଜନ ହୋଇପାରିଛନ୍ତି ।

ବାସ୍ତବରେ ଏହି ବିଶ୍ୱବିଦ୍ୟାଳୟ ଏକ ଶିକ୍ଷାର କୋଣାର୍କ । ନିଜ ଗୁଣରେ ସେ ମହୀୟାନ୍ । ସମସ୍ତ ଅଧ୍ୟାପକ, ଅଧ୍ୟାପିକା, କର୍ମଚାରୀ, ଛାତ୍ରଛାତ୍ରୀମାନଙ୍କ ବିନ୍ଦୁଏ ବିନ୍ଦୁଏ ଅମୃତରେ ସେ ପାଲଟିଯାଇଛି ମହୋଦଧି । ଏହି ପବିତ୍ର ଶିକ୍ଷାନୁଷ୍ଠାନ ଆମ୍ଭମାନଙ୍କୁ ଦେଇଥାଏ ଅପୂର୍ବ ଦିଗ୍‌ଦର୍ଶନ । ଏହା ଏକ ସ୍ମୃତି ସ୍ନିଗ୍ଧ ପୁଣ୍ୟ ଶିକ୍ଷାସ୍ଥଳୀ । ଓଡ଼ିଆ ଭାଷା ସାହିତ୍ୟ ପାଇଁ ଅକ୍ଷୟ କୀର୍ତ୍ତି ଅର୍ଜନ କରିଥିବା କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଓଡ଼ିଶା ମାଟିରେ ଚିର ନମସ୍ୟ ହୋଇ ରହିଛନ୍ତି, ତେଣୁ ତାଙ୍କୁ ସ୍ମରଣୀୟ କରିବା ଉଦ୍ଦେଶ୍ୟରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟକୁ 'ଭଞ୍ଜବିହାର' ନାମରେ ନାମିତ କରାଯାଇଛି ।

ସୁଷମା ସମନ୍ୱିତ ବୈଚିତ୍ର୍ୟ ମଣ୍ଡିତ ପ୍ରକୃତିର ଶ୍ୟାମାୟିତ କ୍ରୋଡ଼ରେ ପ୍ରତିଷ୍ଠିତ ଆମ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ । ଏହାର ଚତୁର୍ଦ୍ଦିଗରେ ବେଢ଼ି ରହିଛି ଝାଉଁବଣ, ମନୋରମ ପୁଷ୍ପ ଉଦ୍ୟାନ । ଏହାର ଗୋଟିଏ ପାର୍ଶ୍ୱରେ ଧାଡ଼ି ଧାଡ଼ି ଆମ୍ରବୃକ୍ଷ । ତା' ଉହାଡ଼ରୁ ଝରି ଆସୁଥିଲା ପିକର ପଞ୍ଚମ ତାନର ଝଙ୍କାର । ଏହାର ଅପର ପାର୍ଶ୍ୱରେ ରହିଛି ଦୀର୍ଘ ସମତଳ ଭୂମି, ଯେଉଁଥିରେ ଅବତରଣ କରୁଛ ବ୍ୟୋମଯାନ (Aeroplane) । ଭଞ୍ଜବିହାର ଅନତି ଦୂରରେ ଥିବା ଗୋପାଳପୁର ବେଳାଭୂମିର ରୂପ ବିଭବ ଜନମନକୁ ଆକର୍ଷିତ କରିବା ସାଙ୍ଗକୁ ପ୍ରଭାତ ଓ ସନ୍ଧ୍ୟା କାଳରେ ମୃଦୁଗୁଞ୍ଜନ ସୃଷ୍ଟି କରି ବହି ଆସୁଥିବା ମନ୍ଦ ସମୀର ଏହାର ଅନ୍ତେବାସୀ ତଥା ପର୍ଯ୍ୟଟକମାନଙ୍କୁ ବିଶେଷ ଆନନ୍ଦ ପ୍ରଦାନ କରିଥାଏ । ପ୍ରକୃତରେ ଏହା ଏକ ଆନନ୍ଦଦାୟକ ସ୍ମୃତି ।

ଏ ମାଟି, ପାଣି, ପବନ ଏହାର ଆତ୍ମା କହେ ପୂଜ୍ୟପୂଜା ପରମ୍ପରାର କଥା । ସେହି ମୋର ପୂଜ୍ୟ ଗୁରୁମାନେ ହେଲେ- ପ୍ରଫେସର୍ ଡ. କାହ୍ନୁଚରଣ ମିଶ୍ର, ଡ. ଶ୍ରୀନିବାସ ମିଶ୍ର, ଡ. ସୀତାରାମ ମହାପାତ୍ର, ଡ. ଗଗନେନ୍ଦ୍ରନାଥ ଦାଶ ଓ ଡ. ସୁଦର୍ଶନ ଆଚାର୍ଯ୍ୟ । ଏହି ଗୁରୁମାନଙ୍କ ଶିକ୍ଷା, ଉପଦେଶ ଓ କର୍ମଧାରା ଆମ୍ଭମାନଙ୍କୁ ସାର୍ଥକ ଭାବରେ ପଥପ୍ରଦର୍ଶନ କରିଛି । ଆଦର୍ଶର ମାଇଲଖୁଣ୍ଟ ହୋଇ ପ୍ରେରଣା ଦେଇଛି । ତାହା ଆଜି ମୋ ଜୀବନରେ ସ୍ମୃତି ହୋଇ ରହିଯାଇଛି । ମନେ ପଡ଼େ, ସେହି ଦିବାତ୍ମା ଗୋସ୍ୱାମୀ ତୁଳସୀ ଦାସଙ୍କ ଉକ୍ତିଟିଏ-

"ଶ୍ରୀଗୁରୁ ପଦନଖ୍ୟ ମନିଗନ ଜ୍ୟୋତି ॥ ସୁମରିତ ଦିବ୍ୟ ଦୃଷ୍ଟି ହିଏ ହୋତି ॥"

ଶ୍ରୀଗୁରୁ ପଦନଖ ମଣିର ଜ୍ୟୋତି ସ୍ମରଣରେ ହୃଦୟରେ ଦିବ୍ୟ ଦୃଷ୍ଟି ଲାଭ ହୁଏ । ତାହା ମୁଁ ଉପଲବ୍ଧି କରିଛି ।

ଏମ୍.ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାର ଏକ ବର୍ଷ ପରେ ବିଜ୍ଞାନ ମହାବିଦ୍ୟାଳୟ, କଙ୍କୋରଡ଼ାରେ ଓଡ଼ିଆ ବିଭାଗର ଅଧ୍ୟାପକ ଭାବେ ନିଯୁକ୍ତି ପାଇଲି । ୧୯୯୦ ମସିହାରେ 'ସାରଳା ମହାଭାରତରେ ସାମାଜିକ ଆଦର୍ଶ' ନାମକ ଗବେଷଣାତ୍ମକ ନିବନ୍ଧ ଲେଖି ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡି. ଡିଗ୍ରୀ ଲାଭ କରିଅଛି ।

ମୋର ତତ୍ତ୍ୱାବଧାରକ ଥିଲେ ପରମପୂଜ୍ୟ ଡକ୍ଟର୍ ଉପେନ୍ଦ୍ର ନାୟକ । ଗୁରୁମାନଙ୍କ ଆଶୀର୍ବାଦ ତଥା ସେମାନଙ୍କ ଉତ୍ତମ ଶିକ୍ଷାଦାନ ଯୋଗୁ ମୋର ତତ୍ତ୍ୱାବଧାନରେ ଏକାଧିକ ଗବେଷକ / ବିଦ୍ୟାର୍ଥୀ ଗବେଷଣା କରି ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡି. ଉପାଧି ଲାଭ କରିଛନ୍ତି । ଏ କ୍ଷେତ୍ରରେ ସ୍ନାତକୋତ୍ତର ଓଡ଼ିଆ ବିଭାଗର ସମସ୍ତ ସାହାଯ୍ୟ, ସହାନୁଭୂତି ଓ ମାର୍ଗଦର୍ଶନ ଅତୁଳନୀୟ । ଏ ଅବସରରେ ସମସ୍ତ ଶିକ୍ଷକଙ୍କୁ ଆନ୍ତରିକ କୃତଜ୍ଞତା ଜ୍ଞାପନ ସହ ପ୍ରଣାମ କରୁଛି ।

ଆଜି ମୁଁ ମୋର ସ୍ମୃତିର ଅନ୍ୟତମ ଆକର୍ଷଣ ପବିତ୍ର ଶିକ୍ଷାନୁଷ୍ଠାନ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ପାଇଁ ଗର୍ବ ଅନୁଭବ କରେ । ପୂଜ୍ୟ ଗୁରୁମାନଙ୍କ ଜ୍ଞାନାଲୋକ ମୋ ଜୀବନକୁ ସାର୍ଥକ କରିଥିବାରୁ ଏ ଅନୁଷ୍ଠାନ ମୋ ପାଇଁ ଏକ ତୀର୍ଥକ୍ଷେତ୍ର । ନିଶ୍ଚିତ ଭାବେ ମୋ ଜୀବନରେ ଏହା ଅଭୁଲା ସ୍ମୃତି ରୂପେ ସ୍ମରଣୀୟ ହୋଇ ରହିବ । ପରିଶେଷରେ ସର୍ବଶକ୍ତିମାନ ଶ୍ରୀଜଗନ୍ନାଥଙ୍କ ଶ୍ରୀଚରଣାରବିନ୍ଦରେ ମୋର ବିନମ୍ର ପ୍ରଣାମ ନିବେଦନ କରି ଏହି ଅନୁଷ୍ଠାନର ଉତ୍ତରୋତ୍ତର ଅଭିବୃଦ୍ଧି କାମନା କରୁଛି ।

•

*ପ୍ରାକ୍ତନ ଅଧକ୍ଷ, କଙ୍କୋରଡ଼ା ବିଜ୍ଞାନ ମହାବିଦ୍ୟାଳୟ*
*କଙ୍କୋରଡ଼ା, ଗଞ୍ଜାମ*

# ଆମେ ତ ଭାଗ୍ୟବାନ୍ ପିଲା

**ଡ. ଅଶୋକ କୁମାର ତ୍ରିପାଠୀ**

ଭଞ୍ଜବିହାର ଓଡ଼ିଆ ବିଭାଗର ୧୯୮୦-୮୨ ବ୍ୟାଚ୍ ପିଲାମାନେ ସତରେ ବଡ଼ ଭାଗ୍ୟବାନ୍ । କାରଣ ଏହି ବ୍ୟାଚ୍‌ର ଦ୍ୱିତୀୟ ବର୍ଷ ଅର୍ଥାତ୍ ୧୯୮୧-୮୨ ବର୍ଷ ଆମେ ଯେଉଁ ଯେଉଁ ବରେଣ୍ୟ ବିଦ୍ୱାନ୍ ପ୍ରଫେସରମାନଙ୍କ ସାହଚର୍ଯ୍ୟ ଲାଭ କରିଥିଲୁ, ତାହା ପୂର୍ବବର୍ତ୍ତୀ କୌଣସି ବ୍ୟାଚ୍‌ରେ ଘଟିଥିବା ଭଳି ମନେ ହେଉନି ଏବଂ ପରବର୍ତ୍ତୀ ବ୍ୟାଚ୍‌ମାନଙ୍କରେ ଘଟିବାର ସମ୍ଭାବନା କ୍ଷୀଣ ଥିଲା । ଆମ ପାଠ୍ୟକ୍ରମ ଅନ୍ତର୍ଭୁକ୍ତ ସଂସ୍କୃତର 'କୁମାର ସମ୍ଭବମ୍' ଓ ପ୍ରାକୃତର 'କର୍ପୂର ମଞ୍ଜରୀ' ପଢ଼ାଇବା ଲାଗି ପରିଦର୍ଶକ ପ୍ରଫେସର୍ ଭାବରେ ଆସୁଥିଲେ ପଣ୍ଡିତ ପ୍ରବର ଡକ୍ଟର୍ ଅନନ୍ତ ତ୍ରିପାଠୀ ଶର୍ମା । ସେହିଭଳି ଓଡ଼ିଆ ଭାଷାର ରୂପତତ୍ତ୍ୱ ପଢ଼ାଇବା ସକାଶେ ପ୍ରଫେସର୍ ଡ. କୁଞ୍ଜବିହାରୀ ତ୍ରିପାଠୀ ଏବଂ ପାଲି 'ଧମ୍ମପଦ' ତଥା 'ଜାତକ କଥା' ପଢ଼ାଇବା ଉଦ୍ଦେଶ୍ୟରେ ଆସିଥିଲେ ପ୍ରଫେସର୍ ଡ. ପ୍ରହ୍ଲାଦ ପ୍ରଧାନ । ଶେଷରେ ଡ. ବେଣୀମାଧବ ପାଢ଼ୀ ସେହିବର୍ଷ ପରିଦର୍ଶକ ପ୍ରଫେସର୍ ଭାବରେ ଆସି ପ୍ରଥମ ବର୍ଷ ପିଲାମାନଙ୍କୁ କ'ଣ ଗୋଟେ ବିଷୟ ପଢ଼ାଉଥିଲେ । ସେତିକି ବେଳକୁ ଆମର 'ଶିଳାଲେଖ' ବିଷୟଟି ପଢ଼ା ହୋଇ ନଥିଲା । ଡ. ସୁଦର୍ଶନ ଆଚାର୍ଯ୍ୟ ମତେ କହିଲେ ବେଣୀମାଧବ ପାଢ଼ୀଙ୍କୁ ଅନୁରୋଧ କରିବା ପାଇଁ । ମୁଁ ଅନୁରୋଧ କଲାରୁ ସେ ତତ୍‌କ୍ଷଣ ରାଜି ହୋଇଗଲେ, ଆଉ ଅପରାହ୍ଣରେ ୪ଦିନ ୪ଟି କ୍ଲାସ୍ ନେଇ ବିଷୟ ସାରିଥିଲେ ।

ଏହି ପ୍ରଫେସରମାନେ ସେହି ସେହି ବିଷୟରେ ଥିଲେ ଦିଗ୍‌ଗଜ ପଣ୍ଡିତ, ଅଦ୍ୱିତୀୟ କର୍ଣ୍ଣଧାର । ସେହି ସେହି ବିଷୟ ଭିତ୍ତିକ ପ୍ରାଥମିକ ତଥା ପ୍ରାମାଣିକ ଓଡ଼ିଆ ସମାଲୋଚନା ଗ୍ରନ୍ଥ ମଧ୍ୟ ଏହିମାନଙ୍କ ଦ୍ୱାରା ରଚିତ ହୋଇଥିଲା । ସେତିକି ବେଳକୁ ସେମାନେ ଅବସର ପ୍ରାପ୍ତ ପ୍ରଫେସର୍, ଅର୍ଥାତ୍ ଅଭିଜ୍ଞତା ପରିପକ୍ୱ, ଅନୁଭୂତିସିକ୍ତ ଏବଂ ଅଧ୍ୟୟନ ଉତ୍ତୀର୍ଣ୍ଣ । ଆଶ୍ଚର୍ଯ୍ୟ କଥା - ସେତେବେଳେ ଯେଉଁ ବିଷୟଗୁଡ଼ିକ ଆମେ ବହି ଦେଖି ମଧ୍ୟ ଉଚ୍ଚାରଣ କରିପାରୁ ନଥିଲୁ, ସେମାନେ ସେଗୁଡ଼ିକୁ ବହି ନଦେଖି ଘଣ୍ଟା ଘଣ୍ଟା ପଢ଼ାଇ ଦେଇ ପାରୁଥିଲେ । ଜୀବନର ସାୟଂକାଳରେ ମଧ୍ୟ ସେମାନଙ୍କର ସ୍ମରଣ ଶକ୍ତି ଏତେ ପ୍ରଖର ଥିଲା ଯେ, ତାକୁ ଆମେ କଳନା କରିପାରୁନଥିଲୁ; ତାଟକା ହେଇ ଖାଲି ବଲବଲ ଚାହୁଁଥିଲୁ । ପରିଦର୍ଶୀ ପ୍ରଫେସରମାନେ ଆମର କ୍ଲାସ୍ ନେଲା ବେଳେ ଆମ ଉପର ବ୍ୟାଚ୍‌ର

ଭାଇନାମାନେ (ଦେବୀଭାଇ, ମଧୁଭାଇ ପ୍ରମୁଖ) ଏବଂ ବେଳେ ବେଳେ ସାର୍‌ମାନେ (ସୁଦର୍ଶନ ସାର୍, ସୀତାରାମ ସାର୍ ପ୍ରଭୃତି) ଆସି କ୍ଲାସ୍‌ରେ ବସୁଥିଲେ । ପାଠ ପଢ଼ାଇଲା ବେଳେ ଏହି ପରିଦର୍ଶକ ପ୍ରଫେସର୍‌ମାନେ ଯେଉଁ ଦୃଷ୍ଟାନ୍ତଗୁଡ଼ାକ ଦେଉଥିଲେ, ତାକୁ ଲକ୍ଷ୍ୟ କରି ମୁଁ ଭାବୁଥିଲି, ଏତେଗୁଡ଼ାଏ ବିଷୟ ଏମାନେ କେମିତି ମନେ ରଖିଛନ୍ତି... । ଏମାନେ ପ୍ରକୃତରେ କିଛି ସାଧନା କରିଥିବେ । ମୋ ସହପାଠୀ ସନ୍ତୋଷ ଦେବତା ଦିନେ କହିଲା, "ଏମାନେ ପ୍ରକୃତରେ ବୃହସ୍ପତିଙ୍କ ପୁତ୍ର ।" ମୁଁ ତାକୁ କହିଲି, ତୁ କିଛି ଜାଣିନୁ, ବୃହସ୍ପତିଙ୍କ ବାପାଙ୍କୁ ପରା ଏମାନେ ଏହି ବିଷୟଗୁଡ଼ାକ ପଢ଼େଇଥିଲେ । ସେଥିପାଇଁ ବଂଶଗତ ରୋଗ ଆସିଲା ଭଳି ବୃହସ୍ପତିଙ୍କ ପାଖକୁ ଏତେ ପାଣ୍ଡିତ୍ୟ ପଳାଇ ଆସିଥିଲା । ସେତେବେଳେ ସନ୍ତୋଷ ଏତେ ଜୋର୍‌ରେ ହସିଥିଲା ଯେ, ସେଥିରେ ବେଣୀମାଧବ ସାର୍ ଟିକିଏ ରାଗି ଯାଇଥିଲେ । କ୍ଲାସ୍ ପରେ ମୁଁ ଯାଇ ସାର୍‌ଙ୍କୁ ପ୍ରକୃତ କଥାଟା କହିଲାରୁ ସେ ବି ଠୋ ଠୋ ହୋଇ ହସି ଉଠିଥିଲେ । ସେ ବର୍ଷ କ୍ଲାସ୍ ସବୁ ସରିଗଲା ପରେ ଡ. ସୁଦର୍ଶନ ଆଚାର୍ଯ୍ୟ ସାର୍ ଆମମାନଙ୍କୁ କହିଥିଲେ, "ତୁମେ ତ ଭାଗ୍ୟବାନ୍ ପିଲା !"

●

*ପ୍ରାଧ୍ୟାପକ, ଓଡ଼ିଆ ବିଭାଗ,*
*ଏରୋନଟିକ୍ସ କଲେଜ*
*ସୁନାବେଢ଼ା, କୋରାପୁଟ*

# ଜୀବନ୍ତ ମୂର୍ତ୍ତି

ଡ. ତାପସ ସାମନ୍ତରାୟ

ତୋତେ କ'ଣ ଅନ୍ୟ କେଉଁ ୟୁନିଭର୍‌ସିଟିରେ ପି.ଜି. କରିବାକୁ ମିଳିଲାନି, ସିଧା ବରହମ୍‌ପୁର ଚାଲିଗଲୁ । ସେଠି ରହି ପଢ଼ିବାର ଚିନ୍ତା ଛାଡ଼ିଦେ । ସୁବିଧା ଦେଖି ଉତ୍କଳ ୟୁନିଭର୍‌ସିଟିକୁ ଟ୍ରାନ୍ସଫର୍ କରି ଚାଲିଆସ । ଗଞ୍ଜାମ ପିଲା ଖୁବ୍ ବଦମାସ୍ । ଆମ ଏପଟ ପିଲାଙ୍କୁ ମୋଟେ ସହି ପାରନ୍ତିନି । କାହିଁକି ଗଣ୍ଡଗୋଳକୁ ଯାଉଚୁ ? ବରଂ ଏହି ଭୁବନେଶ୍ୱର କଟକରେ କ'ଣ ଗୋଟେ ଆଡ୍‌ଭାନ୍‌ସ ଷ୍ଟଡ଼ି କର ।" ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗରେ ଯୋଗଦେବା ପରେ ଏହା ଥିଲା ମୋର ଜଣେ ଅତି ନିକଟ ସମ୍ପର୍କୀୟଙ୍କର ମୋ ପ୍ରତି ସତର୍କବାଣୀ ।

ଖୁବ୍ ଡରି ଡରି ଓରିଜିନାଲ୍ ସାର୍ଟିଫିକେଟ୍ ନେଇ ଆସିଥିଲି ପିଜି ଅଫିସ୍‌ରେ ଜମା ଦେବା ପାଇଁ, ଓଡ଼ିଆ ପି.ଜି.ରେ ଆଡ୍‌ମିଶନ କରିବା ଉଦ୍ଦେଶ୍ୟରେ । ପୁଣି କୁହାଗଲା, ଓରିଜିନାଲ୍ ସାର୍ଟିଫିକେଟ ଗୁଡ଼ା ପୋଷ୍ଟରେ ପଠାଯିବ; ହାତାହାତି ଦେବେ ନାହିଁ । ସାଙ୍ଗମାନେ କହିଲେ - "ପୁଅ ଦେବେରେ ଚିରି ଗଞ୍ଜାମୀ ପିଲାଏ ତୋ ଓରିଜିନାଲ ସାର୍ଟିଫିକେଟ୍ । ଏ ସବୁ ଭିତରେ ଆଖିରେ ଆଖିଏ ସ୍ୱପ୍ନ ନେଇ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ୧୯୯୨ ମସିହାରେ ଆଡ୍‌ମିଶନ୍ କଲି । ପ୍ରଥମେ ପ୍ରଥମେ ଅନେକ ବରହମ୍‌ପୁର ଲୋକାଲ୍ ପିଲାମାନେ ବିଶେଷକରି ଝିଅମାନେ ମୋ' ସାଙ୍ଗ ହେଲେ । ହଷ୍ଟେଲ୍ ଏତେ ଶୀଘ୍ର ମିଳିଲା ନାହିଁ । ବ୍ରହ୍ମପୁର ନୂଆ ବସଷ୍ଟାଣ୍ଡ୍ ପାଖେ ରିଲେଟିଭ୍‌ଙ୍କ ଘରେ ଦୁଇମାସ ରହିବାକୁ ପଡ଼ିଲା । ସେଇ ବାହାନାରେ ୟୁନିଭର୍‌ସିଟିର ହ୍ୱାଇଟ୍ ବସ୍‌ରେ ଆସିବା ଯିବାର ସ୍ୱର୍ଣ୍ଣିମ ସୁଯୋଗ ପ୍ରାପ୍ତି ହେଲି । ବିଶେଷ ଆକର୍ଷଣ ହେଲା, ଟାଉନ୍‌ର ଛଟକି ଷ୍ଟାଇଲ୍ ଝିଅମାନଙ୍କ ସଙ୍ଗେ ଏକାଠି ବସ୍‌ରେ ବସି ଆସିବା ଯିବାର ସୁଯୋଗ ପାଇ ମୁଁ ସେତେବେଳେ ନିଜକୁ ଧନ୍ୟ ଓ ଗୌରବବନ୍ତ ମନେ କଲି । ସେତେବେଳେ ଟାଉନ୍‌ର ଝିଅମାନେ ଆମ ପାଇଁ ରୁମାଲ୍ ପକାଇ ସିଟ୍ ରିଜର୍ଭ କରି ଆସୁଥିଲେ । ଏପରିକି ବାହାରେ ଖଟି ମାରି ଫେରିବା ପର୍ଯ୍ୟନ୍ତ ଝିଅମାନେ ସ୍ୱତନ୍ତ୍ର ସିଟ୍ ଅନ୍ୟମାନଙ୍କୁ ଗାଳି ମନ୍ଦ କରି ଜଗି ରଖୁଥିଲେ । ମାତ୍ର ବସି ପ୍ରେମାଳାପ ପାଇଁ ନୁହେଁ; ବସ୍‌ରେ ହାଙ୍ଗାମା କରି ଅନ୍ତାକ୍ଷରୀ କରି ହୋହା କରି ଯିବାଆସିବା କରିବାର ମଜାକୁ ପ୍ରକାଶ କରିବା ପାଇଁ । ଆଜି ଶବ୍ଦ ପାଉ ନାହିଁ ।

ଟାଉନ୍‌ରୁ ବସ୍‌ରେ ଡେରିରେ ଆସି ଭଞ୍ଜବିହାରରେ ପ୍ରବେଶ କରି ଓଡ଼ିଆ ବିଭାଗ କ୍ଲାସ୍‌ରେ ପଶିଲା ବେଳକୁ ଗୁରୁଗମ୍ଭୀର ପ୍ରଫେସରମାନେ ଗୋଟେ ଗୋଟେ କ୍ଲାସ୍ ଅଧା

ପଢ଼ାଇ ସାରିଲେଣି । ଚଷମାର ଉପରପଟୁ ଯେପରି ତୀକ୍ଷ୍ଣ ଦୃଷ୍ଟିରେ ଚାହିଁବେ, ନିଜକୁ ଏକ ବିରାଟ ଅପରାଧୀ ମନେ କରି ଶ୍ରେଣୀରେ ପ୍ରବେଶ କରିବାକୁ ପଡୁଥିଲା । ପ୍ରଥମେ ପ୍ରଥମେ ଭାରି ସମ୍ଭ୍ରମ ହୋଇ କ୍ଲାସ୍ କରିବାକୁ ଗୌରବବୋଧ କରୁଥିଲୁ । ବହୁ ପ୍ରତିଷ୍ଠିତ ପ୍ରଫେସରମାନଙ୍କ ପାଖରେ ପଢ଼ିବାର ସୁଯୋଗ ପାଇଥିଲୁ । ପ୍ରଫେସର ସୁଦର୍ଶନ ଆଚାର୍ଯ୍ୟ, ପ୍ରଫେସର ଦାଶରଥି ଦାସ, ପ୍ରାଧ୍ୟାପକ ବାଉରୀବନ୍ଧୁ କର, ପ୍ରାଧ୍ୟାପକ ପୂର୍ଣ୍ଣଚନ୍ଦ୍ର ମିଶ୍ର, ପ୍ରାଧ୍ୟାପକ ଅଶ୍ୱିନୀ କୁମାର ପଣ୍ଡା ଓ ପ୍ରାଧ୍ୟାପକ ଦେବୀପ୍ରସନ୍ନ ପଟ୍ଟନାୟକ ପ୍ରମୁଖଙ୍କର ପ୍ରିୟଭାଜନ ହେବା ପାଇଁ ଅନେକ ଫନ୍ଦିଫିକର କରିଛୁ । ମାତ୍ର ଫେଲ୍ ମାରିଛୁ ଅଶ୍ୱିନୀ ସାର୍‌ଙ୍କ ପାଖରେ । ଗୋଟିଏ ନଂଘା ଗାଳି ଗଞ୍ଜାମ ଭାଷାରେ ଦେଇଦେଲେ ଆମେ ଥଣ୍ଡା । ସୁଦର୍ଶନ ସାର୍ ଏମିତି ଆକ୍ଷେପମୂଳକ କଥା ପ୍ରାୟ କହନ୍ତିନି । ମାତ୍ର ବାଉରୀବନ୍ଧୁ ସାର୍‌ଙ୍କର ଦ୍ୱୈତଭାବ ପ୍ରକାଶମୂଳକ ଉଦାହରଣଗୁଡ଼ିକ ଦେହରେ କଣ୍ଟା ଭଳି ଗଳିଯାଏ । ଗାଳି ମିଶା ପାଠର ମଜା କିନ୍ତୁ ଅଲଗା ଥିଲା । ପୂର୍ଣ୍ଣଚନ୍ଦ୍ର ସାର୍ କେବଳ ଅଭିମାନରେ କେତେ କଣ କହିଯା'ନ୍ତି - ଆମେ କେହି ସିରିୟସ୍ ନ ହୋଇ ଖାଲି ଶୁଣିଯାଉ । ଦେବୀସାର୍‌ଙ୍କର ଖୁବ୍ ଟୋକା ବୟସ । ଆମେ ଯେତେ ଭୁବନେଶ୍ୱରୀୟ ଷ୍ଟାଇଲ୍ ମାରୁଥିଲୁ, ଦେବୀସାର୍ ଆମକୁ ପଚିଶ ଶୂନରେ ପରାସ୍ତ କରୁଥିଲେ । ତାଙ୍କର ହାବଭାବ ଏତେ ଆକର୍ଷଣୀୟ ଥିଲା ଯେ ଆମ ସାଙ୍ଗରେ ପଢୁଥିବା ଝିଅମାନେ ଆମକୁ କମ୍ ତାଙ୍କୁ ବେଶି ଚାହୁଁଥିଲେ । ଅବଶ୍ୟ ମନେ ମନେ ଟିକିଏ ତାଙ୍କ ଉପରେ ଈର୍ଷା କରୁଥିଲେ । କିନ୍ତୁ ଭଲ ଭାବେ ମିଶୁଥିଲେ । ଆମେ ପାଞ୍ଚ ସାତ ଜଣ ସ୍ପେଶାଲ୍ ପେପର ମଡ଼ର୍ଣ୍ଣ ରଖିଥିଲୁ । ଦେବୀସାର୍‌ଙ୍କ ଚାମ୍ବରକୁ କିଛି ବୁଝିବାକୁ ଗଲା ବେଳୁ ଆଗରୁ କିଛି ସିନିୟର ଛାତ୍ରୀ ବସିଥିବା ଦେଖି ମନ ଖରାପ କରି ଫେରିବା ସମୟରେ ହଠାତ୍ ପଶିଯାଉ କେତେବେଳେ ବାଉରୀସାର୍‌ଙ୍କ ଚାମ୍ବର୍‌ରେ ତ ପୁଣି କେବେ ଦାଶରଥିସାର୍‌ଙ୍କ ଚାମ୍ବରରେ । ପାଠପଢ଼ା କମ୍ ଆଡ୍ଡା ବେଶି ମାରି ଫେରିଆସୁ । ଆମର ତ ବିଶେଷ ମନ ଯାଇ ହ୍ୱାଇଟ୍ ବସ୍‌ରେ ବ୍ରହ୍ମପୁର ଝିଅମାନଙ୍କ ସହ ଫେରିବା ଠାରେ । ଏମତି ହେଲା ଯେ ହଷ୍ଟେଲ୍ ରୁମ୍ ମିଳିବା ପରେ ମଧ୍ୟ ସେହି ଫେରିବା ମଜାଟାକୁ ଉଠାଇବା ପାଇଁ ସବୁଦିନ ବ୍ରହ୍ମପୁର ଟାଉନ୍ ଯାଉଥିଲୁ; ପୁଣି ରାତିରେ ହଷ୍ଟେଲ୍ ଫେରୁଥିଲୁ ।

ମୁଁ ଆଜି ଭାରତ ସରକାରଙ୍କ ସଂସ୍କୃତି ମନ୍ତ୍ରଣାଳୟରେ ବିଶେଷ ଦାୟିତ୍ୱ ନେଇ କାର୍ଯ୍ୟ କରୁଥିଲେ ହେଁ ସଂସ୍କୃତି ସଚେତନତା ଓ କିଛି କାମ କରିବାର ସଦିଚ୍ଛା ସେହି ଭଞ୍ଜବିହାରର ଓଡ଼ିଆ ବିଭାଗରେ ମୁଁ ପଢ଼ିବା ସମୟ ଦୁଇବର୍ଷ ମଧ୍ୟରେ ଛତିଶ ଗୋଟି ଥିଏଟର ପ୍ରଡ଼କ୍‌ସନ୍‌ରେ କାମ କରିବାର ସୁଯୋଗ ପାଇଛି । ବିଭାଗରେ ଅଧ୍ୟୟନ ଅବକାଶରେ ସମଗ୍ର ୟୁନିଭରସିଟିକୁ ପ୍ରତିନିଧିତ୍ୱ କରି ବାରମ୍ବାର ରୌପ୍ୟ ଓ ସ୍ୱର୍ଣ୍ଣପଦକ

ଜିତି ବିଶ୍ୱବିଦ୍ୟାଳୟ ପାଇଁ ଗୌରବ ଆଣିଛୁ । ଅନ୍ୟ ବିଶ୍ୱବିଦ୍ୟାଳୟ ତୁଳନାରେ ଆମ ବିଭାଗ ଓ ଭଞ୍ଜବିହାରକୁ ଜାତୀୟ ସ୍ତରରେ ଏକ ସଂସ୍କୃତି ସମ୍ପନ୍ନ ବିଶ୍ୱବିଦ୍ୟାଳୟର ପରିଚିତି ଆଣିବା ପାଇଁ ଅନ୍ୟ ସହପାଠୀମାନଙ୍କ ସହ ଅନେକ ରାତି ଉଜାଗର ରହିଛୁ । ବିଭିନ୍ନ ବିଶ୍ୱବିଦ୍ୟାଳୟରେ ଅନୁଷ୍ଠିତ ଯୁବ ମହୋତ୍ସବମାନଙ୍କରେ କୁଇଜ୍ ହେଉ, ମ୍ୟୁଜିକ୍ ହେଉ, ଥିଏଟର ହେଉ ପ୍ରାଣେ ପ୍ରାଣେ ଚେଷ୍ଟା କରି ପଦକ ଜିତିଛୁ । ସେଥିପାଇଁ ବିଭାଗ ଓ ବିଶ୍ୱବିଦ୍ୟାଳୟ ଆମମାନଙ୍କ ପାଇଁ ସ୍ୱତନ୍ତ୍ର ଉତ୍ସବ କରି ଅନେକ ବାର ସମ୍ମାନିତ କରିଛି । ସେସବୁ ସେଦିନରେ ସ୍ମୃତି ହୋଇଥିଲା ଓ ବର୍ତ୍ତମାନ ମୋର ଜୀବିକାରେ ପରିଣତ ହୋଇଛି । ଭଞ୍ଜବିହାର ମୋ ଭବିଷ୍ୟତ ଜୀବନ ପାଇଁ ସେତେବେଳେ ପାଣି ଛିଞ୍ଚି ମାଟିକୁ ମୂର୍ତ୍ତି ରୂପ ଦେଉଥିବା କଥା ହୁଏତ ବୁଝି ନଥିଲି । ଏବେ କିନ୍ତୁ ତାହା ହିଁ ଆମକୁ ଜୀବନ୍ତ ମୂର୍ତ୍ତି କରି ଗଢ଼ି ତୋଳିଛି ଓ ମୋର ଆଶାକୁ ମହୀରୁହରେ ପରିଣତ କରିଛି । ଆଜି ଆମର ଯେଉଁ କିଛି ସ୍ୱତନ୍ତ୍ର ପରିଚୟ ଏହି ସମାଜରେ ସୃଷ୍ଟି ହୋଇଛି, ତା'ର ମୂଳରେ ଓଡ଼ିଆ ବିଭାଗ ହିଁ ରହିଛି । ବିଭାଗର ଶିକ୍ଷକଙ୍କ ଠାରୁ ଆରମ୍ଭ କରି ସହକର୍ମୀଙ୍କର ଆଶୀର୍ବାଦ ହିଁ ଆଜି ଆମକୁ ସମାଜର ଏହି ସୋପାନରେ ପହଞ୍ଚାଇଛି, ଆମକୁ ମାଟି ପିଣ୍ଡୁଳାରୁ 'ଜୀବନ୍ତ ମୂର୍ତ୍ତି' କରି ଗଢ଼ିଛି । ତେଣୁ ଏ ଜୀବନ କ'ଣ ଗୋଟି ଗୋଟି ହୋଇ ସାତଟି ଜୀବନ ଓ ସାତ ଜନମରେ ମଧ୍ୟ ଆମ ଭଞ୍ଜବିହାର ଆମ ଓଡ଼ିଆ ବିଭାଗ ନିକଟରେ ଋଣୀ ରହିବୁ ।

•

*କାର୍ଯ୍ୟକ୍ରମ ଅଧିକାରୀ*
*ପୂର୍ବାଞ୍ଚଳ ଆଞ୍ଚଳିକ ସାଂସ୍କୃତିକ କେନ୍ଦ୍ର,*
*ସଲଟ୍ ଲେକ୍, କଲିକତା*

# ଓଡ଼ିଆ ବିଭାଗ ସୁବର୍ଣ୍ଣ ଜୟନ୍ତୀ ଅବସରରେ

ଡ. କୃଷ୍ଣପ୍ରସାଦ ମହାପାତ୍ର

ଦକ୍ଷିଣ ଓଡ଼ିଶାର ଜନସାଧାରଣ ତଥା ବୁଦ୍ଧିଜୀବୀଙ୍କ ଆଶା ଓ ଆକାଂକ୍ଷାକୁ ନେଇ ୧୯୬୭ ମସିହାରେ ବ୍ରହ୍ମପୁର ସହରରେ ଗଢ଼ି ଉଠିଥିଲା ଉକ୍ତ ବିଶ୍ୱବିଦ୍ୟାଳୟ । ମାତ୍ର କମ୍ ଅଧ୍ୟାପକ ତଥା ଛାତ୍ରଛାତ୍ରୀଙ୍କୁ ନେଇ ଦୁଇ ବା ତିନୋଟି ପାଠ୍ୟକ୍ରମର ବ୍ୟବସ୍ଥା କରାଯାଇଥିଲା । କିନ୍ତୁ ପରବର୍ତ୍ତୀ ସମୟରେ କେତେକ ଶିକ୍ଷାପ୍ରେମୀ, ଗୁଣଗ୍ରାହୀ ବ୍ୟକ୍ତିତ୍ୱ ତଥା ସରକାରଙ୍କ ପ୍ରୋତ୍ସାହନରେ ଆଜି ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଦକ୍ଷିଣ ଓଡ଼ିଶାର ସର୍ବୋଚ୍ଚ ଶିକ୍ଷାନୁଷ୍ଠାନ ଭାବେ ସୁବର୍ଣ୍ଣ ଜୟନ୍ତୀ ବର୍ଷ ପାଳନ କରିସାରିଲାଣି । ଏହି ଅବସରରେ ଯଦି ସ୍ନାତକୋତ୍ତର ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗର ପ୍ରସଙ୍ଗକୁ ଆଲୋଚନାର ପରିସରଭୁକ୍ତ କରାଯାଏ, ତେବେ ବିଶ୍ୱବିଦ୍ୟାଳୟର ଆରମ୍ଭରୁ ଉକ୍ତ ବିଭାଗ ନିଜର ସ୍ଥିତିକୁ ବଜାୟ ରଖିଛି । ସ୍ୱନାମଧନ୍ୟ ପ୍ରଫେସର୍ ତଥା ଶିକ୍ଷାବିତ୍ ସ୍ୱର୍ଗତ ଡକ୍ଟର କୁଞ୍ଜବିହାରୀ ତ୍ରିପାଠୀ, ସ୍ୱର୍ଗତ ଡକ୍ଟର ବେଣୀମାଧବ ପାଢ଼ୀ, ଡକ୍ଟର ସୁଦର୍ଶନ ଆଚାର୍ଯ୍ୟ, ସ୍ୱର୍ଗତ ଡକ୍ଟର ସୀତାରାମ ମହାପାତ୍ର ପ୍ରମୁଖଙ୍କ ଉତ୍ତମ ଶିକ୍ଷାଦାନ, ଗବେଷଣାତ୍ମକ ଆଲୋଚନା ଓ ପର୍ଯ୍ୟାଲୋଚନା ସଙ୍ଗେ ସଙ୍ଗେ ନିଷ୍ଠାପର ଉଦ୍ୟମ ତଥା କର୍ତ୍ତବ୍ୟ ପରାୟଣତାକୁ ଭିତ୍ତି କରି ତତ୍‌କାଳୀନ ବିଭାଗରେ ଅଧ୍ୟୟନ କରିଥିବା ଛାତ୍ରଛାତ୍ରୀମାନେ ଶିକ୍ଷାବିଭାଗ ଓ ଅନ୍ୟାନ୍ୟ ସରକାରୀ ବିଭାଗରେ ପଦପଦବୀରେ ଅବସ୍ଥାପିତ ହୋଇଛନ୍ତି । କେତେକ ହୁଏତ ଅବସର ନେବେଣି ବା ନିଜର କର୍ମକ୍ଷେତ୍ରରେ ନିଷ୍ଠାପର ସେବା କରି ପ୍ରଶଂସନୀୟ ହୋଇଥିବେ । ଉକ୍ତ ସ୍ନାତକୋତ୍ତର ଓଡ଼ିଆ ବିଭାଗର ୧୯୭୯-୮୧ ମସିହାର ମୁଁ ଜଣେ ଛାତ୍ର । ଅଧ୍ୟୟନ ସମୟରେ ଡକ୍ଟର୍ କାହ୍ନୁଚରଣ ମିଶ୍ର ଥିଲେ ବିଭାଗୀୟ ମୁଖ୍ୟ । ଡ. ବେଣୀମାଧବ ପାଢ଼ୀ, ଡ. ଗଗନେନ୍ଦ୍ରନାଥ ଦାଶ, ଡ. ଶ୍ରୀନିବାସ ମିଶ୍ର, ଡ. ସୁଦର୍ଶନ ଆଚାର୍ଯ୍ୟ, ଡ. ସୀତାରାମ ମହାପାତ୍ରଙ୍କ ଭଳି ଖ୍ୟାତନାମା ଅଧ୍ୟାପକ ଅଧ୍ୟାପନାରେ ରତ ଥିଲେ । କେବଳ ସେମାନେ ଅଧ୍ୟାପକ ହୋଇ ଅଧ୍ୟାପନା କରୁ ନଥିଲେ; ବରଂ ବିଭାଗକୁ ଉନ୍ନତିର କକ୍ଷେ ଆଗେଇ ନେବାରେ ସେମାନଙ୍କ ଭୂମିକା ଥିଲା ଯଥେଷ୍ଟ । ଅଧ୍ୟାପନା ବ୍ୟତୀତ ପ୍ରଶାସନ କାର୍ଯ୍ୟରେ ମଧ୍ୟ ସେମାନଙ୍କ ସହଯୋଗ ଥିଲା ଯଥେଷ୍ଟ । ଏହି ଗୁଣଗ୍ରାହୀ ବ୍ୟକ୍ତିତ୍ୱଙ୍କ ପ୍ରେରଣା ତଥା ବିଭାଗର ଛାତ୍ରଛାତ୍ରୀଙ୍କ ସହଯୋଗରେ ପ୍ରଥମ କରି ପ୍ରାଚୀରପତ୍ର ପ୍ରକାଶ ପାଇଲା 'ଯୁଗରୁଚି' । ବର୍ତ୍ତମାନ ସ୍ନାତକୋତ୍ତର ବିଭାଗ ସମୂହର ମୁଖ୍ୟ ଡ. ଦେବୀପ୍ରସନ୍ନ ପଟ୍ଟନାୟକ ଥିଲେ ମୋର ସହପାଠୀ ଭାବେ ବିଭାଗୀୟ ପାଠଚକ୍ରର ସମ୍ପାଦକ । ତାଙ୍କରି ସମ୍ପାଦକୀୟରେ

ବହୁ ପାଠଚକ୍ର, ଆଲୋଚନା ଚକ୍ର ତଥା ସାଂସ୍କୃତିକ କାର୍ଯ୍ୟକ୍ରମ ଅନୁଷ୍ଠିତ ହୋଇଥିଲା । ଉକ୍ତ 'ଯୁଗରୁଚି' ପ୍ରାଚୀର ପତ୍ରର ତଥ୍ୟଭିତ୍ତିକ ସୃଷ୍ଟିଗୁଡ଼ିକୁ ମୁଦ୍ରଣ ଦ୍ୱାରା ପ୍ରକାଶିତ କରିବା ନିମନ୍ତେ ଆମେ ଛାତ୍ରଛାତ୍ରୀମାନେ ଚେଷ୍ଟା କରି ସଫଳ ହେଲୁ । ତତ୍‌କାଳୀନ କୁଳପତି ଡ. ତ୍ରିନାଥ ରଥ ଏହାର ମୁଦ୍ରଣ ନିମନ୍ତେ କିଛି ଧଳା କାଗଜ ବିଭାଗକୁ ଅକୁଣ୍ଠିତ ଭାବେ ପ୍ରଦାନ କରିଥିଲେ । ବହୁବାର ଅନୁରୋଧ ଫଳରେ, ସେହି ସମୟରେ ବିଭାଗର ଉନ୍ନତି ପାଇଁ ପ୍ରତ୍ୟେକ ଛାତ୍ରୀ ଥିଲେ ସଂକଳ୍ପବଦ୍ଧ । ବହୁ ସାହିତ୍ୟିକ, ପ୍ରାବନ୍ଧିକ, କବି ତଥା ଗବେଷକ ନିମନ୍ତ୍ରଣ ରକ୍ଷା କରି ସ୍ୱତନ୍ତ୍ର ପାଠଚକ୍ର ଆଲୋଚନାରେ ଯୋଗଦେଇ ପ୍ରସଙ୍ଗଭିତ୍ତିକ ଉପାଦେୟ ତଥ୍ୟ ବିତରଣ କରୁଥିଲେ । ସବୁଠୁ ବଡ଼ କଥା, ମୁଁ ଅଧ୍ୟୟନ କରିବା ସମୟେ ବିଭାଗ ଆନୁକୂଲ୍ୟରେ ସର୍ବଭାରତୀୟ ଓଡ଼ିଆ ଅଧ୍ୟାପକ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ଅଧ୍ୟୟନ କରିଥିବା ପ୍ରତ୍ୟେକ ଛାତ୍ରଛାତ୍ରୀଙ୍କ ଭୂମିକା ଥିଲା ଗୁରୁତ୍ୱପୂର୍ଣ୍ଣ । ସେହି ସମୟରେ ଛାତ୍ରଛାତ୍ରୀ, ଅଧ୍ୟାପକ ତଥା ବିଭାଗର କର୍ମକର୍ତ୍ତାଙ୍କ ମଧ୍ୟରେ ଦେଖାଦେଇଥିଲା ସୌହାର୍ଦ୍ଦ୍ୟପୂର୍ଣ୍ଣ ଭାବ, ଯାହା ଆମ୍ଭମାନଙ୍କ ପାଇଁ ଭବିଷ୍ୟତ ଗତିପଥରେ ଯଥେଷ୍ଟ ସହାୟକ ଥିଲା । ଏହି ସବୁକୁ ପାଥେୟ କରି ମୁଁ ଜଣେ ଅଧ୍ୟାପକ ଭାବେ ନିଜର କର୍ମପନ୍ଥାକୁ ବାଛି ନେଲି । ପରବର୍ତ୍ତୀ ପର୍ଯ୍ୟାୟରେ ପ୍ରାଧ୍ୟାପକ, ବରିଷ୍ଠ ପ୍ରାଧ୍ୟାପକ ଓ ଅଧକ୍ଷ ଭାବେ ବର୍ତ୍ତମାନ କର୍ମରତ । ଏହି ବିଭାଗର ସମସ୍ତ ଅଧ୍ୟାପକ, ପ୍ରାଧ୍ୟାପକ, କର୍ମଚାରୀ ତଥା ବିଭାଗୀୟ ମୁଖ୍ୟଙ୍କ ପ୍ରେରଣା ଓ ସଦିଚ୍ଛା ଯୋଗୁଁ ମୁଁ ମୋର ଗବେଷଣାତ୍ମକ ନିବନ୍ଧ ପ୍ରସ୍ତୁତ କରି ପିଏଚ୍.ଡି. ଡିଗ୍ରୀ ପାଇବା ପାଇଁ ଯୋଗ୍ୟ ବିବେଚିତ ହେଲି । ତାହା ମୋ ପାଇଁ ଗୌରବର ବିଷୟ । ଏହି ବିଭାଗ ମାଧ୍ୟମରେ ଅନେକ ଛାତ୍ରଛାତ୍ରୀ ଅଧ୍ୟାପକ ପିଏଚ୍.ଡି. ଡିଗ୍ରୀ ପାଇବା ପାଇଁ ଯୋଗ୍ୟ ବିବେଚିତ ହୋଇଛନ୍ତି ଏବଂ ଭବିଷ୍ୟତରେ ଆହୁରି ଅନେକ ଛାତ୍ର ଓ ଅଧ୍ୟାପକ ଉକ୍ତ ଡିଗ୍ରୀ ହାସଲ କରିବା ପାଇଁ ପ୍ରସ୍ତୁତି ପଥେ ଆଗେଇଛନ୍ତି । ବିଭାଗରେ ଥିବା ଉନ୍ନତ ମାନର ଗ୍ରନ୍ଥାଗାର ଗବେଷଣା ପାଇଁ ରହି ଆସିଛି ଏକ ପ୍ରମୁଖ ସହାୟକ କେନ୍ଦ୍ର । ସମସ୍ତ ପ୍ରକାର ସାହାଯ୍ୟ, ସହାନୁଭୂତି ତଥା ବିଭାଗୀୟ ଅଧ୍ୟାପକଙ୍କ ଆନ୍ତରିକତା ନିକଟରେ ମୁଁ ଚିର ଋଣୀ । ୧୯୮୩ ମସିହାରୁ ଆଜି ପର୍ଯ୍ୟନ୍ତ ଜଣେ ଅଧ୍ୟାପକ / ପ୍ରାଧ୍ୟାପକ ଭାବେ ବିଭାଗ ତରଫରୁ ଅନୁଷ୍ଠିତ ହୋଇଥିବା ଜାତୀୟ ତଥା ରାଜ୍ୟସ୍ତରୀୟ ପାଠଚକ୍ରରେ ଜଣେ ପ୍ରତିନିଧି ଭାବେ ଯୋଗ ଦେଇ ଆସିଛି । ଏହି ବିଭାଗ ଦ୍ୱାରା ବହୁ ଉପାଦେୟ ତଥା ଅନାଲୋଚିତ ପ୍ରସଙ୍ଗକୁ ଭିତ୍ତି କରି ପାଠଚକ୍ରର କାର୍ଯ୍ୟକ୍ରମ ଅନୁଷ୍ଠିତ ହୋଇଛି । ସବୁଠାରୁ ଆନନ୍ଦର ବିଷୟ ଏହି କି ଯେ, ବିଭାଗର ସକଳ ଉଦ୍ୟମରେ ଦକ୍ଷିଣ ଓଡ଼ିଶାର ଭାଷା ତଥା ସଂସ୍କୃତିର ଏକ ଗବେଷଣା କେନ୍ଦ୍ର ଉକ୍ତ ବିଶ୍ୱବିଦ୍ୟାଳୟରେ ଗଢ଼ି ଉଠିଛି । ପ୍ରାଚୀନ ପୋଥିଠୁ ଆରମ୍ଭ କରି ପୁରପଲ୍ଲୀ ତଥା ଆଦିବାସୀ ଅଞ୍ଚଳର ଲୋକ ସାହିତ୍ୟ ଓ

ସଂସ୍କୃତିକୁ ବଞ୍ଚାଇବା ହେଉଛି ଏହାର ଉଦ୍ଦେଶ୍ୟ । କେବଳ ସେତିକି ନୁହଁ, ଆଲୋଚନା ଓ ପର୍ଯ୍ୟାଲୋଚନା ତଥା ଗବେଷଣା ମାନଙ୍କୁ ଉନ୍ନତ ଭାବେ ଗଢ଼ିତୋଳିବା ହେଉଛି ଗବେଷଣା କେନ୍ଦ୍ରର ପ୍ରମୁଖ ଭୂମିକା । ବିଭାଗର ଅଧ୍ୟାପକ / ପ୍ରାଧ୍ୟାପକ ଏବଂ କର୍ମଚାରୀଙ୍କ ଅକ୍ଲାନ୍ତ ପରିଶ୍ରମ, ଶ୍ରଦ୍ଧା ତଥା ଆନ୍ତରିକ ସହଯୋଗ ଏହାକୁ ଆଗେଇ ନେବାରେ ପ୍ରତିବନ୍ଧକ ଶୂନ୍ୟ । ବର୍ତ୍ତମାନର ଓଡ଼ିଆ ବିଭାଗ ନିଜର ସମ୍ମାନକୁ ଜାତୀୟ ସ୍ତରରେ ପହଞ୍ଚାଇ ପାରିଛି । ବର୍ତ୍ତମାନର ବିଭାଗୀୟ ମୁଖ୍ୟ ଡ. ପ୍ରସନ୍ନ କୁମାର ସ୍ୱାଇଁଙ୍କ ଆନ୍ତରିକ ପ୍ରଚେଷ୍ଟା ଓ ସହଯୋଗ ବିଭାଗର ଅନ୍ୟତମ ସଦସ୍ୟଙ୍କୁ ସଫଳତାର ପାହାଚରେ ପହଞ୍ଚାଇବାରେ ପ୍ରମୁଖ ଭୂମିକା ଗ୍ରହଣ କରିଛି । ଏହି ବିଭାଗ ପ୍ରତି ବିଶ୍ୱବିଦ୍ୟାଳୟର କୁଳପତି ସ୍ନାତକୋତ୍ତର ବିଭାଗ ସମୂହର ମୁଖ୍ୟ, କୁଳସଚିବ ଏବଂ ଅନ୍ୟାନ୍ୟ ପଦସ୍ଥ କର୍ମଚାରୀଙ୍କ ଅକୁଣ୍ଠ ସାହାଯ୍ୟ, ସହାନୁଭୂତି ଏବଂ ଉଚ୍ଚମାନର ଦିଗଦର୍ଶନ ବିଭାଗର ଉନ୍ନତ ଦିଗରେ ଏକ ଏକ ବଳିଷ୍ଠ ପଦକ୍ଷେପ । ମହାନୁଭବତାର ଆଦର୍ଶରେ ଅନୁପ୍ରାଣିତ ହୋଇ ଆଜିର ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ ସ୍ୱତନ୍ତ୍ର ସ୍ଥାନରେ ପ୍ରତିଷ୍ଠିତ ।

ଶେଷରେ ମୁଁ ଜଣେ ପ୍ରାକ୍ତନ ଛାତ୍ର ଭାବେ ଶ୍ରୀପରମେଶ୍ୱରଙ୍କ ନିକଟରେ ପ୍ରାର୍ଥନା କରୁଛି, ସ୍ନାତକୋତ୍ତର ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ ଏମିତି ସବୁଦିନ ଉନ୍ନତିର ଗତି ପଥରେ ଆଗେଇ ରହୁ । ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷଙ୍କ ସରକାରୀ ସ୍ତରର ପ୍ରୋତ୍ସାହନ ଓ ସହଯୋଗ ବିଭାଗ ପ୍ରତି ନିରନ୍ତର ଅବ୍ୟାହତ ରହୁ ।

•

*ଅଧକ୍ଷ, ମହାମାୟୀ ମହିଳା ମହାବିଦ୍ୟାଳୟ,*

*ବ୍ରହ୍ମପୁର*

# ମୋ' ସ୍ମୃତିରେ ଓଡ଼ିଆ ବିଭାଗ

ଡକ୍ଟର୍ ପ୍ରଦୀପ ମହାପାତ

ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ସ୍ନାତକୋତ୍ତର ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ ସହ ମୋର ସମ୍ପୃକ୍ତି ପୁରାତନ ଛାତ୍ର 'ଆଲୁମିନି' ପର୍ଯ୍ୟାୟଭୁକ୍ତ । ଏହି ବିଭାଗ ଅଧୀନରେ ଗବେଷଣା କରି ୧୯୯୮ରେ ମୁଁ ଡକ୍ଟର୍ ଇନ ଫିଲୋସଫି 'ପିଏଚ୍.ଡି' ଉପାଧି ପ୍ରାପ୍ତ ହୋଇଥିଲି ।

ବ୍ରହ୍ମପୁର ଖଲ୍ଲିକୋଟ ମହାବିଦ୍ୟାଳୟରେ ଇଂଲିଶ ସାହିତ୍ୟରେ ଏମ୍.ଏ. ପାଶ କରିବା ପରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଭଞ୍ଜବିହାରରେ ଇଂଲିଶ ବିଭାଗରେ ଏମ୍.ଫିଲ୍. ତଥା ସାମ୍ବାଦିକତା ଓ ଗଣଯୋଗାଯୋଗ ବିଭାଗ ବିଜେଏମ୍‌ସି ଶ୍ରେଣୀରେ ଛାତ୍ର ଥିଲି । ବେଙ୍ଗାଲୁରୁ ବିଶ୍ୱବିଦ୍ୟାଳୟରୁ କମ୍ୟୁନିକେସନ୍‌ରେ ଏମ୍.ଏସ୍. ଉପାଧି ଆଧାରରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗର ପ୍ରଫେସର୍ ସୁଦର୍ଶନ ଆଚାର୍ଯ୍ୟଙ୍କ ଅଧୀନରେ ପିଏଚ୍.ଡି ପରୀକ୍ଷା ନିମନ୍ତେ ଗବେଷଣା କରିଥିଲି । ଆପାତତଃ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗ ଶ୍ରେଣୀକକ୍ଷରେ ବସିବାର ସୁଯୋଗ ହାସଲ ନ କରିଥିଲେ ମଧ୍ୟ ଗବେଷଣା କାଳରେ ତତ୍ତ୍ୱାବଧାରକଙ୍କ ଦିଗଦର୍ଶନ ଗ୍ରହଣ ନିମନ୍ତେ ନିୟମିତ ବିଭାଗରେ ପହଞ୍ଚୁଥିଲି । ଅତଏବ ୧୯୯୦ ରୁ ୧୯୯୭ ସାତ ବର୍ଷ ଗବେଷଣା କାଳରେ ଓଡ଼ିଆ ବିଭାଗ ସହ ଅନ୍ତରଙ୍ଗ ସମ୍ପର୍କ ରହିଆସିଥିଲା ବୋଲି କହିବାକୁ ହେବ । ସେହି ସମୟସୀମାରେ ବିଶ୍ୱବିଦ୍ୟାଳୟରେ ସାମ୍ବାଦିକତା ଓ ଗଣଯୋଗାଯୋଗ ବିଭାଗରେ ଅଧ୍ୟାପକ ରୂପେ କାର୍ଯ୍ୟରତ ଥିଲି ।

ସର୍ବଭାରତୀୟ ସ୍ତରରେ ଆଧୁନିକ ସାମ୍ବାଦିକତା ଅଧ୍ୟୟନ ଓ ଗବେଷଣା ପରିଧିରେ ବ୍ୟକ୍ତିଗତ ଭାବେ ମୋର ଯୋଗଦାନ ପ୍ରଥମ ପିଢ଼ିରେ ଅନ୍ତର୍ଭୁକ୍ତ । ୧୯୮୧ରେ ଯୋଗାଯୋଗ ବିଜ୍ଞାନରେ ସ୍ନାତକୋତ୍ତର ଉପାଧି ହାସଲ କଲା ପରେ ୧୯୯୩ରୁ ୧୯୯୮ ମଧ୍ୟରେ ସାମ୍ବାଦିକତାରେ ପିଏଚ୍.ଡି ପାଇଁ ପଞ୍ଜୀକରଣ କରିଥିଲି । ତେବେ ବିଭିନ୍ନ କାରଣରୁ ଗବେଷଣାରେ ଅଗ୍ରଗତି ହୋଇପାରିଲା ନାହିଁ । 'ଆଧୁନିକ ଓଡ଼ିଆ ସାମ୍ବାଦିକତାର ଗତି ପ୍ରକୃତି' ଅଧ୍ୟୟନ ନିମନ୍ତେ ତଥ୍ୟ ସଂଗ୍ରହରେ ବିଫଳତା ହେତୁ 'ଓଡ଼ିଆ ସାମ୍ବାଦିକତାର କ୍ରମବିକାଶରେ ଉତ୍କଳ ଦୀପିକାର ଭୂମିକା' ବିଷୟବସ୍ତୁ ନିର୍ଦ୍ଧାରଣ କଲି । 'ଉତ୍କଳ ଦୀପିକା'ର ୧୮୬୬ ରେ ପ୍ରକାଶନ ଆରମ୍ଭ କାଳରୁ ୧୯୩୬ରେ ପ୍ରକାଶନ ବନ୍ଦ ଯାଏଁ ସମସ୍ତ ସଂସ୍କରଣ ବନ୍ଧେଇ ହୋଇ ଉତ୍କଳ ବିଶ୍ୱବିଦ୍ୟାଳୟ ଓ ଉତ୍କଳ ସାହିତ୍ୟ ସମାଜ ଗ୍ରନ୍ଥାଗାରରେ ଉପଲବ୍ଧ ଥିବା ଆଶ୍ୱାସନା ହିଁ ଗବେଷଣାରେ ପ୍ରାଥମିକ ପ୍ରୟାସରେ

ସାମ୍ନା କରିଥିବା ଅସୁବିଧା, ପ୍ରାଥମିକ ସ୍ତରରୁ ତଥ୍ୟ ସଂଗ୍ରହଜନିତ ଅସମର୍ଥତା କାରଣରୁ ମୁକ୍ତି ମିଳିବା ନିଶ୍ଚିତ ଥିଲା ।

ସେତେବେଳକୁ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ସାମ୍ବାଦିକତା ଓ ଗଣଯୋଗାଯୋଗ ବିଭାଗ ଏକମାତ୍ର ସାମ୍ବାଦିକତା ଅନୁଷ୍ଠାନ ଏବଂ ସେଠାରେ କେହି ପିଏଚ୍.ଡି. ଡିଗ୍ରୀଧାରୀ ଶିକ୍ଷକ ନଥା'ନ୍ତି । ଓଡ଼ିଆ ସାମ୍ବାଦିକତାର ଉନ୍ମେଷ ସମ୍ପର୍କରେ ଗବେଷଣା ଅଭାବ କାରଣରୁ ସେହି ବିଷୟରେ ଅଧ୍ୟୟନ ନିମନ୍ତେ ଆଗ୍ରହୀ ଥିଲି । ତେବେ ଏଥିପାଇଁ କିଏ ଯୋଗ୍ୟ ଦିଗଦର୍ଶନ ଦେଇପାରିବେ, ତାହା ବିଚାର କଲା ବେଳେ ଓଡ଼ିଆ ବିଭାଗ ପ୍ରତି ଆକର୍ଷଣ ବଢ଼ିଲା । ସେ ସମୟରେ ଓଡ଼ିଆ ବିଭାଗର ଏକାଧିକ ଶିକ୍ଷକ ଓଡ଼ିଆ ପତ୍ରପତ୍ରିକା ତଥା ଓଡ଼ିଆ ସାହିତ୍ୟର ଇତିହାସ ସମ୍ପର୍କରେ ଗବେଷଣାତ୍ମକ ସନ୍ଦର୍ଭମାନ ପ୍ରକାଶ କରିଥା'ନ୍ତି । ବିଶ୍ୱବିଦ୍ୟାଳୟର ନିୟମ ଅନୁଯାୟୀ ଅନ୍ତଃବିଷୟକ ପିଏଚ୍.ଡି. ପଞ୍ଜିକରଣ ନିମନ୍ତେ ଓଡ଼ିଆ ଭିନ୍ନ ଅନ୍ୟ ବିଷୟରେ ସ୍ନାତକୋତ୍ତର ଉପାଧି ହାସଲ କରିଥିବା ପ୍ରାର୍ଥୀ ସ୍ନାତକ ସ୍ତରରେ ଓଡ଼ିଆକୁ ଇଚ୍ଛାଧୀନ ବିଷୟ ରୂପେ ଗ୍ରହଣ କରି ଉପାଧି ପ୍ରାପ୍ତ ହୋଇଥିଲେ ଯୋଗ୍ୟ ବିବେଚିତ ହେବା ପ୍ରାବଧାନ ଥିଲା । ମୁଁ ଖଲ୍ଲିକୋଟ ମହାବିଦ୍ୟାଳୟରେ ସ୍ନାତକ ସ୍ତରରେ ଓଡ଼ିଆ ଇଚ୍ଛାଧୀନ ବିଷୟ ରୂପେ ପଢ଼ିଥିଲି । ବିଂଶ ଶତାବ୍ଦୀର ଶେଷ ଦଶକରେ ସର୍ବଭାରତୀୟ ସ୍ତରରେ ଆନ୍ତଃବିଷୟ ଗବେଷଣା ନୂଆ । ସ୍ୱଭାବଗତ ଭାବେ ଅମଡ଼ା ବାଟରେ ଚାଲିବାର ଅଭ୍ୟାସ ହେତୁ ଦିଗ୍‌ଦର୍ଶକ ଖୋଜାରେ ଯାଇ ପହଞ୍ଚିଲି ଓଡ଼ିଆ ବିଭାଗରେ ।

ପ୍ରଫେସର୍ ସୁଦର୍ଶନ ଆଚାର୍ଯ୍ୟଙ୍କୁ କଲେଜ ପଢ଼ା ଦିନୁ ଜାଣେ । ପ୍ରାକ୍-ବିଶ୍ୱବିଦ୍ୟାଳୟ ଶ୍ରେଣୀରେ ଅଧ୍ୟୟନ କାଳରେ ବ୍ରହ୍ମପୁରରୁ 'ସମ୍ବିତ୍' ନାମରେ ଏକ ସାମୟିକ ପତ୍ରିକା 'ଲିଟିଲ୍ ମ୍ୟାଗାଜିନ୍' ପ୍ରକାଶନ ଏବଂ ସ୍ନାତକ ଶ୍ରେଣୀରେ କଳିଙ୍ଗ ସାହିତ୍ୟ ସମାଜ ସମ୍ପାଦକ ପଦବୀ ଗ୍ରହଣ ଅବସରରେ ସହରର ଜଣାଶୁଣା ସାହିତ୍ୟ ବ୍ୟକ୍ତିତ୍ୱଙ୍କ ସଂସ୍ପର୍ଶରେ ଆସିବା ସ୍ୱାଭାବିକ ଥିଲା । ଛାତ୍ର ଜୀବନରେ ବେଙ୍ଗାଲୁରୁରେ ପ୍ରଫେସର୍ ଏଚ୍.ଏସ୍. ଈଶ୍ୱରା ଓ ବ୍ରହ୍ମପୁରରେ ପ୍ରଫେସର୍ ବିୟତ୍‌କେଶ ତ୍ରିପାଠୀଙ୍କ ଭଳି ଗବେଷଣାରେ ପାରଦର୍ଶୀ ଶିକ୍ଷକଙ୍କ ଅଧୀନରେ ଅଧ୍ୟୟନ କରିବା ସୁଯୋଗ ମିଳିଥିଲା । ହାଇଦରାବାଦସ୍ଥିତ ଆମେରିକାନ୍ ଷ୍ଟଡ଼ିଜ୍ ରିସର୍ଚ୍ଚ ସେଣ୍ଟର୍‌ରେ ଦୀର୍ଘକାଳ ଧରି ସମ୍ପୃକ୍ତ ଥିବା ହେତୁ ଆଧୁନିକ ଗବେଷଣା ଧାରାରେ ପ୍ରଭାବିତ ହୋଇପଡ଼ିଥିଲି । ତେଣୁ ଆନ୍ତଃବିଷୟକ ଗବେଷଣା ପ୍ରତି ଆଗ୍ରହାନ୍ୱିତ ହୋଇଥିଲି ।

ଅପରପକ୍ଷେ ପିଲାଟି ଦିନୁ ଓଡ଼ିଆ ସାହିତ୍ୟ ସଙ୍ଗଠନରେ ସମ୍ପୃକ୍ତ ଥିବା ହେତୁ ମନରେ ପ୍ରଶ୍ନ ଉଠିଥିଲା ଯଦି ଓଡ଼ିଆ ସାମ୍ବାଦିକତାର ଉନ୍ମେଷ ସମ୍ପର୍କରେ ଗବେଷଣା

କରିବି, କାହିଁକି ଜଣେ ଅଣଓଡ଼ିଆ ଶିକ୍ଷକଙ୍କୁ ଦିଗ୍‌ଦର୍ଶକକ ଭାବେ ନେବି ? ଯାହାର କି ଓଡ଼ିଆ ପତ୍ରପତ୍ରିକା, ସଂସ୍କୃତି କିମ୍ବା ସମାଜ ସମ୍ପର୍କରେ ଜ୍ଞାନ ନଥିବ । ପ୍ରଫେସର୍ ସୁଦର୍ଶନ ଆଚାର୍ଯ୍ୟଙ୍କୁ ଓଡ଼ିଆ ବିଭାଗରେ ତାଙ୍କରି ପ୍ରକୋଷ୍ଠରେ ସାକ୍ଷାତ୍ କରି ମନକଥା ହେଲି । ସେ କହିଲେ, "ବହୁତ ଭଲ କଥା । ତମ ଭଳି ଜଣେ ସାମ୍ବାଦିକତାର ଅଧ୍ୟାପକ ଓଡ଼ିଆ ବିଷୟରେ ପିଏଚ୍.ଡି. ପଞ୍ଜିକରଣ ପାଇଁ ଆଗେଇ ଆସିବା ଆମ ବିଭାଗ ପାଇଁ ଖୁସିର ବିଷୟ, କାଗଜପତ୍ର ପ୍ରସ୍ତୁତ କରି ଆଣ ।" ଏକ ବିସ୍ତୃତ ଗବେଷଣା ପ୍ରସ୍ତାବ 'ରିସର୍ଚ୍ଚ ପ୍ରପୋଜଲ୍' ସହ ଅଧ୍ୟାୟ ବିଭକ୍ତିକରଣ 'ଚାପ୍‌ଟାରାଇଜେସନ୍' କରି ତୁରନ୍ତ ତାଙ୍କ ନିକଟରେ ଉପସ୍ଥାପିତ କଲି । କେତେଗୋଟି ବନାନ ଭୁଲ ସଂଶୋଧନ କରି ତତ୍‌କ୍ଷଣାତ୍ ନିର୍ଦ୍ଧାରିତ ପଞ୍ଜିକରଣ ଦରଖାସ୍ତରେ ସେ ସ୍ୱାକ୍ଷର କରି ମୋହର ମାରି ମୋ' ହାତକୁ ଫେରାଇ ଦେଇଥିଲେ ।

ଜଣେ ସାମ୍ବାଦିକତା ଛାତ୍ର ଓଡ଼ିଆରେ ପିଏଚ୍.ଡି. କଲେ ଶିକ୍ଷକ ଜୀବନରେ ପଦୋନ୍ନତି ସମୟରେ ସେହି ଉପାଧି ବୈଧ ନହୋଇପାରେ ବୋଲି ମୋର କେତେକ ଶୁଭଚିନ୍ତକ ସୂଚାଇ ଦେଇଥିଲେ । ତେବେ ସେଥି ପ୍ରତି ଭ୍ରୂକ୍ଷେପ କଲି ନାହିଁ । ମୋ' ମନ କହିଥିଲା, ସାମାନ୍ୟ ପଦୋନ୍ନତି ଲାଳସାରେ ମୋର ଓଡ଼ିଆ ଭାଷା ପ୍ରତି ଆଗ୍ରହ ଓ ସ୍ୱାଭିମାନକୁ ଏଡ଼ାଇ ଦେବା ଅନୁଚିତ । ଓଡ଼ିଆରେ ନିବନ୍ଧ 'ଥିସିସ୍' ଲେଖ, ରଚନା ଶକ୍ତିଶାଳୀ ହେବ, ପରେ କ'ଣ ହେବ ଦେଖିବାନି । ପଛଘୁଞ୍ଚା ଦେଲି ନାହିଁ ।

୧୯୯୮ରେ ପିଏଚ୍.ଡି. ଉପାଧି ପାଇଲି । ୧୯୯୯ରେ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ ଅନୁଦାନରେ ବିଶ୍ୱବିଦ୍ୟାଳୟ ପକ୍ଷରୁ ତାହା ପୁସ୍ତକ ରୂପେ ପ୍ରକାଶିତ ହେଲା । ତେବେ ୨୦୦୮ରେ ସେହି ବିଶ୍ୱବିଦ୍ୟାଳୟ ଅଧୀନରେ ଓଡ଼ିଆ 'ସାମ୍ବାଦିକତା ସ୍ୱତନ୍ତତା 'ସ୍ପେସେଲାଇଜେସନ'ରେ ପ୍ରାଧ୍ୟାପକ ପଦବୀ ନିମନ୍ତେ ସାକ୍ଷାତ୍‌କାରରେ ମୋର ଓଡ଼ିଆ ପିଏଚ୍.ଡି. ବିଚାରକୁ ନିଆଗଲା ନାହିଁ ଓ ମୋତେ ପଦୋନ୍ନତି ମିଳିଲା ନାହିଁ । ୨୦୧୫ରେ ମୁଁ ଅଧ୍ୟାପନା ଜୀବନରୁ ଅବସର ଗ୍ରହଣ କରିବା ବେଳକୁ ସ୍ନାତକ ଓ ସ୍ନାତକୋତ୍ତର ପାଠ୍ୟକ୍ରମରେ ଅନ୍ତଃବିଷୟକ ଶିକ୍ଷାଦାନକୁ ଗୁରୁତ୍ୱ ଦିଆଯାଇ ରାଜ୍ୟର ସବୁ ବିଶ୍ୱବିଦ୍ୟାଳୟରେ ପାଠ୍ୟଖସଡ଼ା 'କୋର୍ସେସ୍ ଅଫ୍ ଷ୍ଟଡ଼ିଜ୍' ପ୍ରସ୍ତୁତ କରାଗଲା । ପଚିଶି ବର୍ଷ ତଳର ମୋର ପଦକ୍ଷେପର ବୈଧୀକରଣ ହେଲା । କୋଡ଼ିଏ ବର୍ଷ ଆଗରୁ ମୁଁ ନେଇଥିବା ପଦକ୍ଷେପ କାରଣରୁ ମୋତେ ଶାସ୍ତି ମିଳିଥିଲା ।

ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ସ୍ନାତକୋତ୍ତର ସାମ୍ବାଦିକତା ଓ ଗଣଯୋଗାଯୋଗ ବିଭାଗରେ ମୁଁ ୨୭ ବର୍ଷ ବିଭିନ୍ନ ସ୍ତରରେ କାର୍ଯ୍ୟ କରିଥିଲି । ଭଞ୍ଜବିହାର କଳା ଭବନରେ

ସାମ୍ବାଦିକତା ସାଙ୍ଗକୁ ଇଂଲିଶ୍ ଓ ଓଡ଼ିଆ ଦୁଇ ବିଭାଗରେ ମୁଁ ବିଦ୍ୟାର୍ଥୀ ଥିବା ହେତୁ ସେହି ଦୁଇ ବିଭାଗ ପ୍ରତି ମୋର ଦୁର୍ବଳତା ରହି ଆସିଥିଲା । ଇଂଲିଶ ଓ ଓଡ଼ିଆ ବିଭାଗର ଶିକ୍ଷକମାନଙ୍କ ସହ ବରାବର ଦେଖା ସାକ୍ଷାତ ହୁଏ ଏବଂ ବିଷୟଭିତ୍ତିକ ଆଲୋଚନା ହୁଏ । ସ୍ୱଭାବତଃ ସଭାସମିତିରେ ମୁଁ ଯୋଗ ଦେଉ ନଥିବା ହେତୁ ଏହି ଦୁଇ ବିଭାଗରେ ଆୟୋଜିତ ବିଭିନ୍ନ ସାର୍ବଜନିକ କାର୍ଯ୍ୟକ୍ରମରେ ମୋର ଉପସ୍ଥିତି ନଥାଏ, ତେବେ ଟିକିନିଖି ହିସାବ ନିଶ୍ଚିତ ଭାବେ ରଖୁଥିଲି । ଓଡ଼ିଆ ବିଭାଗର ଶିକ୍ଷକମାନେ ରାଜ୍ୟର ସମକାଳୀନ ସାହିତ୍ୟିକ ପାଣିପାଗ ସମ୍ପର୍କରେ ମୋ' ସହ ଆଳାପ ଆଲୋଚନା କରିବା ଲାଗି ଆଗ୍ରହ ପ୍ରକାଶ କରିଆସିଛନ୍ତି । ଅବସର ପରେ ବି ଅକସ୍ମାତ୍ ଭଞ୍ଜବିହାର ପ୍ରାଙ୍ଗଣରେ ପହଞ୍ଚିଲେ ଓଡ଼ିଆ ବିଭାଗ ଶିକ୍ଷକଙ୍କ ସହ ସାକ୍ଷାତ୍ ଆତ୍ମୀୟତା ଭରିଦିଏ ।

ମୋ' ଅନୁଭୂତିରେ ଓଡ଼ିଆ ବିଭାଗର ଅନୁଶାସନ କଠୋର । ମୋର ଗବେଷଣା କାଳରେ ପ୍ରଫେସର୍ ଆଚାର୍ଯ୍ୟ କହିଥିଲେ, "ତମର ନିବନ୍ଧ ସ୍ୱୀକୃତି ପାଇବାର ବର୍ଷକ ମଧ୍ୟରେ ଯେପରି ତାହା ପୁସ୍ତକ ଆକାରରେ ପ୍ରକାଶ ପାଇବ, ସେଥିପ୍ରତି ଧ୍ୟାନ ଦେବ ।" ଯେ କୌଣସି ସ୍ୱାଭିମାନୀ ଗବେଷକ ପକ୍ଷରେ ପିଏଚ୍.ଡି. ନିବନ୍ଧକୁ ସର୍ବସାଧାରଣରେ ପ୍ରକାଶନ କରାଇବା ଲାଗି ନିର୍ଦ୍ଦେଶ ରଚନାର ଗୁଣବତ୍ତା ସମୀକ୍ଷାର ଭୟ ମୂଳରୁ ହିଁ ସଜାଡ଼ି ନେଇଥାଏ । ପ୍ରଫେସର୍ ଆଚାର୍ଯ୍ୟ ମୋ' ନିବନ୍ଧର ଶେଷ ଅଧ୍ୟାୟ ସଂଶୋଧନ କରୁଥା'ନ୍ତି । ତାହା ଠିକ୍ ସମୟରେ ସରିଲାନି । ନିବନ୍ଧ ଦଖଲ ସମୟସୀମା ଆଉ ବର୍ଷେ ବୃଦ୍ଧି କରିବାକୁ ନିର୍ଦ୍ଦେଶ ଦେଲେ । କହିଲେ, "ତମର ନିବନ୍ଧର ଗୋଟିଏ ବି ବାକ୍ୟ ବିନା ସମୀକ୍ଷାରେ ମୁଁ ଅନୁମୋଦନ କରିବି ନାହିଁ ।" ସେୟା ହିଁ ହେଲା । ସମୟସୀମା ଆଉ ବର୍ଷେ ବୃଦ୍ଧି କରାଯାଇ ମାସକ ମଧ୍ୟରେ ନିବନ୍ଧ ଦାଖଲ କରାଗଲା । ଅବଶ୍ୟ ମୋର ଅନୁଭୂତି ସାର୍ବଜନୀନ ନହୋଇପାରେ, କିନ୍ତୁ ଓଡ଼ିଆ ବିଭାଗର ପରାକାଷ୍ଠା ଆକଳନରେ ଏଭଳି କେତେକ ଉଦାହରଣକୁ ମଧ୍ୟ ବିଚାରକୁ ନିଆଯାଇପାରେ ।

ଶୈଶବାବସ୍ଥାରୁ ଓଡ଼ିଆ ଭାଷା ସାହିତ୍ୟ ପ୍ରତି ମୋର ଆଗ୍ରହ ରହିଆସିଛି । ହୁଏତ ପାରିବାରିକ ପରିବେଶରେ ମୋ ଗୋସାଇଁ ବାପା ନାଟ୍ୟପ୍ରେମୀ ପିଣ୍ଡିକ ମହାପାତ୍ର, ଭ୍ରାତାଗଣ ଚଳଚ୍ଚିତ୍ର ଭାଷ୍ୟକାର ଓ ଚଳଚ୍ଚିତ୍ର ସାମ୍ବାଦିକ ଗଣେଶ ମହାପାତ୍ର, ଔପନ୍ୟାସିକ ଉଦୟ ମହାପାତ୍ର ଓ କବି ରମେଶ ମହାପାତ୍ରଙ୍କ ସର୍ଜନ-କର୍ମ ଦ୍ୱାରା ପ୍ରଭାବିତ ହୋଇପାରିଥାଏ । ମୁଁ ଇଂଲିଶ୍ ସାହିତ୍ୟରେ ଏମ.ଏ. କରିଛି, ଇଂଲିଶ ଲେଖି ଅର୍ଥ ଉପାର୍ଜନ କରେ । ତେବେ ଓଡ଼ିଆ ଲେଖାପଢ଼ା କେବେ ବନ୍ଦ ହୋଇ ନାହିଁ । ଅବସର ଗ୍ରହଣ ପରେ ମୋର ରଚନାର ଅଶୀ ଭାଗ ଓଡ଼ିଆ । ଆଜି ବି ଓଡ଼ିଆରେ ପାଞ୍ଚ-ସାତ ଶବ୍ଦ ଲେଖି ସାରିବା ପରେ ମୁଁ ଖୁସି

| | | |
|---|---|---|
| ସସ୍ମିତା କୁମାରୀ ପଟ୍ଟନାୟକ | ବୈଦେହୀଶ ବିଳାସ ଓ ଜଗମୋହନ ରାମାୟଣ: ଏକ ତୁଳନାତ୍ମକ ଅଧ୍ୟୟନ | ଡ. ପ୍ରମୋଦ କୁମାର ଦ୍ୱିବେଦୀ |
| ଶୁଚିସ୍ମିତା ଦାଶ | ଔପନ୍ୟାସିକ ଚିନ୍ତାମଣି ମହାନ୍ତି- ଏକ ଅଧ୍ୟୟନ | ଡ. ପ୍ରମୋଦ କୁମାର ଦ୍ୱିବେଦୀ |
| କିଶୋରଚନ୍ଦ୍ର ସାହୁ | ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟରେ ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା | ଡ. ପୂର୍ଣ୍ଣଚନ୍ଦ୍ର ମିଶ୍ର |
| ବିଜୟ କୁମାର ମହାରଣା | କବି ଡ.କାଳିନ୍ଦୀଚରଣ ପାଣିଗ୍ରାହୀ ଓ ହିନ୍ଦୀ କବି ସୁର୍ଯ୍ୟକାନ୍ତ ତ୍ରିପାଠୀ ନିରାଲାଙ୍କ କବିତା : ଏକ ତୁଳନାତ୍ମକ ଅଧ୍ୟୟନ | ଡ. ସଦାନନ୍ଦ ନାୟକ |
| ରବିନାରାୟଣ ପାଣିଗ୍ରାହୀ | ନିସଙ୍ଗତା, ସମ୍ମୋହନ ଓ ବିଷାଦ କବି ପ୍ରତିଭା ଶତପଥୀ | ଡ. ବାଉରୀବନ୍ଧୁ କର |

## ୨୦୧୧

| | | |
|---|---|---|
| ସୁଜାତା ପଣ୍ଡା | ଫକୀରମୋହନ ସାହିତ୍ୟରେ ଉତ୍କଳର ସାରସ୍ୱତ ଜଗତ | |
| ବିପିନ ବିହାରୀ ମିଶ୍ର | ଆଧୁନିକ ଓଡ଼ିଆ କାବ୍ୟାନୁଭୂତି ଓ କବି ଦିଲ୍ଲୀପ ଦାସ | ଡ.ଦେବୀପ୍ରସନ୍ନ ପଟ୍ଟନାୟକ |
| ଜଗନ୍ନାଥ ବିଶୋୟୀ | ନାଟ୍ୟକାର ମନୋରଞ୍ଜନ ଦାସ ଓ ଓଡ଼ିଆ ଏକାଙ୍କିକା ପରମ୍ପରା | ଡ. ଦେବୀପ୍ରସନ୍ନ ପଟ୍ଟନାୟକ |
| ସୁଦର୍ଶନ ପଟ୍ଟନାୟକ | ଶ୍ରୀ ଜଗନ୍ନାଥଙ୍କ ସେବା ଓ ସେବକ : ଏକ ଅଧ୍ୟୟନ | ଡ. ପୂର୍ଣ୍ଣଚନ୍ଦ୍ର ମିଶ୍ର |
| ସଂଯୁକ୍ତା କୁମାରୀ ଦେବୀ | ବିକ୍ଷୁବ୍ଧ ମଣିଷ : ବିମୋହିତ ବିଶ୍ୱ- ପ୍ରତିଭାରାୟଙ୍କ ଉପନ୍ୟାସରେ ମିଥ୍ ଓ ପାରମ୍ପରିକ ମୂଲ୍ୟବୋଧ | ଡ. ଦେବୀପ୍ରସନ୍ନ ପଟ୍ଟନାୟକ |
| ରୀନା ସାହୁ | ମଞ୍ଜୁଶ୍ରୀ ସତ୍ୟନାରାୟଣ ପଣ୍ଡା | ଡ. ଅଶ୍ୱିନୀ କୁମାର ପଣ୍ଡା |
| ଅରୁଣ କୁମାର ପରିଡ଼ା | କଥାଶିଳ୍ପୀ ହରେକୃଷ୍ଣ ମହତାବ: ଏକ ଆକଳନ | ଡ. କୃଷ୍ଣଚନ୍ଦ୍ର ପ୍ରଧାନ |

## ୨୦୧୨

| | | |
|---|---|---|
| ଇତିଶ୍ରୀ ରାୟ | କୁନ୍ତଳାକୁମାରୀଙ୍କ କବିତାର ଭାବବସ୍ତୁ | ଡ. କୃଷ୍ଣଚନ୍ଦ୍ର ପ୍ରଧାନ |
| ବିବେକାନନ୍ଦ ପଟ୍ଟନାୟକ | ବିଭୁଦତ୍ତ ମିଶ୍ରଙ୍କ କବିତା: ଏକ ଅଧ୍ୟୟନ | ଡ.ବିବେକାନନ୍ଦ ପାଣିଗ୍ରାହୀ |

| | | |
|---|---|---|
| ଚାରୁପ୍ରଭା ନାୟକ | ଓଡ଼ିଆ ପ୍ରବନ୍ଧ ସାହିତ୍ୟର ଆଦିବାସୀ ସଂସ୍କୃତିର ଦିଗ | ଡ. ବାଉରୀବନ୍ଧୁ କର |
| ପ୍ରକାଶ କୁମାର ସେନାପତି | ଓଡ଼ିଆ ଓ ଆନ୍ଧ୍ର ସଂସ୍କୃତିର ମିଳନବିନ୍ଦୁରେ ରାଜର୍ଷୀ ବିକ୍ରମ ଦେବବର୍ମ୍ମା | ଡ. ସୁଦର୍ଶନ ଆଚାର୍ଯ୍ୟ |
| ପ୍ରବୀର କେଶରୀ ପ୍ରଧାନ | ଯଦୁନାଥ ସୃଷ୍ଟି ମାନସ, ନାଟକ: ଏକ ବିଶେଷ ଅନୁଶୀଳନ | ଡ. କୈଳାସ ଚନ୍ଦ୍ର ପଣ୍ଡା |
| ଜୟନ୍ତୀ ବେହେରା | ବୈଷ୍ଣବଚରଣ ସାମଲଙ୍କ ସାମଗ୍ରିକ ସୃଷ୍ଟି : ଏକ ଅନୁଶୀଳନ | ଡ. ସଦାନନ୍ଦ ନାୟକ |
| ପୁଷ୍ପଲତା ସାହୁ | ଗୋପବନ୍ଧୁ ଦାସଙ୍କ କାବ୍ୟ ମାନସ : ଏକ ଅଧ୍ୟୟନ | ଡ. ଭାଗିରଥି ନାୟକ |
| ସାଗରିକା ମହାପାତ୍ର | ନିବିଡ଼ ବସୁଧା ନିମଜ୍ଜିତ ସ୍ୱପ୍ନ କାବ୍ୟସ୍ରଷ୍ଟା ଦିଲ୍ଲୀପ ଦାସ: ଏକ ଅନୁଶୀଳନ | ଡ. ଦେବୀପ୍ରସନ୍ନ ପଟ୍ଟନାୟକ |
| ସୁନନ୍ଦା ତ୍ରିପାଠୀ | ରୋମାଣ୍ଟିକ କାବ୍ୟଧାରା ଓ କବି ଡ.ମାୟାଧର ମାନସିଂହ | ଡ. ପ୍ରମୋଦ କୁମାର ଦ୍ୱିବେଦୀ |
| ମମତା କୁମାରୀ ତ୍ରିପାଠୀ | ଓଡ଼ିଶାରେ ରାମକଥା ଓ ଭଞ୍ଜ ସାହିତ୍ୟରେ ତାର ପ୍ରତିଫଳନ | ଡ. ପୂର୍ଣ୍ଣଚନ୍ଦ୍ର ମିଶ୍ର . |
| ସଞ୍ଜୟ କୁମାର ପଣ୍ଡା | ଓଡ଼ିଆ ସାହିତ୍ୟକୁ ଚିକିଟୀର ଅବଦାନ | ଡ. ଲମ୍ବୋଦର ପାଣିଗ୍ରାହୀ |
| ନଳିନୀ କୁମାର ସାବତ | ଓଡ଼ିଆ ସାହିତ୍ୟକୁ ପଦ୍ମନାଭ ଗଜପତିଙ୍କ ଅବଦାନ | ଡ. କାହ୍ନୁଚରଣ ପାଢ଼ୀ |
| ଗୁରୁମୂର୍ତ୍ତି ନାୟକ | ଚନ୍ଦ୍ରଶେଖର ନନ୍ଦଙ୍କ ନାଟ୍ୟକୃତି: ଏକ ଅଧ୍ୟୟନ | ଡ. ବିଦ୍ୟୁତ୍‌ପ୍ରଭା ସାହୁ |
| ସ୍ୱାତୀ ଚାଟାର୍ଜୀ | | ଡ. ବାଉରୀବନ୍ଧୁ କର |
| ଶ୍ୟାମ ଭୋଇ | ମାନବିକ ଚେତନାର ରୂପକାର: ଗାଳ୍ପିକ ତରୁଣକାନ୍ତି ମିଶ୍ର | ଡ. କୃଷ୍ଣଚନ୍ଦ୍ର ପ୍ରଧାନ |

**୨୦୧୩**

| | | |
|---|---|---|
| ସଦାନନ୍ଦ ଅଢ଼ାରୀ | କୋରାପୁଟର ଦୁରୁଆ ସଂପ୍ରଦାୟ : ଏକ ସାଂସ୍କୃତିକ ଅଧ୍ୟୟନ | ଡ. ପ୍ରସନ୍ନ କୁମାର ସ୍ୱାଇଁ |
| ରମେଶ ଚନ୍ଦ୍ର ପ୍ରଧାନ | ଓଡ଼ିଆ ବୈଷ୍ଣବ ଭକ୍ତିକାବ୍ୟ : ଏକ ଅଧ୍ୟୟନ | ଡ. ବନମାଳୀ ରଥ |

| | | |
|---|---|---|
| ନିତ୍ୟାନନ୍ଦ ପଟ୍ଟନାୟକ | କବି ସାର୍ବଭୌମ ଶ୍ରୀନାଥ ଏବଂ କବିସମ୍ରାଟ ଉପେନ୍ଦ୍ରଭଞ୍ଜ: ଏକ ତୁଳନାତ୍ମକ ଅଧ୍ୟୟନ | ଡ. ଅଲେଖ ଚନ୍ଦ୍ର ପ୍ରଧାନ |
| ସୁରଚିତା ପଟ୍ଟନାୟକ | ଗୋପାଳଚନ୍ଦ୍ର ପ୍ରହରାଜଙ୍କ ରମ୍ୟରଚନା : ଏକ ଅନୁଶୀଳନ | ଡ. କୃଷ୍ଣଚନ୍ଦ୍ର ପ୍ରଧାନ |
| ଲକ୍ଷ୍ମୀପ୍ରସାଦ ସାହୁ | ଜାନକୀବଲ୍ଲଭ ବିଳାସ : ଏକ ଅଧ୍ୟୟନ | |
| ଚିରଞ୍ଜନ ପଟ୍ଟନାୟକ | ସୁରେନ୍ଦ୍ର ଗଡ଼ର ଐତିହାସିକ ଅନ୍ୱେଷା | ଡ. ଦେବୀପ୍ରସନ୍ନ ପଟ୍ଟନାୟକ |
| କମଳାକୃଷ୍ଣ ତ୍ରିପାଠୀ | ଓଡ଼ିଆ ସାହିତ୍ୟକୁ ଜୟପୁରର ଅବଦାନ | ଡ. ପ୍ରମୋଦ କୁମାର ଦାଶ |
| | **୨୦୧୪** | |
| ଶାନ୍ତନୁ କୁମାର ପଣ୍ଡା | ରାଜକବି ବିଶ୍ୱମ୍ଭର ରାଜେନ୍ଦ୍ରଦେବ: କୃତି ଓ କୃତିତ୍ୱ | ଡ. ଲମ୍ବୋଦର ପାଣିଗ୍ରାହୀ |
| ଦୁର୍ଯ୍ୟୋଧନ ସେଠୀ | ଗଞ୍ଜାମର ଲୋକନାଟକ 'ଦଣ୍ଡନାଟ': ଏକ ଅଧ୍ୟୟନ | ଡ. ହରିହର ମିଶ୍ର |
| ସଂଗୀତା ମିଶ୍ର | ପୁରାଣକାର କୃଷ୍ଣସିଂହ : କୃତି ଓ କୃତିତ୍ୱ | ଡ. ବିବେକାନନ୍ଦ ପାଣିଗ୍ରାହୀ |
| ମୁନୀନ୍ଦ୍ର ମହାଲିକ | ବ୍ରଜନାଥ ରଥଙ୍କ କାବ୍ୟଦିଗନ୍ତ | ଡ. ବିବେକାନନ୍ଦ ପାଣିଗ୍ରାହୀ |
| ବାସୁଦେବ ସାହୁ | କୋରାପୁଟର କନ୍ଧ ସମ୍ପ୍ରଦାୟ : ଏକ ସାମାଜିକ ଓ ସାଂସ୍କୃତିକ ଅଧ୍ୟୟନ | ଡ. ପ୍ରସନ୍ନ କୁମାର ସ୍ୱାଇଁ |
| ବିଶେଶ୍ୱର ଆଚାର୍ଯ୍ୟ | ଗୋପୀନାଥ ମହାନ୍ତିଙ୍କ ଉପନ୍ୟାସରେ ପ୍ରତିଫଳିତ ଆଦିବାସୀ ସଂସ୍କୃତି : ଏକ ଅଧ୍ୟୟନ | ଡ. ସଦାନନ୍ଦ ନାୟକ |
| ଲଳିତା ବେହେରା | କବି ଓ ସଂପାଦକ ସରୋଜ ରଂଜନ ମହାନ୍ତି : ଏକ ଅଧ୍ୟୟନ | ଡ. ସଦାନନ୍ଦ ନାୟକ |
| ରାମକୃଷ୍ଣ ସାମଲ | ମନୋଜ ଦାସଙ୍କ କ୍ଷୁଦ୍ରଗଳ୍ପରେ ମାନବିକ ମୂଲ୍ୟବୋଧ | ଡ. କୃଷ୍ଣଚନ୍ଦ୍ର ପ୍ରଧାନ |
| | **୨୦୧୫** | |
| ବନିତା କୁମାରୀ ପଟ୍ଟନାୟକ | ଗଞ୍ଜାମ ଲୋକ ନାଟକ : ରାଧାପ୍ରେମଲୀଳା – ଏକ ଅଧ୍ୟୟନ | ଡ. ହରିହର ମିଶ୍ର |
| ବିଷ୍ଣୁପ୍ରିୟା ପଣ୍ଡା | ଦକ୍ଷିଣ ଓଡ଼ିଶାର ଲୋକନାଟକ 'ରାମଲୀଳା': ଏକ ଅଧ୍ୟୟନ | ଡ. ହରିହର ମିଶ୍ର |

| | | |
|---|---|---|
| ବିଜୟ ଚନ୍ଦ୍ର ପାଣିଗ୍ରାହୀ | ଓଡ଼ିଆ ସାହିତ୍ୟରେ ମାର୍କ୍ସବାଦୀ ଚେତନା ଓ ସ୍ରଷ୍ଟା ଭଗବତୀଚରଣ | ଡ. ବିବେକାନନ୍ଦ ପାଣିଗ୍ରାହୀ |
| ଅନନ୍ତରାମ କର | ଓଡ଼ିଆ ସାହିତ୍ୟକୁ ଅବିଭକ୍ତ ଗଂଜାମର ଦାନ | ଡ. ବିବେକାନନ୍ଦ ପାଣିଗ୍ରାହୀ |
| ରଶ୍ମିତା କୁମାରୀ ପାତ୍ର | ଓଡ଼ିଆ ସାହିତ୍ୟକୁ ପାରଳାଖେମୁଣ୍ଡିର ଅବଦାନ | ଡ. କାହ୍ନୁଚରଣ ପାଢ଼ୀ |
| ଡମ୍ବରୁଧର ଦାସ | କବି ରାଜେନ୍ଦ୍ରକିଶୋର ପଣ୍ଡାଙ୍କ କବିତାର ଭାଷା ଓ ରଚନାଶୈଳୀ | ଡ. ବାଉରୀବନ୍ଧୁ କର |
| ମନୋରଞ୍ଜନ ବିଷୋୟୀ | ସୁରେନ୍ଦ୍ର ମହାନ୍ତିଙ୍କ ଉପନ୍ୟାସରେ ପରମ୍ପରା ଓ ଆଧୁନିକତା: ଏକ ଅନୁଧ୍ୟାନ | ଡ. ଦେବୀପ୍ରସନ୍ନ ପଟ୍ଟନାୟକ |
| ସୁନିତା ବେହେରା | ଶ୍ରୀଜଗନ୍ନାଥ ମନ୍ଦିରର ଅଭିଲେଖ : ଏକ ଅଧ୍ୟୟନ | ଡ. ପୂର୍ଣ୍ଣଚନ୍ଦ୍ର ମିଶ୍ର |
| ସସ୍ମିତା ନାୟକ | ସାଂପ୍ରତିକ ଓଡ଼ିଆ ନାଟକ ଓ ନାଟ୍ୟକାର ନୀଳାଦ୍ରିଭୂଷଣ ହରିଚନ୍ଦନ: ଏକ ଅଧ୍ୟୟନ | ଡ. ମନୋରମାବିଶ୍ୱାଳ ମହାପାତ୍ର |
| କୁମାରୀ ସୁଜାତା ତ୍ରିପାଠୀ | ରାମକଥା ପରମ୍ପରାରେ ନରସିଂହ ମାଠଙ୍କ ରଘୁନାଥ କୀର୍ତ୍ତନ | ଡ. ହରିକୃଷ୍ଣ ନାୟକ |
| ଉମାଶଙ୍କର ପଣ୍ଡା | ଅସୀମ ଯାତ୍ରାର ଅମୃତ ଆଲେଖ୍ୟ : ମନୋଜ ଦାସଙ୍କ ଉପନ୍ୟାସର ସୃଷ୍ଟି- | ଡ. ହରିକୃଷ୍ଣ ନାୟକ |
| ସ୍ୱାଗତିକା ପାତ୍ର | କବି କୃଷ୍ଣମୋହନ ପଟ୍ଟନାୟକଙ୍କ କବିପ୍ରତିଭା: ଦୃଷ୍ଟି ଓ ଦିଗନ୍ତ | ଡ. କୃଷ୍ଣଚନ୍ଦ୍ର ପ୍ରଧାନ |
| | ୨୦୧୬ | |
| ଜ୍ୟୋସ୍ନାରାଣୀ ସାହୁ | ଗୋପବନ୍ଧୁଙ୍କ ସାହିତ୍ୟରେ ମାନବିକ ମୂଲ୍ୟବୋଧ: ଏକ ଅନୁଶୀଳନ | ଡ. ପ୍ରଦୀପ୍ତ କୁମାର ବାରିକ |
| ଶିବପ୍ରସାଦ ନାୟକ | ଶାନ୍ତନୁ କୁମାର ଆଚାର୍ଯ୍ୟଙ୍କ କ୍ଷୁଦ୍ରଗଳ୍ପ ଭାବବସ୍ତୁ ବିମର୍ଷ | ଡ. ଅଲେଖଚନ୍ଦ୍ର ପ୍ରଧାନ |
| ରାମାନୁଜ ଆଚାର୍ଯ୍ୟ | ସୂର୍ଯ୍ୟମଣିଙ୍କ ଆଧାତ୍ମ୍ୟ ରାମାୟଣ : ଏକ ଅନୁଶୀଳନ | ଡ. ଅଶ୍ୱିନୀ କୁମାର ପଣ୍ଡା |
| ବିନ୍ଦୁ ପଣ୍ଡା | କୃଷ୍ଣସିଂହଙ୍କ ହରିବଂଶ : ଏକ ଅଧ୍ୟୟନ | ଡ. ବିଦ୍ୟୁତ୍‌ପ୍ରଭା ସାହୁ |

| | | |
|---|---|---|
| ସୁଧାଂଶୁ ଶେଖର କର | କବିସୂର୍ଯ୍ୟ ବଳଦେବ ରଥଙ୍କ ଜୀବନ ଓ ପ୍ରତିଭା | ଡ. ପ୍ରସନ୍ନ କୁମାର ସ୍ୱାଇଁ |
| ରଶ୍ମିତା ମିଶ୍ର | ଓଡ଼ିଆ ମାର୍କ୍ସବାଦୀ ସାହିତ୍ୟ ଓ ସ୍ରଷ୍ଟା ରବି ସିଂ | ଡ. ଦେବୀପ୍ରସନ୍ନ ପଟ୍ଟନାୟକ |
| ସୁରଜା ସିଂ | କଥାକାର ଗୋପୀନାଥ ମହାନ୍ତିଙ୍କ ସୃଷ୍ଟିରେ ଅବହେଳିତ ଶ୍ରେଣୀର ଚିତ୍ର | ଡ. ଦେବୀପ୍ରସନ୍ନ ପଟ୍ଟନାୟକ |
| ସୁମିତ୍ରା ପାଢ଼ୀ | ଶ୍ରୀମନ୍ଦିରର ପର୍ବପର୍ବାଣି : ଶାସ୍ତ୍ରୀୟ ତତ୍ତ୍ୱ ଓ ସାହିତ୍ୟିକ ଅଭିବ୍ୟକ୍ତି | ଡ. ପୂର୍ଣ୍ଣଚନ୍ଦ୍ର ମିଶ୍ର |
| ତରିଣୀସେନ ବେହେରା | ଆଳଙ୍କାରିକ ଉପେନ୍ଦ୍ର ଭଞ୍ଜ | ଡ. ପୂର୍ଣ୍ଣଚନ୍ଦ୍ର ମିଶ୍ର |
| ପ୍ରଶାନ୍ତ କୁମାର ପାଣିଗ୍ରାହୀ | ସୁରେନ୍ଦ୍ର ମହାନ୍ତିଙ୍କ ଉପନ୍ୟାସରେ ବିଷୟ ବିନ୍ୟାସ | ଡ. ପ୍ରସନ୍ନ କୁମାର ପଟ୍ଟନାୟକ |
| ପ୍ରକାଶ ଚନ୍ଦ୍ର ଜେନା | ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ ଉପନ୍ୟାସରେ ନାରୀ | ଡ. ହରିକୃଷ୍ଣ ନାୟକ |
| ବୁନି କୁମାରୀ ପାଣିଗ୍ରାହୀ | ମହାପାତ୍ର ନୀଳମଣି ସାହୁଙ୍କ ରମ୍ୟରଚନା : ଏକ ଅନୁଶୀଳନ | ଡ. ଅଲେଖଚନ୍ଦ୍ର ପ୍ରଧାନ |
| ଚକ୍ରପାଳ ପ୍ରଧାନ | ଆନ୍ଧ୍ରପ୍ରଦେଶ ଅନ୍ତର୍ଗତ ଓଡ଼ିଶାର ବିଚ୍ଛିନ୍ନାଞ୍ଚଳୀୟ ଲୋକସଂସ୍କୃତି : ଏକ ଅଧ୍ୟୟନ | |
| ଚିନ୍ମୟୀ ଆଚାର୍ଯ୍ୟ | ଆଧୁନିକ ଓଡ଼ିଆ କବିତା ଓ କବି ସୌଭାଗ୍ୟ ମିଶ୍ର | ଡ. ଦେବୀପ୍ରସନ୍ନ ପଟ୍ଟନାୟକ |
| ବାବୁଲି ବେହେରା | ଫକୀରମୋହନଙ୍କ ଉପନ୍ୟାସରେ ସାମାଜିକ ବାସ୍ତବତା | ଡ. ଦେବୀପ୍ରସନ୍ନ ପଟ୍ଟନାୟକ |
| ସୁନିତା ବେହେରା | ଶ୍ରୀଜଗନ୍ନାଥ ମନ୍ଦିରର ଅଭିଲେଖ | ଡ. ପୂର୍ଣ୍ଣଚନ୍ଦ୍ର ମିଶ୍ର |
| ସ୍ୱାତୀ ଚାଟାର୍ଜୀ | ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ ଉପନ୍ୟାସରେ ବାମପନ୍ଥୀ ଚିନ୍ତାଧାରା | ଡ. ବାଉରୀବନ୍ଧୁ କର |
| ସଂଜୁଶ୍ରୀ ସାହୁ | କୁନ୍ତଳା କୁମାରୀଙ୍କ ଉପନ୍ୟାସରେ ନାରୀ ଚରିତ୍ର | ଡ. କୃଷ୍ଣଚନ୍ଦ୍ର ପ୍ରଧାନ |

୨୦୧୭

| | | |
|---|---|---|
| ସବିତା ପାଣିଗ୍ରାହୀ | ଓଡ଼ିଶାର ଲୋକନାଟକ 'ପାଲା': ଏକ ଅଧ୍ୟୟନ | ଡ. ହରିହର ମିଶ୍ର |
| ସୁରେଶ୍ୱରୀ ବାଘ | କଳାହାଣ୍ଡିର ମୌଖିକ ସାହିତ୍ୟ : ପରମ୍ପରା ଓ ପୁରୋଦୃଷ୍ଟି | ଡ. ପ୍ରସନ୍ନ କୁମାର ସ୍ୱାଇଁ |

| | | |
|---|---|---|
| ବିଜୟାନନ୍ଦ ମହାପାତ୍ର | ଉପେନ୍ଦ୍ରଭଞ୍ଜଙ୍କ କାବ୍ୟରେ ଚରିତ୍ର ଏକ ଅନୁଶୀଳନ | ଡ. ପୂର୍ଣ୍ଣଚନ୍ଦ୍ର ମିଶ୍ର |
| ନଳିନୀପ୍ରଭା ଦାସ | ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ କବିତାରେ ନାରୀ | ଡ. ବିବେକନନ୍ଦ ପାଣିଗ୍ରାହୀ |
| ବି. ପ୍ରକାଶଚନ୍ଦ୍ର ପାତ୍ର | ଏକବିଂଶ ନବ୍ୟ କଥାକଳ୍ପନା : କଥାସ୍ରଷ୍ଟା ଦୀନନାଥ ପାଠୀ | ଡ. ଦେବୀପ୍ରସନ୍ନ ପଟ୍ଟନାୟକ |
| ସୁଚିସ୍ମିତା ପ୍ରିୟଦର୍ଶିନୀ | ସାମନ୍ତବାଦର ଅବକ୍ଷୟ ଓ ମନୋଜ କଥାସାହିତ୍ୟ | ଡ. ଅଶ୍ୱିନୀ କୁମାର ପଣ୍ଡା |
| ସର୍ବଦାନ ଟାକ୍ରୀ | ଆଦି ଅନୁଭୂତି: ନିୟତ ଧରିତ୍ରୀ- ଭତରା ଜନଜାତିର ଜୀବନଚର୍ଯ୍ୟା- | ଡ. ଦେବୀପ୍ରସନ୍ନ ପଟ୍ଟନାୟକ |
| ପ୍ରଶାନ୍ତ କୁମାର ପଟ୍ଟନାୟକ | କଥାକାର ପ୍ରଫୁଲ୍ଲ କୁମାର ତ୍ରିପାଠୀ : ଏକ ଅଧ୍ୟୟନ | ଡ. ବିଦ୍ୟୁତ୍‌ପ୍ରଭା ସାହୁ |
| ଭାସ୍କର ମିଶ୍ର | ଗଙ୍ଗାଧର ମେହେର : ବ୍ୟକ୍ତିତ୍ୱ ଓ କୃତିତ୍ୱ | ଡ. ହରିହର ମିଶ୍ର |
| ପୀତାମ୍ବର ବେହେରା | ଦକ୍ଷିଣ ଓଡ଼ିଶାର ଲୋକନାଟକ 'ଭାରତଲୀଳା': ଏକ ଅଧ୍ୟୟନ | ଡ. ହରିହର ମିଶ୍ର |
| ପ୍ରକାଶ ଚନ୍ଦ୍ର ପାଣିଗ୍ରାହୀ | ସାହିତ୍ୟିକ ତାରିଣୀଚରଣ ରଥ : ଏକ ଅନୁଶୀଳନ | ଡ. ନୀଳାଦ୍ରିଭୂଷଣ ହରିଚନ୍ଦନ |
| | **୨୦୧୮** | |
| ସଂଯୁକ୍ତା ସାହୁ | ଓଡ଼ିଆ ପୌରାଣିକ ଉପନ୍ୟାସ | ଡ. ପ୍ରଦୀପ କୁମାର ସୁବୁଦ୍ଧି |
| କୃଷ୍ଣପ୍ରସାଦ ମହାପାତ୍ର | ରୋମାଣ୍ଟିକ୍ କାବ୍ୟାନୁଭୂତି ଓ କବି ବିଭୁଦତ୍ତ ମିଶ୍ର | ଡ. ଦେବୀପ୍ରସନ୍ନ ପଟ୍ଟନାୟକ |
| ନୃସିଂହାନନ୍ଦ ଶାସମଲ | ମାନସିଂହଙ୍କ କବିତାରେ ଜାତୀୟବାଦୀ ଚେତନା | ଡ. ଦେବୀପ୍ରସନ୍ନ ପଟ୍ଟନାୟକ |
| ସ୍ମିତାରାଣୀ ପଣ୍ଡା | ମାଟିର ସଂପ୍ରୀତି : ମୁଗ୍ଧ ପ୍ରତିଲିପି- କୃଷ୍ଣପ୍ରସାଦ ଉପନ୍ୟାସ ସୃଷ୍ଟିରେ ଜୀବନବୋଧ | ଡ. ଦେବୀପ୍ରସନ୍ନ ପଟ୍ଟନାୟକ |
| ପ୍ରମୋଦ କୁମାର ପଧାନ | ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ କବିତାରେ ସାଂସ୍କୃତିକ ପ୍ରତ୍ୟାବର୍ତ୍ତନର ସ୍ୱର | ଡ. ପ୍ରସନ୍ନ କୁମାର ସ୍ୱାଇଁ |
| ରାଜେନ୍ଦ୍ର କୁମାର ଦାଶ | ଶରଣ ଶ୍ରୀକ୍ଷେତ୍ର ମାରଦା: ଏକ ଅନୁଶୀଳନ | ଡ. ଅଶ୍ୱିନୀ କୁମାର ପଣ୍ଡା |

| | | |
|---|---|---|
| କାହ୍ନୁଚରଣ ସାହୁ | କଥାକାର କୃଷ୍ଣପ୍ରସାଦ ମିଶ୍ରଙ୍କ କଥାସାହିତ୍ୟର ଭାବବସ୍ତୁ ଓ ଶୈଳୀ ବିଚାର | ଡ. ବାଉରୀବନ୍ଧୁ କର |
| ସୁପ୍ରିୟା ଦାଶ | ଉତ୍କଳୀୟ ଜୀବନଚର୍ଯ୍ୟାର ଅନୁପମ ଆଲେଖ୍ୟ : ଦୀନନାଥଙ୍କ କଥା ସାମ୍ରାଜ୍ୟ | ଡ. ଦେବୀପ୍ରସନ୍ନ ପଟ୍ଟନାୟକ |
| ବିଶ୍ୱନାଥ ପାଣିଗ୍ରାହୀ | କବି ସୌଭାଗ୍ୟ ମିଶ୍ରଙ୍କ କବିତାରେ ମିଥ୍ ଓ ପାରମ୍ପରିକ ମୂଲ୍ୟବୋଧ | ଡ. ଦେବୀପ୍ରସନ୍ନ ପଟ୍ଟନାୟକ |
| ଅଳକା ମିଶ୍ର | ଓଡ଼ିଆ ପୁରାଣ ପରମ୍ପରାରେ କୃଷ୍ଣସିଂହଙ୍କ ହରିବଂଶ : ଏକ ମୂଲ୍ୟାୟନ | ଡ. ସମୀର ଭୋଇ |

●

## ଡି.ଲିଟ୍. ଡିଗ୍ରୀପ୍ରାପ୍ତ ଗବେଷକ/ ଗବେଷିକା

| ଗବେଷକ/ ଗବେଷିକାଙ୍କ ନାମ | ଗବେଷଣା ବିଷୟ | ତତ୍ତ୍ୱାବଧାରକ |
|---|---|---|
| | ୧୯୭୯ | |
| ଡ. ବୃନ୍ଦାବନଚନ୍ଦ୍ର ଆଚାର୍ଯ୍ୟ | ଓଡ଼ିଶାରେ କୃଷ୍ଣ ଉପାସନାର ପରମ୍ପରା ଓ ଓଡ଼ିଆ ସାହିତ୍ୟରେ ତାର ପ୍ରଭାବ | ଡ. କାହ୍ନୁଚରଣ ମିଶ୍ର |
| | ୧୯୮୧ | |
| ଡ. ଗଙ୍ଗାଧର ବଳ | ଗୋପାଳକୃଷ୍ଣ ଓ ତାଙ୍କ ରଚନାବଳୀ: ଏକ ଅଧ୍ୟୟନ | ଡ. କାହ୍ନୁଚରଣ ମିଶ୍ର |
| | ୧୯୮୨ | |
| ଡ. ଉମେଶଚନ୍ଦ୍ର ପୁଜାରୀ | ଓଡ଼ିଆ ଗଦ୍ୟ ସାହିତ୍ୟ ବିକାଶର ସାମାଜିକ ପୃଷ୍ଠଭୂମି | ଡ. କାହ୍ନୁଚରଣ ମିଶ୍ର |
| | ୨୦୦୦ | |
| ଡ. ଶାନ୍ତିଲତା ସାହୁ | ଆଧୁନିକ ଓଡ଼ିଆ କବିତାରେ ଜାତୀୟତାବାଦୀ ଚେତନା | ଡ. ଶ୍ରୀନିବାସ ମିଶ୍ର |
| | ୨୦୦୧ | |
| ଡ. ହରିହର ମିଶ୍ର | ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଶ୍ରୀଜଗନ୍ନାଥ ସଂସ୍କୃତିର ସ୍ୱରୂପ | ଡ. ବୃନ୍ଦାବନଚନ୍ଦ୍ର ଆଚାର୍ଯ୍ୟ |

**୨୦୦୩**

| | | |
|---|---|---|
| ଡ. ସୂଚନା ପାଢ଼ୀ | ସ୍ୱାଧୀନୋତ୍ତର ଗଳ୍ପ ସାହିତ୍ୟ : ନାରୀ ସୃଷ୍ଟିରେ ନାରୀ | ଡ. ବାଉରୀବନ୍ଧୁ ସାହୁ |

**୨୦୦୫**

| | | |
|---|---|---|
| ଡ. ଅଶୋକକୁମାର ପଟ୍ଟନାୟକ | ପଞ୍ଚ ମହାପୁରୁଷଙ୍କ ପୁରାଣରେ ଉପକଥା | ଡ. ସୁଦର୍ଶନ ଆଚାର୍ଯ୍ୟ |

**୨୦୦୮**

| | | |
|---|---|---|
| ଡ.ବିଦ୍ୟୁତ୍‌ପ୍ରଭା ସାହୁ | ସାଂପ୍ରତିକ ଓଡ଼ିଆ ସାହିତ୍ୟକୁ ଡ. ରାଧାନାଥ ରଥଙ୍କ ଦାନ | ଡ. ବାଉରୀବନ୍ଧୁ କର |

**୨୦୦୯**

| | | |
|---|---|---|
| ଡ. କାହ୍ନୁଚରଣ ପାଢ଼ୀ | ରାଜଶେଖରଙ୍କ କାବ୍ୟଦୃଷ୍ଟି ଓ ଓଡ଼ିଆ କାବ୍ୟକୌଶଳ | ଡ. ସୁଦର୍ଶନ ଆଚାର୍ଯ୍ୟ |

**୨୦୧୦**

| | | |
|---|---|---|
| ଡ. ବିଭୂତି ଭୂଷଣ ମହାପାତ୍ର | ଓଡ଼ିଶାରେ ପ୍ରାକ୍ ପ୍ରାଥମିକ ଶିକ୍ଷା | ଡ. ସୁଦର୍ଶନ ଆଚାର୍ଯ୍ୟ |
| ଡ. ସଦାନନ୍ଦ ନାୟକ | ଅର୍ଥତତ୍ତ୍ୱ ଓ ଓଡ଼ିଆ ଶବ୍ଦଭଣ୍ଡାର: ଏକ ଅଧ୍ୟୟନ | ଡ. କିଶୋର ଚନ୍ଦ୍ର ମିଶ୍ର |

**୨୦୧୩**

| | | |
|---|---|---|
| ଡ. ସବିତା ପଟ୍ଟନାୟକ | ଗଞ୍ଜାମର ଭାଷା: ଏକ ତାତ୍ତ୍ୱିକ ବିଚାର | ଡ. ସନ୍ତୋଷିନୀ ପଣ୍ଡା |
| ଡ. ବିଭୂତି ଭୂଷଣ ଆଚାର୍ଯ୍ୟ | କନ୍ଧମାଳର ଲୋକସଂସ୍କୃତି ଓ ଲୋକସାହିତ୍ୟ: ଏକ ଅଧ୍ୟୟନ | ଡ. ସଦାନନ୍ଦ ନାୟକ |

**୨୦୧୫**

| | | |
|---|---|---|
| ଡ. ଶରତ କୁମାର ଜେନା | ଅଦିତିର ଦ୍ୟୁତି ବିନ୍ଦୁରୁ ବିସ୍ତୃତି : ପ୍ରତିଭା ରାୟଙ୍କ ଉପନ୍ୟାସରେ ନାୟିକା ପରିକଳ୍ପନା | ଡ. ଦେବୀପ୍ରସନ୍ନ ପଟ୍ଟନାୟକ |

**୨୦୧୬**

| | | |
|---|---|---|
| ଡ.ଦେବୀପ୍ରସନ୍ନ ପଟ୍ଟନାୟକ | ଆଧୁନିକ ଓଡ଼ିଆ ଉପନ୍ୟାସରେ ଲୋକ ଉପାଦାନ | ଡ. ପ୍ରସନ୍ନ କୁମାର ପଟ୍ଟନାୟକ |

୨୦୧୭

| | | |
|---|---|---|
| ଡ. ଦିଲ୍ଲୀପ କୁମାର ସ୍ୱାଇଁ | ପଚାଶ ବର୍ଷର ଓଡ଼ିଆ କବିତା (୧୯୫୧-୨୦୦୦): ଏକ ଆର୍ଥନୀତିକ ଓ ସାମାଜିକ ସମୀକ୍ଷଣ | ଡ. ପ୍ରସନ୍ନ କୁମାର ସ୍ୱାଇଁ |

୨୦୧୮

| | | |
|---|---|---|
| ଡ. ପ୍ରସନ୍ନ କୁମାର ସ୍ୱାଇଁ | ସାହିତ୍ୟ ସାଧକ ଗୋପୀନାଥ ମହାନ୍ତି | ଡ. ପ୍ରସନ୍ନ କୁମାର ପଟ୍ଟନାୟକ |

-୦-

*(ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ, ଓଡ଼ିଆ ବିଭାଗରୁ ସ୍ନାତକୋତ୍ତର, ଏମ୍.ଫିଲ୍., ପିଏଚ୍.ଡି. ଓ ଡି.ଲିଟ୍. ଡିଗ୍ରୀପ୍ରାପ୍ତ ଛାତ୍ରଛାତ୍ରୀ ତଥା ଗବେଷକଙ୍କ ତାଲିକା ପ୍ରସ୍ତୁତି ସହିତ ସେମାନଙ୍କ ଗବେଷଣା ବିଷୟ ଓ ତତ୍ତ୍ୱାବଧାରକଙ୍କ ନାମ ପ୍ରସ୍ତୁତ କଲାବେଳେ ବିଭିନ୍ନ କାରଣରୁ ଏହି ତାଲିକାରେ କିଛି ଭୁଲ ଭ୍ରାନ୍ତି ଓ କେତେକ ତଥ୍ୟ ଅସଂପୂର୍ଣ୍ଣ ରହିଥାଇପାରେ । ଏତଦ୍‌ଭିନ୍ନ କେତେକ ଗବେଷକଙ୍କ ସଂପର୍କରେ ତଥ୍ୟ ମଧ୍ୟ ନଥାଇପାରେ । ସଂପାଦକଙ୍କୁ ଏହା ଦର୍ଶାଇଦେଲେ ପରବର୍ତ୍ତୀ କାଳରେ ସେସବୁକୁ ସଂଶୋଧନ ସହିତ ଏହି ତାଲିକାରେ ସଂଲଗ୍ନ କରାଯାଇପାରିବ ।)*

# ସ୍ନାତକୋତ୍ତର ଓଡ଼ିଆ ବିଭାଗ: ଅତୀତ ଓ ବର୍ତ୍ତମାନ

ପ୍ରଫେସର ସୁଦର୍ଶନ ଆଚାର୍ଯ୍ୟ
ପ୍ରଫେସର ପ୍ରସନ୍ନ କୁମାର ସ୍ୱାଇଁ

ଓଡ଼ିଶାରେ ବିଶ୍ୱବିଦ୍ୟାଳୟ ସ୍ତରରେ ଓଡ଼ିଆ ଭାଷା ଓ ସାହିତ୍ୟ ଅଧ୍ୟାପନା କ୍ଷେତ୍ରରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଏକ ସ୍ୱତନ୍ତ୍ର ସ୍ଥାନ ରହିଛି । ୧୯୬୭ ମସିହା ଜାନୁଆରୀ ୨ ତାରିଖରେ ଏହି ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠାଲାଭ କରିବା ପରେ ପରେ ପ୍ରାଥମିକ ସ୍ତରରେ ଯେଉଁ କେତୋଟି ବିଷୟରେ ସ୍ନାତକୋତ୍ତର ଶିକ୍ଷାଦାନର ବ୍ୟବସ୍ଥା କରାଗଲା, ତା' ମଧ୍ୟରେ ଓଡ଼ିଆ ଥିଲା ଅନ୍ୟତମ । ୧୯୬୮ ମସିହା ଜୁଲାଇ ମାସରେ ପ୍ରଥମେ ଏହି ବିଭାଗ ପାଇଁ ଛାତ୍ରଛାତ୍ରୀ ଗ୍ରହଣ କରାଯାଇଥିଲା । ଖଲ୍ଲିକୋଟ ମହାବିଦ୍ୟାଳୟର ଓଡ଼ିଆ ବିଭାଗରୁ ତତ୍‌କାଳୀନ ବିଭାଗ ମୁଖ୍ୟ ଶ୍ରୀଯୁକ୍ତ ସୀତାରାମ ମହାପାତ୍ର ଏବଂ ଅଧ୍ୟାପକ ଶ୍ରୀଯୁକ୍ତ ନାରାୟଣ ଶତପଥୀ ସାମୟିକ ଭାବେ ଆସି ଏହି ବିଭାଗରେ ପ୍ରଥମେ ଶିକ୍ଷାଦାନ ଆରମ୍ଭ କରିଥିଲେ । ସେତେବେଳକୁ ଓଡ଼ିଶାର ଅନ୍ୟ କୌଣସି ବିଶ୍ୱବିଦ୍ୟାଳୟରେ ଓଡ଼ିଆ ବିଭାଗ ପ୍ରତିଷ୍ଠା ହୋଇନଥାଏ । ସେହିବର୍ଷ ଡ଼ିସେମ୍ବର ମାସରେ ବିଧିବଦ୍ଧ ମନୋନୟନ ପ୍ରକ୍ରିୟା ମାଧ୍ୟମରେ ଡ.କୁଞ୍ଜବିହାରୀ ତ୍ରିପାଠୀ ପ୍ରଥମେ ବିଶ୍ୱବିଦ୍ୟାଳୟ ଓଡ଼ିଆ ପ୍ରଫେସର ଭାବରେ ଏହି ବିଭାଗର ଦାୟିତ୍ୱ ଗ୍ରହଣ କରିଥିଲେ ଏବଂ ୧୯୬୯ ଜାନୁୟାରୀ ପହିଲାରେ ଶ୍ରୀଯୁକ୍ତ ସୁଦର୍ଶନ ଆଚାର୍ଯ୍ୟ ବିଭାଗର ଅଧ୍ୟାପକ ଭାବେ ଯୋଗଦେଇଥିଲେ । ଏହିପରି ଭାବରେ ଜଣେ ପ୍ରଫେସର, ଜଣେ ଅଧ୍ୟାପକ ଏବଂ ତେରଜଣ ଛାତ୍ରଛାତ୍ରୀଙ୍କୁ ନେଇ ଓଡ଼ିଆ ବିଭାଗ କର୍ମମୁଖର ହୋଇ ଉଠିଥିଲା । ଏହି ବିଭାଗର ପ୍ରତିଷ୍ଠା, ପରିଚାଳନା ତଥା ଏହାର ସର୍ବାଙ୍ଗୀନ ଉନ୍ନତି ପାଇଁ ତତ୍‌କାଳୀନ କୁଳପତି ସ୍ୱର୍ଗତଃ ରଘୁନାଥ ପ୍ରସାଦ ପାଢ଼ୀଙ୍କ ପ୍ରେରଣା, ପ୍ରୋତ୍ସାହନ ଓ ଅବଦାନ ଅବିସ୍ମରଣୀୟ । ବିଭାଗ ପକ୍ଷରୁ ଆୟୋଜିତ ପ୍ରଥମ ସାପ୍ତାହିକ ପାଠଚକ୍ର ଉଦ୍‌ଘାଟନ ଅବସରରେ ସେ ଏହାର ଭବିଷ୍ୟତକୁ ନେଇ ଯେଉଁ ସ୍ୱପ୍ନ ଦେଖିଥିଲେ, ତାହାକୁ ସାକାର କରିବା ପାଇଁ ବିଭାଗ ଏଯାବତ୍ ଯତ୍‌ପରୋନାସ୍ତି ଚେଷ୍ଟା କରି ଆସୁଅଛି ।

ସ୍ୱର୍ଗତଃ ପାଢ଼ୀଙ୍କ ଉଦ୍ୟମରେ ବିଭାଗ ପକ୍ଷରୁ ଯେଉଁ ସମ୍ପ୍ରସାରଣ ବକ୍ତୃତାମାଳା ଆରମ୍ଭ ହୋଇଥିଲା, ତା'ର ପ୍ରଥମ ବକ୍ତା ଥିଲେ ଓଡ଼ିଶାର ବରେଣ୍ୟ ସାହିତ୍ୟ ସାଧକ ପଦ୍ମଭୂଷଣ କାଳିନ୍ଦୀଚରଣ ପାଣିଗ୍ରାହୀ । ଉଭୟ କୁଳପତି ଓ କୁଳସଚିବ (ସ୍ୱର୍ଗତଃ ଗୋରାଚାନ୍ଦ ରଥ)ଙ୍କ ପ୍ରୋତ୍ସାହନରେ ଏହି ବିଭାଗ ବିଶ୍ୱବିଦ୍ୟାଳୟରେ ଏକ ସଂଗ୍ରହାଳୟ ପ୍ରତିଷ୍ଠା ପାଇଁ ପ୍ରଥମ ପ୍ରୟାସ କରିଥିଲା । ଏଥିପାଇଁ ଅଧ୍ୟାପକ ସୁଦର୍ଶନ ଆଚାର୍ଯ୍ୟ ବିଭିନ୍ନ ଅଞ୍ଚଳରୁ ବହୁ

ତାଳପତ୍ର ପୋଥି ସଂଗ୍ରହ କରି ଏହାକୁ ସମୃଦ୍ଧ କରିବା ପାଇଁ ଚେଷ୍ଟା କରିଥିଲେ । ପରବର୍ତ୍ତୀ କାଳରେ ଡ. ଅଶ୍ୱିନୀ କୁମାର ପଣ୍ଡା, ଡ. ଦେବୀପ୍ରସନ୍ନ ପଟ୍ଟନାୟକ ଓ ଡ. ରାଧାଗୋବିନ୍ଦ ପାଢ଼ୀ ଏଥିରେ ସାମିଲ ହୋଇଥିଲେ । ବର୍ତ୍ତମାନ ଏହା ଏକ ସ୍ୱୟଂସମ୍ପୂର୍ଣ୍ଣ ସଂଗ୍ରହାଳୟରେ ପରିଣତ ହୋଇଥିବା ସୁଖର କଥା । ସେହିପରି ଓଡ଼ିଆ ବିଭାଗ ପକ୍ଷରୁ ଭାଷାତତ୍ତ୍ୱ ବିଷୟରେ ଡ଼ିପ୍ଲୋମା ପାଠ୍ୟକ୍ରମ ଖୋଲିବା ପାଇଁ ଯେଉଁ ଉଦ୍ୟମ ଆରମ୍ଭ ହୋଇଥିଲା, ତା'ର ଅମୃତମୟ ପରିଣତି ସ୍ୱରୂପ ରୂପଲାଭ କରିଛି ଆଜିର ସ୍ୱୟଂସମ୍ପୂର୍ଣ୍ଣ ଭାଷାତତ୍ତ୍ୱ ବିଭାଗ । ଓଡ଼ିଆ ବିଭାଗ ହିଁ ପ୍ରଥମ ଥର ପାଇଁ ବିଶ୍ୱବିଦ୍ୟାଳୟରେ ପ୍ରଥମ ଜାତୀୟ ପାଠଚକ୍ରର ଆୟୋଜନ କରିଥିଲା । ଭଞ୍ଜ ସାହିତ୍ୟ ସମ୍ପର୍କୀୟ ଏହି ପାଠଚକ୍ରର ନିର୍ଦ୍ଦେଶକ ଥିଲେ ତତ୍କାଳୀନ ବିଭାଗ ମୁଖ୍ୟ ଡ.କୁଞ୍ଜବିହାରୀ ତ୍ରିପାଠୀ ଏବଂ ସମ୍ପାଦକ ଅଧ୍ୟାପକ ସୁଦର୍ଶନ ଆଚାର୍ଯ୍ୟ । ଏହି ଅବସରରେ ଡ.ବଂଶୀଧର ମହାନ୍ତି, ଶ୍ରୀଯୁକ୍ତ ଗୋବିନ୍ଦଚନ୍ଦ୍ର ଉଦ୍‌ଗାତା ଏବଂ ଶ୍ରୀଯୁକ୍ତ ସୁଦର୍ଶନ ଆଚାର୍ଯ୍ୟ ଭଞ୍ଜ ସାହିତ୍ୟ ସମ୍ପର୍କରେ ତିନୋଟି ଉପାଦେୟ ପ୍ରବନ୍ଧ ପାଠ କରିଥିଲେ । ଅଧ୍ୟାପକ ଗୌରୀକୁମାର ବ୍ରହ୍ମା ଏ ସମ୍ପର୍କରେ ଏକ ତାତ୍ତ୍ୱିକ ତଥା ମନୋଜ୍ଞ ଭାଷଣ ପ୍ରଦାନ କରିଥିଲେ । ପଠିତ ପ୍ରବନ୍ଧଗୁଡ଼ିକ ପରବର୍ତ୍ତୀ ସମୟରେ 'ଉପେନ୍ଦ୍ର ଭଞ୍ଜ- ତିନୋଟି ଅଭିଭାଷଣ' ଶିରୋନାମାରେ ସଙ୍କଳିତ ହୋଇ ବିଶ୍ୱବିଦ୍ୟାଳୟ ଆନୁକୂଲ୍ୟରେ ପ୍ରକାଶ ଲାଭ କରିଛି । ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଏହା ହେଉଛି ପ୍ରଥମ ପ୍ରକାଶିତ ଗ୍ରନ୍ଥ । ପୁନଶ୍ଚ ଏହାର ପ୍ରତିଷ୍ଠା ବର୍ଷ ହିଁ ବିଭାଗର ଛାତ୍ରଛାତ୍ରୀମାନଙ୍କ ଉଦ୍ୟମରେ ଏକ ହାତଲେଖା ପତ୍ରିକା 'ମନ୍ମୟୀ' ପ୍ରକାଶ ପାଇଥିଲା ।

ପ୍ରାଥମିକ ସ୍ତରରେ ସୀମିତ ସଂଖ୍ୟକ ଅଧ୍ୟାପକ ଏବଂ ଛାତ୍ରଛାତ୍ରୀଙ୍କୁ ନେଇ ବିଭାଗରେ ଯେଉଁସବୁ କାର୍ଯ୍ୟକ୍ରମ ଆରମ୍ଭ କରାଯାଇଥିଲା, ତାହା ସମୟର ଧାରାରେ ବିକଶିତ ହୋଇଅଛି । ଛାତ୍ର ସଂଖ୍ୟା ୧୬ରୁ ୫୦କୁ ବୃଦ୍ଧି ଲାଭ କରିଛି; ଅଧ୍ୟାପକଙ୍କ ସଂଖ୍ୟା ଏକଦା ଦୁଇରୁ ବୃଦ୍ଧି ପାଇ ନଅ ହୋଇଥିଲା, ଯଦିଓ ବର୍ତ୍ତମାନ କାର୍ଯ୍ୟ କରୁଛନ୍ତି ମାତ୍ର ପାଞ୍ଚ ଜଣ । ସଂପ୍ରତି କାର୍ଯ୍ୟ କରୁଥିବା ଶିକ୍ଷକମାନେ ହେଉଛନ୍ତି ଡ. ଦେବୀପ୍ରସନ୍ନ ପଟ୍ଟନାୟକ, ଡ.ପ୍ରସନ୍ନ କୁମାର ସ୍ୱାଇଁ, ଡ. ସଦାନନ୍ଦ ନାୟକ, ଡ. ଦେବୀପ୍ରସାଦ ଶତପଥୀ ଓ ଡ. ସମୀର ଭୋଇ । ବିଭାଗରେ ଏମ୍.ଫିଲ୍.ପାଠ୍ୟକ୍ରମ ୧୯୭୭ ରୁ ଆରମ୍ଭ କରାଯାଇଛି ଏବଂ ଏଥିରେ ବିଗତ ବର୍ଷମାନଙ୍କରେ ସର୍ବାଧିକ ଷୋହଳ ଜଣ ଛାତ୍ରଛାତ୍ରୀଙ୍କର ଅଧ୍ୟୟନ ବ୍ୟବସ୍ଥା କରାଯାଇଥିଲା । ସଂପ୍ରତି ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗର ନୂତନ ନିୟମ ଅନୁଯାୟୀ ଏହାର ସଂଖ୍ୟା ଶିକ୍ଷକମାନଙ୍କର ସଂଖ୍ୟା ଆଧାରରେ ସ୍ଥିର କରାଯାଉଛି ।

ସୌଭାଗ୍ୟବଶତଃ ଯେଉଁ କୃତବିଦ୍ୟ ଅଧ୍ୟାପକମାନେ ବିଭିନ୍ନ ସମୟରେ ଏହି ବିଭାଗର ମୁଖ୍ୟ ଭାବେ ଅବସ୍ଥାପିତ ହୋଇଛନ୍ତି, ସମସ୍ତେ ହେଉଛନ୍ତି ଓଡ଼ିଆ ସାହିତ୍ୟର ଜଣେ ଜଣେ ସ୍ୱନାମଧନ୍ୟ ସମାଲୋଚକ ଓ ଗବେଷକ । ସେମାନେ ହେଉଛନ୍ତି :-

ଡ.କୁଞ୍ଜବିହାରୀ ତ୍ରିପାଠୀ - ପ୍ରଫେସର, ୧୯୬୮ ଠାରୁ ୧୯୭୩

ଡ.ବେଣୀମାଧବ ପାଢ଼ୀ - ପ୍ରାଧ୍ୟାପକ, ୧୯୭୩

ଡ.କାହ୍ନୁଚରଣ ମିଶ୍ର - ପ୍ରଫେସର, ୧୯୭୩ ଠାରୁ ୧୯୮୨

ଡ.ଗଗନେନ୍ଦ୍ରନାଥ ଦାଶ - ପ୍ରାଧ୍ୟାପକ, ୧୯୮୨

ଡ.ଶ୍ରୀନିବାସ ମିଶ୍ର - ପ୍ରଫେସର, ୧୯୮୨ ଠାରୁ ୧୯୮୭

ଡ.ସୁଦର୍ଶନ ଆଚାର୍ଯ୍ୟ - ପ୍ରଫେସର, ୧୯୮୭ ଠାରୁ ୧୯୯୦

ଡ.ଦାଶରଥି ଦାସ - ପ୍ରଫେସର, ୧୯୯୦ ଠାରୁ ୧୯୯୨

ଡ. ବାଉରୀବନ୍ଧୁ କର- ପ୍ରାଧ୍ୟାପକ, ୧୯୯୨ ଠାରୁ ୧୯୯୪

ଡ. ଅଶ୍ୱିନୀ କୁମାର ପଣ୍ଡା- ପ୍ରାଧ୍ୟାପକ, ୧୯୯୪ ଠାରୁ ୧୯୯୬

ଡ. ଦେବୀପ୍ରସନ୍ନ ପଟ୍ଟନାୟକ- ପ୍ରାଧ୍ୟାପକ, ୧୯୯୬ ଠାରୁ ୧୯୯୮

ଡ. ପୂର୍ଣ୍ଣଚନ୍ଦ୍ର ମିଶ୍ର- ପ୍ରାଧ୍ୟାପକ, ୧୯୯୮ ଠାରୁ ୨୦୦୦

ଡ. ବାଉରୀବନ୍ଧୁ କର- ପ୍ରଫେସର, ୨୦୦୦ ଠାରୁ ୨୦୦୨

ଡ. ଅଶ୍ୱିନୀ କୁମାର ପଣ୍ଡା- ପ୍ରଫେସର, ୨୦୦୨ ଠାରୁ ୨୦୦୪

ଡ. ଦେବୀପ୍ରସନ୍ନ ପଟ୍ଟନାୟକ- ପ୍ରଫେସର, ୨୦୦୪ ଠାରୁ ୨୦୦୫

ଡ. ବାଉରୀବନ୍ଧୁ କର- ପ୍ରଫେସର, ୨୦୦୫ ଠାରୁ ୨୦୦୯

ଡ. ପ୍ରସନ୍ନ କୁମାର ସ୍ୱାଇଁ- ପ୍ରାଧ୍ୟାପକ, ୨୦୦୯ ଠାରୁ ୨୦୧୧

ଡ. ସଦାନନ୍ଦ ନାୟକ- ପ୍ରାଧ୍ୟାପକ, ୨୦୧୧ ଠାରୁ ୨୦୧୩

ଡ. ଅଶ୍ୱିନୀ କୁମାର ପଣ୍ଡା- ପ୍ରଫେସର, ୨୦୧୩ ଠାରୁ ୨୦୧୫

ଡ. ଦେବୀପ୍ରସନ୍ନ ପଟ୍ଟନାୟକ- ପ୍ରଫେସର, ୨୦୧୫ ଠାରୁ ୨୦୧୭

ଡ. ପ୍ରସନ୍ନ କୁମାର ସ୍ୱାଇଁ - ପ୍ରଫେସର, ୨୦୧୭ ଠାରୁ ୨୦୧୯

ଏହି ଶିକ୍ଷକମାନଙ୍କ ବ୍ୟତୀତ ଆମ ବିଭାଗରେ ଡ. ନାରାୟଣ ଶତପଥୀ, ଡ. ସୀତାରାମ ମହାପାତ୍ର ଓ ଡ. କୃଷ୍ଣଚନ୍ଦ୍ର ପ୍ରଧାନ ଦୀର୍ଘବର୍ଷ ଧରି ପ୍ରାଧ୍ୟାପକ ଭାବରେ ଶିକ୍ଷାଦାନ କରିଛନ୍ତି । ବିଭାଗ ମୁଖ୍ୟ ଭୂମିକା ନିର୍ବାହ କରିଥିବା ଶିକ୍ଷକଙ୍କ ସହିତ ଡ. ସୀତାରାମ ମହାପାତ୍ର, ଡ. କୃଷ୍ଣଚନ୍ଦ୍ର ପ୍ରଧାନ, ଡ. ଦେବୀପ୍ରସାଦ ଶତପଥୀ ଓ ଡ. ସମୀର ଭୋଇ ଆନ୍ତରିକତାର ସହିତ ବିଭାଗର ସର୍ବାଙ୍ଗୀନ ଉନ୍ନତି ପାଇଁ ଚେଷ୍ଟା କରିଛନ୍ତି । ବିଭାଗର ଶିକ୍ଷକମାନଙ୍କ ଉଦ୍ୟମରେ ବିଭିନ୍ନ ସମୟରେ ଓଡ଼ିଆ ବିଭାଗ ବହୁ ଜାତୀୟ ଓ ରାଜ୍ୟସ୍ତରୀୟ ଆଲୋଚନାଚକ୍ର ଆୟୋଜନ କରିପାରିଛି । ସେଗୁଡ଼ିକମଧ୍ୟରୁ ନିମ୍ନ କେତୋଟି ଆଲୋଚନାଚକ୍ର ଉଲ୍ଲେଖଯୋଗ୍ୟ ।

୧. ଉପେନ୍ଦ୍ର ଭଞ୍ଜ ଆଲୋଚନାଚକ୍ର; ନିର୍ଦ୍ଦେଶକ : ଡ.କୁଞ୍ଜବିହାରୀ ତ୍ରିପାଠୀ
୨. କବିସୂର୍ଯ୍ୟ ବଳଦେବ ରଥ ଆଲୋଚନାଚକ୍ର; ନିର୍ଦ୍ଦେଶକ: ଡ.କାହ୍ନୁଚରଣ ମିଶ୍ର
୩. ଗୋପାଳକୃଷ୍ଣ ଆଲୋଚନାଚକ୍ର; ନିର୍ଦ୍ଦେଶକ : ଡ.କାହ୍ନୁଚରଣ ମିଶ୍ର
୪. ନିଖିଳ ଭାରତ ଓଡ଼ିଆ ଅଧ୍ୟାପକ ସମ୍ମେଳନ, ତୃତୀୟ ଅଧିବେଶନ, ୧୧ ମଇ, ୧୯୮୧; ନିର୍ଦ୍ଦେଶକ ପ୍ରଫେସର କାହ୍ନୁଚରଣ ମିଶ୍ର
୫. 'ଭାରତୀୟ ସ୍ୱାଧୀନତା ସଂଗ୍ରାମକୁ ଓଡ଼ିଆ ସାହିତ୍ୟର ଦାନ'ଶୀର୍ଷକ ଜାତୀୟ ଆଲୋଚନାଚକ୍ର; ନିର୍ଦ୍ଦେଶକ ପ୍ରଫେସର ଶ୍ରୀନିବାସ ମିଶ୍ର
୬. 'ଭଞ୍ଜ ସାହିତ୍ୟ ସମାଲୋଚନା: ସୀମା ଓ ସମ୍ଭାବନା'ଶୀର୍ଷକ ଏକଦିବସୀୟ ଜାତୀୟ ଆଲୋଚନାଚକ୍ର; ନିର୍ଦ୍ଦେଶକ ପ୍ରଫେସର ସୁଦର୍ଶନ ଆଚାର୍ଯ୍ୟ
୭. 'ସାହିତ୍ୟ ସାଧକ ରାମଚନ୍ଦ୍ର ଆଚାର୍ଯ୍ୟ' ଶୀର୍ଷକ ଜାତୀୟ ଆଲୋଚନାଚକ୍ର; ନିର୍ଦ୍ଦେଶକ: ପ୍ରଫେସର ସୁଦର୍ଶନ ଆଚାର୍ଯ୍ୟ
୮ 'ଓଡ଼ିଆ ଗବେଷଣାର ଭବିଷ୍ୟତ' ଶୀର୍ଷକ ଏକଦିବସୀୟ ଜାତୀୟ ଆଲୋଚନାଚକ୍ର, ୨୩ ଡିସେମ୍ବର, ୧୯୯୧; ନିର୍ଦ୍ଦେଶକ: ପ୍ରଫେସର ଦାଶରଥି ଦାସ
୯. 'ବ୍ୟାସକବି ଫକୀରମୋହନ ସେନାପତିଙ୍କ ୧୫୦ତମ ଜୟନ୍ତୀ ସମାରୋହ', ୩୧ ଜାନୁଆରୀ, ୧୯୯୩, ପ୍ରମୁଖ ବକ୍ତା: ଶ୍ରୀ ରବୀନ୍ଦ୍ରମୋହନ ସେନାପତି, ପ୍ରଫେସର କୃଷ୍ଣପ୍ରସାଦ ମିଶ୍ର, ଶ୍ରୀମତୀ ମନୋରମା ମହାପାତ୍ର ଇତ୍ୟାଦି; ନିର୍ଦ୍ଦେଶକ: ଡ. ବାଉରୀବନ୍ଧୁ କର
୧୦. 'ରେବତୀ' ଗଳ୍ପର ଜନ୍ମ ଶତବାର୍ଷିକୀ ଅବସରରେ 'ରେବତୀ ୧୮୯୮-୧୯୯୮' ଶୀର୍ଷକ ଏକଦିବସୀୟ ରାଜ୍ୟସ୍ତରୀୟ ଆଲୋଚନାଚକ୍ର, ୨୫ ନଭେମ୍ବର, ୧୯୯୮; ନିର୍ଦ୍ଦେଶକ: ଡ. ଦେବୀପ୍ରସନ୍ନ ପଟ୍ଟନାୟକ
୧୧. 'ଗଙ୍ଗାଧରଙ୍କ କାବ୍ୟ କବିତାର ପ୍ରାସଙ୍ଗିକତା' ଶୀର୍ଷକ ଦୁଇଦିବସୀୟ ଜାତୀୟ ଆଲୋଚନାଚକ୍ର, ୭-୮ ଜାନୁଆରୀ, ୧୯୯୯; ସହାୟତା: ସାହିତ୍ୟ ଅକାଦେମି, ନୂଆଦିଲ୍ଲୀ; ନିର୍ଦ୍ଦେଶକ: ପ୍ରଫେସର ବାଉରୀବନ୍ଧୁ କର
୧୨. 'ବିଂଶ ଶତକ ଓଡ଼ିଆ ସାହିତ୍ୟ'ଶୀର୍ଷକ ତ୍ରିଦିବସୀୟ ଜାତୀୟ ଆଲୋଚନାଚକ୍ର, ୧-୩ ଡିସେମ୍ବର, ୨୦୦୧; ସହାୟତା: ସାହିତ୍ୟ ଅକାଦେମି, ନୂଆଦିଲ୍ଲୀ; ନିର୍ଦ୍ଦେଶକ: ପ୍ରଫେସର ବାଉରୀବନ୍ଧୁ କର
୧୩. 'ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ ସାହିତ୍ୟ' ଶୀର୍ଷକ ଦୁଇଦିବସୀୟ ଜାତୀୟ ଆଲୋଚନାଚକ୍ର, ୧୩-୧୪ ଡିସେମ୍ବର, ୨୦୦୮ ସହାୟତା: ସାହିତ୍ୟ ଅକାଦେମି, ନୂଆଦିଲ୍ଲୀ; ନିର୍ଦ୍ଦେଶକ: ପ୍ରଫେସର ବାଉରୀବନ୍ଧୁ କର

୧୪. 'ଉତ୍ତରିତ ମାନବ' (Beyond Man), ବକ୍ତୃତା ପ୍ରଦାନ: ପ୍ରଫେସର ଚନ୍ଦ୍ରଶେଖର ରଥ, ୧ ନଭେମ୍ବର, ୨୦୧୦, ସହାୟତା: ସାହିତ୍ୟ ଅକାଦେମି, ନୂଆଦିଲ୍ଲୀ; ନିର୍ଦ୍ଦେଶକ: ପ୍ରଫେସର ବାଉରୀବନ୍ଧୁ କର

୧୫. ପ୍ରଫେସର କୁଞ୍ଜବିହାରୀ ତ୍ରିପାଠୀ ଜନ୍ମ ଶତବାର୍ଷିକୀ ଏକଦିବସୀୟ ସଂପାନ, ବକ୍ତୃତା ପ୍ରଦାନ: ଭାଷାବିତ୍ ପ୍ରଫେସର ପ୍ରଫୁଲ୍ଲ କୁମାର ତ୍ରିପାଠୀ, ୯ ନଭେମ୍ବର, ୨୦୧୦; ନିର୍ଦ୍ଦେଶକ: ପ୍ରଫେସର ବାଉରୀବନ୍ଧୁ କର

୧୬. ବିଭାଗର ସ୍ୱତନ୍ତ୍ର ଅନୁଦାନ ପ୍ରକଳ୍ପ ପକ୍ଷରୁ ଆୟୋଜିତ 'ଓଡ଼ିଆ ଲୋକସାହିତ୍ୟ: ସୀମା ଓ ସମ୍ଭାବନା' ଶୀର୍ଷକ ଦୁଇଦିବସୀୟ ଜାତୀୟ ଆଲୋଚନାଚକ୍ର, ୧୧-୧୨ ନଭେମ୍ବର, ୨୦୧୧; ନିର୍ଦ୍ଦେଶକ: ପ୍ରଫେସର ଅଶ୍ୱିନୀ କୁମାର ପଣ୍ଡା

୧୭. ବିଭାଗର ସ୍ୱତନ୍ତ୍ର ଅନୁଦାନ ପ୍ରକଳ୍ପ ପକ୍ଷରୁ ଆୟୋଜିତ 'ଦକ୍ଷିଣ ଓଡ଼ିଶାର ପ୍ରଦର୍ଶନଶୀଳ କଳା' ଶୀର୍ଷକ ତ୍ରିଦିବସୀୟ ଜାତୀୟ ଆଲୋଚନାଚକ୍ର, ୨୩-୨୫ ମାର୍ଚ୍ଚ, ୨୦୧୨; ନିର୍ଦ୍ଦେଶକ: ପ୍ରଫେସର ଅଶ୍ୱିନୀ କୁମାର ପଣ୍ଡା

୧୮. 'ଉପେନ୍ଦ୍ରଭଞ୍ଜ ଭାଷା ଭାବନା' ଶୀର୍ଷକ ଏକଦିବସୀୟ ଜାତୀୟ ଆଲୋଚନାଚକ୍ର, ୧୭ ଏପ୍ରିଲ, ୨୦୧୩; ନିର୍ଦ୍ଦେଶକ: ଡ. ସଦାନନ୍ଦ ନାୟକ

୧୯. ପଦ୍ମଶ୍ରୀ ଭଗବାନ ସାହୁ ସ୍ମାରକୀ ବକ୍ତୃତାମାଳା;
ବକ୍ତୃତା ପ୍ରଦାନ: ପ୍ରଫେସର ଖଗେଶ୍ୱର ମହାପାତ୍ର, ୨୧ ମାର୍ଚ୍ଚ, ୨୦୧୫;
ନିର୍ଦ୍ଦେଶକ: ପ୍ରଫେସର ଅଶ୍ୱିନୀ କୁମାର ପଣ୍ଡା

୨୦. ବିଭାଗର ସ୍ୱତନ୍ତ୍ର ଅନୁଦାନ ପ୍ରକଳ୍ପ ଆନୁକୂଲ୍ୟରେ 'ଦକ୍ଷିଣ ଓଡ଼ିଶାର ଲୋକସାହିତ୍ୟ ଓ ଆଦିବାସୀ ସଂସ୍କୃତି' ଶୀର୍ଷକ ଦୁଇଦିବସୀୟ ଜାତୀୟ ଆଲୋଚନାଚକ୍ର, ୨୨-୨୩ ମାର୍ଚ୍ଚ, ୨୦୧୫; ନିର୍ଦ୍ଦେଶକ: ପ୍ରଫେସର ଅଶ୍ୱିନୀ କୁମାର ପଣ୍ଡା

୨୧. ପରିଦର୍ଶୀ ବକ୍ତୃତାମାଳା, ବକ୍ତୃତା ପ୍ରଦାନ: ପ୍ରଫେସର ଲିଜା ଜୁଫୁଲ୍, ଟୁମ୍‌ବିନ୍‌ଜେନ୍ ବିଶ୍ୱବିଦ୍ୟାଳୟ, ଜର୍ମାନୀ, ୭ ଫେବୃୟାରୀ, ୨୦୧୫,
ନିର୍ଦ୍ଦେଶକ: ପ୍ରଫେସର ପ୍ରସନ୍ନ କୁମାର ସ୍ୱାଇଁ

୨୨. ଡ. ବେଣୀମାଧବ ପାଢ଼ୀ ସ୍ମାରକୀ ବକ୍ତୃତାମାଳା, ବକ୍ତୃତା ପ୍ରଦାନ: ପ୍ରଫେସର ରୋଲାଣ୍ଡ ହାର୍ଡେନ୍‌ବର୍ଗ ଓ ପ୍ରଫେସର ଆନ୍ଦ୍ରେୟ ହାର୍ଡେନ୍‌ବର୍ଗ, ଜର୍ମାନୀ, ୦୭ ମାର୍ଚ୍ଚ, ୨୦୧୫, ନିର୍ଦ୍ଦେଶକ: ପ୍ରଫେସର ଅଶ୍ୱିନୀ କୁମାର ପଣ୍ଡା

୨୩. ଓଡ଼ିଶା ସାହିତ୍ୟ ଏକାଡ଼େମୀ ଆନୁକୂଲ୍ୟରେ 'ଦକ୍ଷିଣ ଓଡ଼ିଶାର ଲୋକସଂସ୍କୃତି' ଶୀର୍ଷକ ଏକଦିବସୀୟ ଜାତୀୟ ଆଲୋଚନାଚକ୍ର, ୧ ଅକ୍ଟୋବର, ୨୦୧୫; ନିର୍ଦ୍ଦେଶକ: ପ୍ରଫେସର ଦେବୀପ୍ରସନ୍ନ ପଟ୍ଟନାୟକ

୨୪. 'ଓଡ଼ିଶାର ଲୋକସଂସ୍କୃତି' ଶୀର୍ଷକ ଦୁଇଦିବସୀୟ ଜାତୀୟ ଆଲୋଚନାଚକ୍ର, ୧୩-୧୪ ନଭେମ୍ବର, ୨୦୧୫, ସହାୟତା: ସାହିତ୍ୟ ଅକାଦେମି, ନୂଆଦିଲ୍ଲୀ; ନିର୍ଦ୍ଦେଶକ: ପ୍ରଫେସର ଦେବୀପ୍ରସନ୍ନ ପଟ୍ଟନାୟକ

୨୫. ବିଶ୍ୱବିଦ୍ୟାଳୟ ସୁବର୍ଣ୍ଣ ଜୟନ୍ତୀ ବକ୍ତୃତାମାଳା, ବିଷୟ: 'Literature, Science & Human Values' (ସାହିତ୍ୟ, ବିଜ୍ଞାନ ଓ ମାନବିକ ମୂଲ୍ୟବୋଧ), ପଦ୍ମଶ୍ରୀ ଡ. ପ୍ରତିଭା ରାୟ, ୧୬ ଅକ୍ଟୋବର, ୨୦୧୬;
ନିର୍ଦ୍ଦେଶକ: ପ୍ରଫେସର ରାଜେନ୍ଦ୍ର ପ୍ରସାଦ ଦାସ, କୁଳପତି

୨୬. ବିଭାଗର ସ୍ୱତନ୍ତ୍ର ଅନୁଦାନ ପ୍ରକଳ୍ପ ପକ୍ଷରୁ ଆୟୋଜିତ 'ଦକ୍ଷିଣ ଓଡ଼ିଶାର ସାଂସ୍କୃତିକ ବିଭବ' ଶୀର୍ଷକ ଏକଦିବସୀୟ ଜାତୀୟ କର୍ମଶାଳା, ୨୩ ମାର୍ଚ୍ଚ, ୨୦୧୭; ନିର୍ଦ୍ଦେଶକ: ପ୍ରଫେସର ଦେବୀପ୍ରସନ୍ନ ପଟ୍ଟନାୟକ

୨୭. 'ଓଡ଼ିଆ ସାହିତ୍ୟରେ ଗାନ୍ଧିବାଦୀ ଚେତନା' ଶୀର୍ଷକ ଦୁଇଦିବସୀୟ ଆଲୋଚନାଚକ୍ର, ୨୪-୨୫ ମାର୍ଚ୍ଚ, ୨୦୧୭; ନିର୍ଦ୍ଦେଶକ: ପ୍ରଫେସର ଦେବୀପ୍ରସନ୍ନ ପଟ୍ଟନାୟକ

୨୮. 'ଓଡ଼ିଆ ସାହିତ୍ୟର ବିକାଶରେ ଦକ୍ଷିଣ ଓଡ଼ିଶାର ପତ୍ରପତ୍ରିକା' ଶୀର୍ଷକ ଦୁଇଦିବସୀୟ ଜାତୀୟ ଆଲୋଚନାଚକ୍ର, ୩୧ ଅଗଷ୍ଟ-୧ ସେପ୍ଟେମ୍ବର, ୨୦୧୭;
ନିର୍ଦ୍ଦେଶକ: ପ୍ରଫେସର ପ୍ରସନ୍ନ କୁମାର ସ୍ୱାଇଁ

୨୯. ପୁରାତନ ଛାତ୍ର ସଂଘ ଆନୁକୂଲ୍ୟରେ ଏକଦିବସୀୟ ରାଜ୍ୟସ୍ତରୀୟ ଆଲୋଚନାଚକ୍ର, ୨ ସେପ୍ଟେମ୍ବର, ୨୦୧୭, ବିଷୟ: 'ଓଡ଼ିଆ ଭାଷାର ଭବିଷ୍ୟତ'; ବକ୍ତୃତା ପ୍ରଦାନ: ପ୍ରଫେସର ସୁଦର୍ଶନ ଆଚାର୍ଯ୍ୟ; ନିର୍ଦ୍ଦେଶକ: ପ୍ରଫେସର ପ୍ରସନ୍ନ କୁମାର ସ୍ୱାଇଁ

୩୦. ପ୍ରଫେସର କୁଞ୍ଜବିହାରୀ ତ୍ରିପାଠୀ ସ୍ମାରକୀ ବକ୍ତୃତାମାଳା, ୧୨ ସେପ୍ଟେମ୍ବର, ୨୦୧୭, ବିଷୟ: ତୁଳନାତ୍ମକ ଭାରତୀୟ ସାହିତ୍ୟ, ବକ୍ତୃତା ପ୍ରଦାନ: ପ୍ରଫେସର ପ୍ରକାଶଚନ୍ଦ୍ର ପଟ୍ଟନାୟକ; ନିର୍ଦ୍ଦେଶକ: ପ୍ରଫେସର ପ୍ରସନ୍ନ କୁମାର ସ୍ୱାଇଁ

୩୧. ଡ. ବେଣୀମାଧବ ପାଢ଼ୀ ସ୍ମାରକୀ ବକ୍ତୃତାମାଳା, ୨୯ ନଭେମ୍ବର, ୨୦୧୭; ବିଷୟ: ଓଡ଼ିଶା ବାହାରେ ଓଡ଼ିଆ ସାହିତ୍ୟ ଓ ସଂସ୍କୃତି; ବକ୍ତୃତା ପ୍ରଦାନ: ଡ. କୃଷ୍ଣଚନ୍ଦ୍ର ଭୂୟାଁ, କଲିକତା; ନିର୍ଦ୍ଦେଶକ: ପ୍ରଫେସର ପ୍ରସନ୍ନ କୁମାର ସ୍ୱାଇଁ

୩୨. ଜାତୀୟ ପାଣ୍ଡୁଲିପି ମିଶନ, ନୂଆଦିଲ୍ଲୀ ଆନୁକୂଲ୍ୟରେ 'ତତ୍ତ୍ୱବୋଧ ବକ୍ତୃତାମାଳା', ୮ ମାର୍ଚ୍ଚ, ୨୦୧୮, ବକ୍ତୃତା ପ୍ରଦାନ: ପ୍ରଫେସର ସୁରେନ୍ଦ୍ରନାଥ ଦାସ;
ନିର୍ଦ୍ଦେଶକ: ପ୍ରଫେସର ପ୍ରସନ୍ନ କୁମାର ସ୍ୱାଇଁ

୩୩. ଆନ୍ତର୍ଜାତୀୟ କବିତା ଦିବସ ଅବସରରେ ରାଜ୍ୟସ୍ତରୀୟ ଆଲୋଚନାଚକ୍ର, ୨୨ ମାର୍ଚ୍ଚ, ୨୦୧୮; ନିର୍ଦ୍ଦେଶକ: ପ୍ରଫେସର ପ୍ରସନ୍ନ କୁମାର ସ୍ୱାଇଁ

୩୪. 'ଏକବିଂଶ ଶତକ ଓଡ଼ିଆ ସାହିତ୍ୟ' ଶୀର୍ଷକ ଏକଦିବସୀୟ ଜାତୀୟ ଆଲୋଚନାଚକ୍ର, ୨୭ ନଭେମ୍ବର, ୨୦୧୮;
ନିର୍ଦ୍ଦେଶକ: ପ୍ରଫେସର ପ୍ରସନ୍ନ କୁମାର ସ୍ୱାଇଁ

୩୫. ବିଭାଗର ସ୍ୱତନ୍ତ୍ର ଅନୁଦାନ ପ୍ରକଳ୍ପ ପକ୍ଷରୁ ଆୟୋଜିତ 'ଦକ୍ଷିଣ ଓଡ଼ିଶାର ଲୋକପରମ୍ପରା ଓ ଆଦିବାସୀ ସଂସ୍କୃତି' ଶୀର୍ଷକ ଦୁଇଦିବସୀୟ ଜାତୀୟ ଆଲୋଚନାଚକ୍ର, ୨୨-୨୩ ଫେବୃୟାରୀ, ୨୦୧୯;
ନିର୍ଦ୍ଦେଶକ: ପ୍ରଫେସର ଦେବୀପ୍ରସନ୍ନ ପଟ୍ଟନାୟକ

୩୬. '୧୯୮୦ ପରବର୍ତ୍ତୀ ଓଡ଼ିଆ ସାହିତ୍ୟ' ଶୀର୍ଷକ ଦୁଇଦିବସୀୟ ଜାତୀୟ ଆଲୋଚନାଚକ୍ର, ୨୭-୨୮ ମାର୍ଚ୍ଚ, ୨୦୧୯; ସହାୟତା: ବିଶ୍ୱବ୍ୟାଙ୍କ ପକ୍ଷରୁ ଓଡ଼ିଶା ସରକାର; ନିର୍ଦ୍ଦେଶକ: ପ୍ରଫେସର ପ୍ରସନ୍ନ କୁମାର ସ୍ୱାଇଁ

ଏସବୁ ବ୍ୟତୀତ ସାପ୍ତାହିକ ପାଠଚକ୍ରର ଆୟୋଜନ ଓଡ଼ିଆ ବିଭାଗର ଏକ ଉଲ୍ଲେଖଯୋଗ୍ୟ ପଦକ୍ଷେପ । ଏହା ୧୯୬୮ ମସିହା ଅଗଷ୍ଟ ମାସରୁ ନିୟମିତ ଭାବେ ଏହା ସୁସମ୍ପନ୍ନ ହୋଇ ଆସୁଅଛି । ପ୍ରାଧ୍ୟାପକ ଡ.ସୀତାରାମ ମହାପାତ୍ରଙ୍କ ପୌରୋହିତ୍ୟରେ ଅନୁଷ୍ଠିତ ବିଭାଗର ପ୍ରଥମ ପାଠଚକ୍ରଟିକୁ ଉଦ୍‌ଘାଟନ କରିଥିଲେ ତତ୍‌କାଳୀନ ବରେଣ୍ୟ କୁଳପତି ଡ.ରଘୁନାଥ ପ୍ରସାଦ ପାଢ଼ୀ ଏବଂ କୁଳସଚିବ ଶ୍ରୀଯୁକ୍ତ ଗୋରାଚାନ୍ଦ ରଥ, ପ୍ରବନ୍ଧ ପାଠ କରିଥିଲେ - କୁମାରୀ ମାଳବିକା ରାୟ (ଆଜିର ସୁନାମଧନ୍ୟା ଅଧ୍ୟାପିକା ଡ.ମାଳବିକା ରାୟ) । ପରବର୍ତ୍ତୀ ସମୟରେ ଛାତ୍ରଛାତ୍ରୀମାନେ ବହୁ ସୁଚିନ୍ତିତ ପ୍ରବନ୍ଧ ପ୍ରତି ଶନିବାର ଦିନ ଏହି ପାଠଚକ୍ରରେ ଉପସ୍ଥାପନ କରୁଛନ୍ତି । ଏଥିରୁ କେତେକ ପ୍ରବନ୍ଧ 'ପାଠଚକ୍ର ପ୍ରବନ୍ଧାବଳୀ' ନାମରେ ବିଶ୍ୱବିଦ୍ୟାଳୟ ପକ୍ଷରୁ ପ୍ରକାଶ ଲାଭ କରିଅଛି । ବିଭିନ୍ନ ସମୟରେ ଓଡ଼ିଶା ଏବଂ ଓଡ଼ିଶା ବାହାରୁ ବହୁ ବରିଷ୍ଠ ସାହିତ୍ୟିକ, ଗବେଷକ ଓ ସମାଲୋଚକ ଏହି ପାଠଚକ୍ରମାନଙ୍କରେ ଯୋଗଦାନ କରିବା ପାଇଁ କିମ୍ବା ପରିଦର୍ଶୀ ଅଧ୍ୟାପକ ଭାବେ ନିମନ୍ତ୍ରିତ ହୋଇ ଆସିଛନ୍ତି । ସେମାନଙ୍କ ମଧ୍ୟରୁ ସ୍ୱର୍ଗତ ଜୟକୃଷ୍ଣ ମିଶ୍ର, ଅଧ୍ୟାପକ ଚିନ୍ତାମଣି ବେହେରା, ଡ.ଖଗେଶ୍ୱର ମହାପାତ୍ର, ସ୍ୱର୍ଗତ ପଣ୍ଡିତ ଅନନ୍ତ ତ୍ରିପାଠୀ ଶର୍ମା, ଡ.କୁଞ୍ଜବିହାରୀ ଦାଶ, କଲିକତା ବିଶ୍ୱବିଦ୍ୟାଳୟର ଡ.ଅସିତ ବାନାର୍ଜୀ, ଶ୍ରୀଯୁକ୍ତ ଡ଼.ହରିହର ଦାସ, ଡ.ସୌଭାଗ୍ୟ କୁମାର ମିଶ୍ର, ଶ୍ରୀ ବ୍ରହ୍ମାନନ୍ଦ ପଣ୍ଡା, ଡ.ଦେବୀପ୍ରସନ୍ନ ପଟ୍ଟନାୟକ, ପ୍ରଫେସର ଚନ୍ଦ୍ରଶେଖର ରଥ, ଶ୍ରୀ ମହାପାତ୍ର ନୀଳମଣି ସାହୁ, ପ୍ରଫେସର ବୃନ୍ଦାବନଚନ୍ଦ୍ର ଆଚାର୍ଯ୍ୟ, ଡ.କୃଷ୍ଣଚରଣ ସାହୁ, କବି ଗୋଲକ ଚନ୍ଦ୍ର ପ୍ରଧାନ, ପଦ୍ମଶ୍ରୀ ରାଧାମୋହନ ଗଡ଼ନାୟକ, ବିତଣ୍ଡା ରାମକୃଷ୍ଣ, ପ୍ରଫେସର ବଂଶୀଧର ମହାନ୍ତି, ପ୍ରଫେସର ଗୋପାଳଚନ୍ଦ୍ର ମିଶ୍ର, ଡ. ରାଜେନ୍ଦ୍ର ନାରାୟଣ ଦାସ (ଜର୍ମାନୀ), ଶ୍ରୀ ରବୀନ୍ଦ୍ରମୋହନ ସେନାପତି, ପ୍ରଫେସର ଶରତଚନ୍ଦ୍ର ପ୍ରଧାନ, ଶ୍ରୀମତୀ

ମନୋରମା ମହାପାତ୍ର, ପ୍ରଫେସର କୃଷ୍ଣପ୍ରସାଦ ମିଶ୍ର, ଡ. ଦେବେନ୍ଦ୍ର ମହାନ୍ତି, ପ୍ରଫେସର ପଠାଣି ପଟ୍ଟନାୟକ, ପ୍ରଫେସର ଜାନକୀ ବଲ୍ଲଭ ମହାନ୍ତି (ଭରଦ୍ୱାଜ), ପ୍ରଫେସର ଗଙ୍ଗାଧର ବଳ, ପ୍ରଫେସର ନୀଳାଦ୍ରି ଭୂଷଣ ହରିଚନ୍ଦନ, ପ୍ରଫେସର ବୈରାଗୀ ଚରଣ ଜେନା, ପ୍ରଫେସର ବୈଷ୍ଣବଚରଣ ସାମଲ, ପ୍ରଫେସର ସଂଘମିତ୍ରା ମିଶ୍ର, ପ୍ରଫେସର ନରେନ୍ଦ୍ରନାଥ ମିଶ୍ର, ପ୍ରଫେସର ସାବିତ୍ରୀ ଦେବୀ, ପ୍ରଫେସର ବାଉରିବନ୍ଧୁ ସାହୁ, ପ୍ରଫେସର ଉଦୟନାଥ ସାହୁ, ପ୍ରଫେସର ଗିରିବାଳା ମହାନ୍ତି, ପ୍ରଫେସର କଇଳାଶ ପଟ୍ଟନାୟକ, ପ୍ରଫେସର ସମର ମୁଦାଲି, ପ୍ରଫେସର କୃଷ୍ଣଚନ୍ଦ୍ର ପ୍ରଧାନ, ପ୍ରଫେସର ଅଶୋକ କୁମାର ଦାସ, ପ୍ରଫେସର ସୌମେନ୍ଦ୍ର ମୋହନ ପଟ୍ଟନାୟକ (ଦିଲ୍ଲୀ ବିଶ୍ୱବିଦ୍ୟାଳୟ), ପ୍ରଫେସର ଅଶୋକ କୁମାର ଦାସ, ପ୍ରଫେସର ନରେନ୍ଦ୍ରନାଥ ମିଶ୍ର, ପ୍ରଫେସର ମନୋରଞ୍ଜନ ପ୍ରଧାନ, ପ୍ରଫେସର ସବିତା ପ୍ରଧାନ, ପ୍ରଫେସର ମନୋଜ ଦାସ, ପଦ୍ମଶ୍ରୀ ରମାକାନ୍ତ ରଥ, ପଦ୍ମଭୂଷଣ ସୀତାକାନ୍ତ ମହାପାତ୍ର, ପଦ୍ମଶ୍ରୀ ପ୍ରତିଭା ରାୟ, ପ୍ରଫେସର ଶ୍ୟାମସୁନ୍ଦର ମହାପାତ୍ର, ଶ୍ରୀ ଶାନ୍ତନୁ କୁମାର ଆଚାର୍ଯ୍ୟ, ପ୍ରଫେସର ନାରାୟଣ ସାହୁ, ପ୍ରଫେସର ଶରତ କୁମାର ରଥ, ପ୍ରଫେସର ନରେନ୍ଦ୍ରନାଥ ମିଶ୍ର, ପ୍ରଫେସର ମଧୁସୂଦନ ପତି, ପ୍ରଫେସର ପ୍ରକାଶଚନ୍ଦ୍ର ପଟ୍ଟନାୟକ, ପ୍ରଫେସର ଉଦୟନାଥ ସାହୁ, ପ୍ରଫେସର ସନ୍ତୋଷ କୁମାର ତ୍ରିପାଠୀ, ପ୍ରଫେସର ପ୍ରଫୁଲ୍ଲ କୁମାର ମହାନ୍ତି, ପ୍ରଫେସର ସୁରେନ୍ଦ୍ରନାଥ ଦାଶ ପ୍ରମୁଖଙ୍କ ନାମ ସ୍ମରଣୀୟ ।

ବିଭାଗର ଅଧ୍ୟାପକମାନେ ବିଭିନ୍ନ ଗ୍ରନ୍ଥ ରଚନା କରି ସାହିତ୍ୟ କ୍ଷେତ୍ରରେ ପ୍ରତିଷ୍ଠା ଅର୍ଜନ କରିଛନ୍ତି । ପ୍ରଫେସର ସୁଦର୍ଶନ ଆଚାର୍ଯ୍ୟ, ପ୍ରଫେସର ବେଣୀମାଧବ ପାଢ଼ୀ, ପ୍ରଫେସର ଗଗନେନ୍ଦ୍ରନାଥ ଦାଶ, ପ୍ରଫେସର ଦାଶରଥି ଦାସ ଜାତୀୟ ଓ ଆନ୍ତର୍ଜାତୀୟ ସ୍ତରରେ ବହୁ ପୁରସ୍କାର ପ୍ରାପ୍ତ ହୋଇ ଓଡ଼ିଆ ବିଭାଗର ଗୌରବବୃଦ୍ଧିରେ ସହାୟକ ହୋଇଛନ୍ତି । ବିଭାଗ ପାଇଁ ଏହି ଶିକ୍ଷକମାନଙ୍କର ଅବଦାନ ମଧ୍ୟ କିଛି କମ୍ ନୁହେଁ। ଏମାନେ ବିଭିନ୍ନ ସମୟରେ କେତେକ ଦୁର୍ଲଭ ଗ୍ରନ୍ଥ ସମ୍ପାଦନା କରି ବିଶ୍ୱବିଦ୍ୟାଳୟ/ ବିଭାଗ ଆନୁକୂଲ୍ୟରେ ତାହା ପ୍ରକାଶ କରିଛନ୍ତି । ସେଗୁଡ଼ିକମଧ୍ୟରୁ ନିମ୍ନଲିଖିତ କେତୋଟି ଗ୍ରନ୍ଥ ଏଠାରେ ଉଲ୍ଲେଖଯୋଗ୍ୟ ।

୧. ଉପେନ୍ଦ୍ର ଭଞ୍ଜ ତିନୋଟି ଅଭିଭାଷଣ (୧୯୭୨),
ସମ୍ପାଦନା: ଶ୍ରୀଯୁକ୍ତ ସୁଦର୍ଶନ ଆଚାର୍ଯ୍ୟ
୨. ଆଞ୍ଚଳିକ ଶବ୍ଦକୋଷ (୧୯୭୪), ସମ୍ପାଦନା: କୁଞ୍ଜବିହାରୀ ତ୍ରିପାଠୀ
୩. କବିସୂର୍ଯ୍ୟ ପରିକ୍ରମା (୧୯୭୪), ସମ୍ପାଦନା: ଡ.କାହ୍ନୁଚରଣ ମିଶ୍ର
୪. ପାଠଚକ୍ର ପ୍ରବନ୍ଧାବଳୀ (୧୯୭୮), ସମ୍ପାଦନା: ଡ.କାହ୍ନୁଚରଣ ମିଶ୍ର
୫. ଭଞ୍ଜବିଚିତ୍ରା (୧୯୮୬), ସମ୍ପାଦନା: ଡ.ଶ୍ରୀନିବାସ ମିଶ୍ର

୬. ଗୀତା ବିଜୟ ବୈଜୟନ୍ତୀ, ୧ମ ଭାଗ (୧୯୮୬), ଗୀତାର ଟୀକା, ଟୀକାକାର: ପଣ୍ଡିତ ଅନ୍ତର୍ଯ୍ୟାମୀ ପତି, ସଂଯୋଜନା: ଡ. ସୁଦର୍ଶନ ଆଚାର୍ଯ୍ୟ

୭. ରାମଚନ୍ଦ୍ର ଗ୍ରନ୍ଥାବଳୀ, ସମ୍ପାଦନା: ଡ.ସୁଦର୍ଶନ ଆଚାର୍ଯ୍ୟ
୧ମ ଭାଗ- ୧୯୯୦, ଦ୍ୱିତୀୟ ଭାଗ-୧୯୯୨, ତୃତୀୟ ଭାଗ-୧୯୯୫, ଚତୁର୍ଥ ଭାଗ-୧୯୯୯

୮ ରଜତ ଜୟନ୍ତୀ ସ୍ମରଣିକା (୧୯୯୧), ସଂପାଦନା: ଡ. ସୁଦର୍ଶନ ଆଚାର୍ଯ୍ୟ

୯. ଇନ୍ଦ୍ରଧନୁ (୧୯୯୧), ସଂପାଦନା: ଡ.ସୁଦର୍ଶନ ଆଚାର୍ଯ୍ୟ

୧୦. ଜଗନ୍ନାଥ ନାରାୟଣଦେବ ଗ୍ରନ୍ଥାବଳୀ (୧୯୯୨), ସଂପାଦନା: ଡ. ସୁଦର୍ଶନ ଆଚାର୍ଯ୍ୟ

୧୧. ଅଭିନବ ଭଞ୍ଜଭାରତୀ- ୧ (ଶ୍ୟାମସୁନ୍ଦର ରାଜଗୁରୁ ବିଶେଷାଙ୍କ, ଏପ୍ରିଲ-ସେପ୍ଟେମ୍ବର, ୧୯୯୨), ସଂପାଦନା: ଡ. ଦାଶରଥି ଦାସ

୧୨. ଅଭିନବ ଭଞ୍ଜଭାରତୀ-୨ (ପଣ୍ଡିତ ଗୋପୀନାଥ ନନ୍ଦଶର୍ମା ବିଶେଷାଙ୍କ, ଅକ୍ଟୋବର-ମାର୍ଚ୍ଚ, ୧୯୯୩), ସଂପାଦନା: ଡ. ଦାଶରଥି ଦାସ

୧୩. ସାରସ୍ୱତ ପରିକ୍ରମା (ଫକୀରମୋହନଙ୍କ ଜୀବନୀ ଓ କୃତିଭିତ୍ତିରେ,୧୯୯୩), ଡ. ବାଉରୀବନ୍ଧୁ କର

୧୪. ଗଙ୍ଗାଧର ମେହେର (୨୦୦୧), ସଂପାଦନା: ଡ. ବାଉରୀବନ୍ଧୁ କର

୧୫. ଗୀତା ବିଜୟ ବୈଜୟନ୍ତୀ, ୨ୟ ଭାଗ (୨୦୦୬), ଗୀତାର ଟୀକା, ଟୀକାକାର: ପଣ୍ଡିତ ଅନ୍ତର୍ଯ୍ୟାମୀ ପତି, ସଂଯୋଜନା: ଡ. ଦେବୀପ୍ରସନ୍ନ ପଟ୍ଟନାୟକ

୧୬. ଆକାଙ୍‌କ୍ଷା- ସୁବର୍ଣ୍ଣ ଜୟନ୍ତୀ ସ୍ମରଣିକା (୨୦୧୯)- ସଂପାଦନା: ଡ. ପ୍ରସନ୍ନ କୁମାର ସ୍ୱାଇଁ

ଏତଦ୍‌ଭିନ୍ନ 'ଭଞ୍ଜ ସାହିତ୍ୟ ସମାଲୋଚନା : ସୀମା ଓ ସମ୍ଭାବନା' ପାଠଚକ୍ର ଅବସରରେ ଡ.ସୁଦର୍ଶନ ଆଚାର୍ଯ୍ୟ ଓ ଡ.ପୂର୍ଣ୍ଣଚନ୍ଦ୍ର ମିଶ୍ରଙ୍କ ଯୁଗ୍ମ ସମ୍ପାଦନାରେ "ଉପେନ୍ଦ୍ରଭଞ୍ଜ ସହାୟକ ଗ୍ରନ୍ଥସୂଚୀ"କୁ ଷ୍ଟେନ୍‌ସିଲ୍‌ରେ ପ୍ରତିଲିପି ଆକାରରେ ପ୍ରସ୍ତୁତ କରାଯାଇଅଛି ।

ଓଡ଼ିଆ ଅଧ୍ୟାପକମାନଙ୍କୁ ଉପଯୁକ୍ତ ପ୍ରଶିକ୍ଷଣ ଦେଇ ସେମାନଙ୍କୁ ଓଡ଼ିଆ ଭାଷା ସାହିତ୍ୟ ସଂସ୍କୃତି ସଂପର୍କରେ ଅଧିକ ସକ୍ରିୟ ଓ ଅଧ୍ୟାପନା ପ୍ରତି ସର୍ବଦା ଜାଗ୍ରତ ରଖିବା ପାଇଁ ୟୁ.ଜି.ସି. ଆନୁକୂଲ୍ୟରେ ବିଭାଗ ପକ୍ଷରୁ ବିଭିନ୍ନ ସମୟରେ ୧୨ ଗୋଟି ୨୧ ଦିବସୀୟ ରିଫ୍ରେସର୍ କୋର୍ସ ସହିତ ଜାତୀୟ ପାଣ୍ଡୁଲିପି ମିଶନ, ନୂଆଦିଲ୍ଲୀ ଆନୁକୂଲ୍ୟରେ ପ୍ରାଚୀନ ତାଳପତ୍ର ପୋଥି ଅଧ୍ୟୟନଭିତ୍ତିକ ଗୋଟିଏ ୨୧ ଦିବସୀୟ ଜାତୀୟ କର୍ମଶାଳାର ଆୟୋଜନ କରାଯାଇଛି । ସେଗୁଡ଼ିକ ହେଉଛି:

୧. ବିଷୟ: 'ବିଂଶ ଶତକ ଓଡ଼ିଆ ସାହିତ୍ୟ', ୦୭.୦୧.୨୦୦୩ ଠାରୁ ୦୩.୦୨.୨୦୦୩
   ନିର୍ଦ୍ଦେଶକ: ଡ. ଅଶ୍ୱିନୀ କୁମାର ପଣ୍ଡା, ସହାୟତା: ୟୁ.ଜି.ସି., ନୂଆଦିଲ୍ଲୀ
୨. ବିଷୟ: 'ଓଡ଼ିଆ ସାହିତ୍ୟରେ ଆଦିବାସୀ ଓ ଲୋକଗୀତ', ୦୫.୦୨.୨୦୦୩ ଠାରୁ ୦୪.୦୩.୨୦୦୩
   ନିର୍ଦ୍ଦେଶକ: ଡ. ଅଶ୍ୱିନୀ କୁମାର ପଣ୍ଡା, ସହାୟତା: ୟୁ.ଜି.ସି., ନୂଆଦିଲ୍ଲୀ
୩. ବିଷୟ: 'ତୁଳନାତ୍ମକ ସାହିତ୍ୟ', ୨୦.୧୦.୨୦୦୩ ଠାରୁ ୧୬.୧୧.୨୦୦୩
   ନିର୍ଦ୍ଦେଶକ: ଡ. ଅଶ୍ୱିନୀ କୁମାର ପଣ୍ଡା, ସହାୟତା: ୟୁ.ଜି.ସି., ନୂଆଦିଲ୍ଲୀ
୪. ବିଷୟ: 'ସର୍ଜ୍ଜନଶୀଳ ସାହିତ୍ୟ', ୧୮.୧୧.୨୦୦୩ ଠାରୁ ୧୫.୧୨.୨୦୦୩
   ନିର୍ଦ୍ଦେଶକ: ଡ. ଅଶ୍ୱିନୀ କୁମାର ପଣ୍ଡା, ସହାୟତା: ୟୁ.ଜି.ସି., ନୂଆଦିଲ୍ଲୀ
୫. ବିଷୟ: 'ଓଡ଼ିଶାର ପ୍ରଦର୍ଶନଶୀଳ କଳା', ୨୧.୦୧.୨୦୦୪ ଠାରୁ ୧୬.୦୨.୨୦୦୪
   ନିର୍ଦ୍ଦେଶକ: ଡ. ଅଶ୍ୱିନୀ କୁମାର ପଣ୍ଡା, ସହାୟତା: ୟୁ.ଜି.ସି., ନୂଆଦିଲ୍ଲୀ
୬. ବିଷୟ: 'ପ୍ରାଚୀନ ଓଡ଼ିଆ ସାହିତ୍ୟ', ୩୦.୧୦.୨୦୦୪ ଠାରୁ ୧୯.୧୧.୨୦୦୪
   ନିର୍ଦ୍ଦେଶକ: ଡ. ଦେବୀପ୍ରସନ୍ନ ପଟ୍ଟନାୟକ, ସହାୟତା: ୟୁ.ଜି.ସି., ନୂଆଦିଲ୍ଲୀ
୭. ବିଷୟ: 'ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟ', ୨୩.୧୧.୨୦୦୪ ଠାରୁ ୧୩.୧୨.୨୦୦୪
   ନିର୍ଦ୍ଦେଶକ: ଡ. ଦେବୀପ୍ରସନ୍ନ ପଟ୍ଟନାୟକ, ସହାୟତା: ୟୁ.ଜି.ସି., ନୂଆଦିଲ୍ଲୀ
୮. ବିଷୟ: 'ଓଡ଼ିଆ ସାହିତ୍ୟର ସାଂସ୍କୃତିକ ଅଧ୍ୟୟନ', ୦୫.୦୧.୨୦୦୫ ଠାରୁ ୨୫.୦୧.୨୦୦୫
   ନିର୍ଦ୍ଦେଶକ: ଡ. ଦେବୀପ୍ରସନ୍ନ ପଟ୍ଟନାୟକ, ସହାୟତା: ୟୁ.ଜି.ସି., ନୂଆଦିଲ୍ଲୀ
୯. ବିଷୟ: 'ଦକ୍ଷିଣ ଓଡ଼ିଶାର ସାଂସ୍କୃତିକ ଅନୁଶୀଳନ', ୨୫.୧୦.୨୦୦୫ ଠାରୁ ୧୪.୧୧.୨୦୦୫
   ନିର୍ଦ୍ଦେଶକ: ଡ. ବାଉରୀବନ୍ଧୁ କର, ସହାୟତା: ୟୁ.ଜି.ସି., ନୂଆଦିଲ୍ଲୀ
୧୦. ବିଷୟ: 'ଏକବିଂଶ ଶତକ ସାହିତ୍ୟାନୁଶୀଳନ', ୩୦.୧୧.୨୦୦୫ ଠାରୁ ୨୦.୧୨.୨୦୦୫ ନିର୍ଦ୍ଦେଶକ: ଡ. ବାଉରୀବନ୍ଧୁ କର, ସହାୟତା: ୟୁ.ଜି.ସି., ନୂଆଦିଲ୍ଲୀ

୧୧. ବିଷୟ: 'ସାହିତ୍ୟ ଓ ବାର୍ତ୍ତାବାହୀ ମାଧ୍ୟମ', ୧୦.୦୧.୨୦୦୬ ଠାରୁ ୩୦.୦୧.୨୦୦୬
ନିର୍ଦ୍ଦେଶକ: ଡ. ବାଉରୀବନ୍ଧୁ କର, ସହାୟତା: ୟୁ.ଜି.ସି., ନୂଆଦିଲ୍ଲୀ

୧୨. National Workshop on 'Manuscriptology and Palaeography' (ପାଣ୍ଡୁଲିପି ବିଜ୍ଞାନ ଓ ଲିପି ବିଜ୍ଞାନ) ଶୀର୍ଷକ କର୍ମଶାଳା, ୨୭.୦୧.୨୦୧୭ ଠାରୁ ୧୬.୦୨.୨୦୧୭, ନିର୍ଦ୍ଦେଶକ: ପ୍ରଫେସର ଦେବୀପ୍ରସନ୍ନ ପଟ୍ଟନାୟକ, ସହାୟତା: ଜାତୀୟ ପାଣ୍ଡୁଲିପି ମିଶନ, ନୂଆଦିଲ୍ଲୀ

୧୩. ବିଷୟ: '+୩ ଓଡ଼ିଆ ସମ୍ମାନ ପାଠ୍ୟକ୍ରମଭିତ୍ତିକ ବିଷୟାନୁଶୀଳନ', ୨୬.୧୧.୨୦୧୮ ଠାରୁ ୧୫.୧୨.୨୦୧୮ ନିର୍ଦ୍ଦେଶକ:
ପ୍ରଫେସର ପ୍ରସନ୍ନ କୁମାର ସ୍ୱାଇଁ, ସହାୟତା: ବିଶ୍ୱବ୍ୟାଙ୍କ ପକ୍ଷରୁ ଓଡ଼ିଶା ସରକାର

ଏଠାରେ ବିଭାଗର ପ୍ରାଚୀର ପତ୍ର 'ଯୁଗରୁଚି' କଥା ମଧ୍ୟ ଉଲ୍ଲେଖ କରାଯାଇପାରେ । ପ୍ରଥମ ହାତଲେଖା ପତ୍ରିକା 'ମନ୍ମୟୀ' କିଛିବର୍ଷ ଧରି ପ୍ରକାଶ ପାଇବା ପରେ ବନ୍ଦ ହୋଇଯିବା ଯୋଗୁ ୧୯୭୯ରେ ଛାତ୍ରଛାତ୍ରୀମାନେ 'ଯୁଗରୁଚି' ନାମରେ ଏକ ପ୍ରାଚୀରପତ୍ର ପ୍ରକାଶ କରିବା ପାଇଁ ଉଦ୍ୟମ କରିଥିଲେ । ବିଭାଗର ତତ୍କାଳୀନ ପାଠଚକ୍ର ସମ୍ପାଦକ ଶ୍ରୀଯୁକ୍ତ ଦେବୀପ୍ରସନ୍ନ ପଟ୍ଟନାୟକ (ବର୍ତ୍ତମାନ ବିଭାଗର ବରିଷ୍ଠ ପ୍ରଫେସର ଓ ସ୍ନାତକୋତ୍ତର ପରିଷଦର ଅଧ୍ୟକ୍ଷ)ଙ୍କ ସମ୍ପାଦନାରେ ଏହା ପ୍ରଥମେ ମୁକ୍ତିଲାଭ କରିଥିଲା । ବର୍ତ୍ତମାନ ପର୍ଯ୍ୟନ୍ତ ଛାତ୍ରମାନଙ୍କ ଉଦ୍ୟମରେ ଏହା ନିୟମିତ ପ୍ରକାଶ ପାଇ ଆସୁଅଛି । ଏଥିରେ ପ୍ରକାଶ ପାଇଥିବା କେତେକ ରୁଚିପୂର୍ଣ୍ଣ ଲେଖା ସଙ୍କଳିତ ହୋଇ 'ଯୁଗରୁଚି'ର ବିଶେଷାଙ୍କ ରୂପେ ମୁଦ୍ରିତ ହୋଇ ପ୍ରକାଶ ପାଇଛି ।

ଓଡ଼ିଆ ବିଭାଗର ଗ୍ରନ୍ଥାଳୟ ଏବଂ ସଂଗ୍ରହାଳୟ ଅତ୍ୟନ୍ତ ସମୃଦ୍ଧ । ପ୍ରାଥମିକ ସ୍ତରରେ ଡ.କୁଞ୍ଜବିହାରୀ ତ୍ରିପାଠୀଙ୍କ ଉଦ୍ୟମରୁ ବହୁ ଉପାଦେୟ ପ୍ରାଚୀନ ପତ୍ରପତ୍ରିକା ଏବଂ ଅଧୁନା ଅନୁପଲବ୍ଧ ବହୁ ପ୍ରାଚୀନ ଗ୍ରନ୍ଥ ସଂଗୃହୀତ ହୋଇ ଏଥିରେ ରହିଛି । ତତ୍‌ସହିତ ବର୍ତ୍ତମାନ ପ୍ରାୟ ପନ୍ଦର ହଜାର ଉପାଦେୟ ପୁସ୍ତକ ଏହି ସଂଗ୍ରହାଳୟରେ ସଂଗୃହୀତ ହୋଇ ରହିଅଛ । ପରବର୍ତ୍ତୀ ସମୟରେ ବିଭାଗର କାର୍ଯ୍ୟକ୍ରମକୁ ଅଧିକ ତ୍ୱରାନ୍ୱିତ କରିବା ପାଇଁ ୟୁ.ଜି.ସି. ପକ୍ଷରୁ ସ୍ୱତନ୍ତ୍ର ଅନୁଦାନ ପ୍ରକଳ୍ପ (SAP) ସଂପ୍ରତି କାର୍ଯ୍ୟ କରୁଛି । ଏକଦା ସଂଗ୍ରହାଳୟ ପାଇଁ ବିଶ୍ୱବିଦ୍ୟାଳୟ ପ୍ରତିବର୍ଷ ପାଞ୍ଚହଜାର ଟଙ୍କା ଅନୁଦାନ ଦେଉଥିଲେ । ମାତ୍ର ନାନା କାରଣରୁ ସଂପ୍ରତି ତାହା ଆଉ ମିଳୁନାହିଁ । ବିଭାଗର ଅଧ୍ୟାପକ ଡ.ସୁଦର୍ଶନ ଆଚାର୍ଯ୍ୟ, ଡ.ଅଶ୍ୱିନୀ କୁମାର ପଣ୍ଡା, ଡ. ଦେବୀପ୍ରସନ୍ନ ପଟ୍ଟନାୟକ ଏବଂ ବିଭାଗର କ୍ୟୁରେଟର୍ ଡ. ରାଧାଗୋବିନ୍ଦ ପାଢ଼ୀଙ୍କ ଉଦ୍ୟମରେ ବିଭାଗରେ ବହୁ ତାଳପତ୍ର ପୋଥି

ସଂଗୃହୀତ ହୋଇ ରହିଛି । ବର୍ତ୍ତମାନ, ସଂଗ୍ରହାଳୟର ପୋଥି ସଂଖ୍ୟା ପ୍ରାୟ ୧୫୦୦ରୁ ଊର୍ଦ୍ଧ୍ୱ । ବିଭାଗ ଆରମ୍ଭଠାରୁ ପର୍ଯ୍ୟାୟକ୍ରମେ ବିଭାଗୀୟ ସହକର୍ମୀ ସର୍ବଶ୍ରୀ ଦଣ୍ଡପାଣି ପାତ୍ର, ସୀମାଞ୍ଚଳ ତ୍ରିପାଠୀ, କୃଷ୍ଣଚନ୍ଦ୍ର ପଣ୍ଡା, ବନବିହାରୀ ପଣ୍ଡା, ଅରୁଣ କୁମାର ରାଉତ, ସୀମାଞ୍ଚଳ ପଣ୍ଡା, ଶ୍ୟାମଘନ ପରିଡ଼ା, ରଜତ କୁମାର ପଟ୍ଟନାୟକ, ଅଭୟ କୁମାର ଦାଶ, ପ୍ରଦୀପ କୁମାର କହଁର ଏବଂ ବିଭାଗୀୟ ଦପ୍ତରୀ ଶ୍ରୀ ରଘୁନାଥ ପାଳ, ଶ୍ରୀ ରାଧାକୃଷ୍ଣ ସାହୁ, ଶ୍ରୀ ସନ୍ତୋଷ କୁମାର ଶତପଥୀ, ଶ୍ରୀ କେ. ଭୁଷି, ଶ୍ରୀ ବିଭୁଦତ୍ତ ମହାରଣା, ଶ୍ରୀ ସହଦେବ ପାତ୍ର, ଶ୍ରୀ ସୁରେନ୍ଦ୍ର କୁମାର ନାୟକ, ଶ୍ରୀ ଉମାଚରଣ ଦାଶ ପ୍ରମୁଖ ବିଭାଗରେ ଉପଲବ୍ଧ ପୁସ୍ତକଗୁଡ଼ିକର ରକ୍ଷଣାବେକ୍ଷଣ ଦିଗରେ ଯଥା ସମ୍ଭବ ଯତ୍ନ ନେଇଛନ୍ତି । ବିଭାଗର କପିଷ୍ଟ ଶ୍ରୀ ମନୋଜ କୁମାର ପଟ୍ଟନାୟକ ବିଭାଗ ସଂଗ୍ରହାଳୟରେ ଉପଲବ୍ଧ ଥିବା ତାଳପତ୍ର ପୋଥିଗୁଡ଼ିକର ନକଲ କରିବା ଓ ସେସବୁର ରକ୍ଷଣାବେକ୍ଷଣ ଦାୟିତ୍ୱରେ ନିୟୋଜିତ ଅଛନ୍ତି ।

୧୯୮୯ ମସିହାଠାରୁ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ ସହାୟତାରେ ଓଡ଼ିଆ ବିଭାଗରେ ଏକ ଆଞ୍ଚଳିକ ଗବେଷଣା କେନ୍ଦ୍ର ପ୍ରତିଷ୍ଠା ହୋଇଥିଲା । ଦକ୍ଷିଣ ଓଡ଼ିଶାର ସାହିତ୍ୟ-ସଙ୍ଗୀତ-କଳା-ସଂସ୍କୃତି ସହିତ ଭଞ୍ଜ ସାହିତ୍ୟରେ ଗବେଷଣା କରିବା ଏବଂ ଗବେଷକମାନଙ୍କୁ ଏ ଦିଗରେ ସହାୟତା ପ୍ରଦାନ  କରିବା ଏହାର ମୌଳିକ ଉଦ୍ଦେଶ୍ୟ ଥିଲା । ବିଭାଗର ତତ୍କାଳୀନ ପ୍ରଫେସର ଡ.ସୁଦର୍ଶନ ଆଚାର୍ଯ୍ୟଙ୍କ ନିର୍ଦ୍ଦେଶନାରେ ଏହା ପରିଚାଳିତ ହେଉଥିଲା । ଏହାର ଉପଦେଷ୍ଟା ସମିତିରେ ବିଶ୍ୱବିଦ୍ୟାଳୟର ତତ୍କାଳୀନ କୁଳପତି ପ୍ରଫେସର ବିଭୂତିଭୂଷଣ ଦେଓ, ରାଜନୀତି ବିଜ୍ଞାନର ପ୍ରାକ୍ତନ ପ୍ରଫେସର ଡ.ହରିହର ଦାସ, ଇଂରାଜୀ ବିଭାଗର ପ୍ରାକ୍ତନ ପ୍ରଫେସର ଡ.ସୌଭାଗ୍ୟ କୁମାର ମିଶ୍ର ରହିଥିଲେ । ଏହି କେନ୍ଦ୍ର ଦକ୍ଷିଣ ଓଡ଼ିଶାର ବହୁ ଅପରିଚିତ ଓ ଅଜ୍ଞାତ, ଲେଖକଙ୍କ ପରିଚୟ ଓ ରଚନାବଳୀ ସଂଗ୍ରହ କରିବାରେ ସମର୍ଥ ହୋଇଥିଲା । ପରବର୍ତ୍ତୀ କାଳରେ ୟୁଜିସି ଅନୁଦାନ ଲାଭକରି ଉପେନ୍ଦ୍ର ସାହିତ୍ୟର ସହାୟକ ଗ୍ରନ୍ଥସୂଚୀ ପ୍ରସ୍ତୁତ କରିବା ସହିତ ତାଙ୍କର ରଚନାବଳୀ, ତାଙ୍କ ଜୀବନୀ ତଥା ସାହିତ୍ୟ ସମ୍ପର୍କୀୟ ଆଲୋଚନାମାନ ବହୁ ସଂଖ୍ୟାରେ ସଂଗ୍ରହ କରାଯାଇଛି । ଊନବିଂଶ ଶତାବ୍ଦୀର ବହୁଚର୍ଚ୍ଚିତ 'ଇନ୍ଦ୍ରଧନୁ' ପତ୍ରିକାର କିଛି ସଂଖ୍ୟା ସଂଗ୍ରହ କରାଯାଇ କେନ୍ଦ୍ର ତରଫରୁ ପ୍ରକାଶ ପାଇଛି । ସେ ସମୟରେ ଛଅ ଜଣରୁ ଊର୍ଦ୍ଧ୍ୱ ଗବେଷକ କେନ୍ଦ୍ର ନିର୍ଦ୍ଦେଶକଙ୍କ ତତ୍ତ୍ୱାବଧାନରେ ଭଞ୍ଜ ସାହିତ୍ୟର ବିଭିନ୍ନ ଦିଗ ଉପରେ ଗବେଷଣା କରିବା ପାଇଁ ବିଶ୍ୱବିଦ୍ୟାଳୟରୁ ବୃତ୍ତି ଲାଭ କରିଛନ୍ତି । ଦକ୍ଷିଣ ଓଡ଼ିଶାର ଆଦିବାସୀ ସାହିତ୍ୟ -ସଙ୍ଗୀତ ସମ୍ପର୍କରେ ମଧ୍ୟ ଗବେଷଣା କରିବା ପାଇଁ କେନ୍ଦ୍ର ତରଫରୁ ପଦକ୍ଷେପ ନିଆଯାଇଛି ।

ଗବେଷଣା କ୍ଷେତ୍ରରେ ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗ ଏହି ପଚାଶବର୍ଷ ମଧ୍ୟରେ ଯଥେଷ୍ଟ ଅଗ୍ରଗତି କରିପାରିଛି । ବିଭାଗର ଶୈକ୍ଷିକ ବାତାବରଣକୁ ବ୍ୟାପକ କରିବା ସହିତ

ଏହାର ସାମୂହିକ ବିକାଶକୁ ଦୃଷ୍ଟିରେ ରଖି ଉଚ୍ଚତର ଗବେଷଣାନିମିତ୍ତ ୨୦୧୧ ମସିହାରେ ଏହା ୟୁ.ଜି.ସି. ଦ୍ୱାରା ମାନ୍ୟତାପ୍ରାପ୍ତ ସହିତ ଯୋଗ୍ୟ ବିବେଚିତ ହୋଇ ସ୍ୱତନ୍ତ୍ର ଅନୁଦାନ ପ୍ରକଳ୍ପ (SAP) ପ୍ରାପ୍ତ ହୋଇଛି । ଏଥିପାଇଁ ପ୍ରଥମ ପର୍ଯ୍ୟାୟ (Phase-1)ରେ 'ଦକ୍ଷିଣ ଓଡ଼ିଶାର ଲୋକପରମ୍ପରା ଓ ଆଦିବାସୀ ସଙ୍ଗୀତ' (Folk Tradition of South Odisha and Tribal Lore of Southern Odisha) ବିଷୟଭିତ୍ତିରେ ୟୁ.ଜି.ସି. ପକ୍ଷରୁ ଶିକ୍ଷା ଓ ଗବେଷଣା କ୍ଷେତ୍ରରେ ଚର୍ଚ୍ଚା ସହିତ ଏ ଦିଗରେ ଅନାଲୋଚିତ ବିଷୟରେ ଆଲୋଚନା ଓ ଗବେଷଣା ପାଇଁ ୫୫ ଲକ୍ଷ ଟଙ୍କା ଅନୁଦାନ ମଞ୍ଜୁରୀ ହୋଇଥିଲା । ପ୍ରଥମେ ସଂଯୋଜକ ଭାବରେ ଏହାର ଦାୟିତ୍ୱ ନେଇଥିଲେ ବିଭାଗର ତତ୍କାଳୀନ ବରିଷ୍ଠ ପ୍ରଫେସର ଅଶ୍ୱିନୀ କୁମାର ପଣ୍ଡା ଓ ପ୍ରଫେସର ଦେବୀପ୍ରସନ୍ନ ପଟ୍ଟନାୟକ ଏହାର ସହକାରୀ ସଂଯୋଜକ ଥିଲେ । ପରବର୍ତ୍ତୀ କାଳରେ ୨୦୧୭ ମସିହାରୁ ଏହି ପ୍ରକଳ୍ପର ଦ୍ୱିତୀୟ ପର୍ଯ୍ୟାୟ ୟୁ.ଜି.ସି ଦ୍ୱାରା ମଂଜୁରୀ ମିଳିଛି ଓ ଅନୁଦାନ ସ୍ୱରୂପ ବିଭାଗ ୭୭ ଲକ୍ଷ ଟଙ୍କା ଲାଭ କରିଛି । ସଂପ୍ରତି ଏହାର ସଂଯୋଜକ ଭାବରେ କାର୍ଯ୍ୟନିର୍ବାହ କରୁଛନ୍ତି ବିଭାଗର ବରିଷ୍ଠ ପ୍ରଫେସର ଦେବୀପ୍ରସନ୍ନ ପଟ୍ଟନାୟକ ଏବଂ ସହକାରୀ ସଂଯୋଜକ ଅଛନ୍ତି ପ୍ରଫେସର ପ୍ରସନ୍ନ କୁମାର ସ୍ୱାଇଁ । ପ୍ରକଳ୍ପର ବିଭିନ୍ନ କାର୍ଯ୍ୟକ୍ରମକୁ ତ୍ୱରାନ୍ୱିତ କରିବାରେ ମୁଖ୍ୟ ଭୂମିକା ନିର୍ବାହ କରିଛନ୍ତି ବିଭାଗର କ୍ୟୁରେଟର ଡ. ରାଧାଗୋବିନ୍ଦ ପାଢ଼ୀ ଓ କପିଷ୍ଟ ଶ୍ରୀ ମନୋଜ କୁମାର ପଟ୍ଟନାୟକ । ବିଭାଗର ସମସ୍ତ ଶିକ୍ଷକ ଓ କର୍ମଚାରୀଙ୍କ ସହଯୋଗ ସହିତ ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷଙ୍କ ପରାମର୍ଶ ଅନୁସାରେ ଏହା ପରିଚାଳିତ ହେଉଅଛି ।

ପ୍ରଫେସର ଦୀପକ କୁମାର ବେହେରା ୨୦୧୩ ମସିହାରେ ବିଶ୍ୱବିଦ୍ୟାଳୟର କୁଳପତି ଦାୟିତ୍ୱ ଗ୍ରହଣ କରିବା ପରେ ବିଭାଗର ସ୍ୱତନ୍ତ୍ର ଅନୁଦାନ ପ୍ରକଳ୍ପ (SAP) କାର୍ଯ୍ୟକ୍ରମକୁ ସମସ୍ତଙ୍କ ସହଯୋଗରେ ଅଧିକ କ୍ରିୟାଶୀଳ କରାଇଥିଲେ । ସେ ମୂଳତଃ ନୃତତ୍ତ୍ୱ ବିଭାଗର ଜଣେ ପ୍ରଖ୍ୟାତ ଗବେଷକ ଓ ଶିକ୍ଷକ ହୋଇଥିବାରୁ ତାଙ୍କର ଏହିଭଳି କାର୍ଯ୍ୟକ୍ରମରେ ଅଧିକ ଆଗ୍ରହ ଓ ରୁଚି ରହିଥିଲା । ସୁତରାଂ ବିଶ୍ୱବିଦ୍ୟାଳୟର ଉତ୍ତର ଦିଗରେ ନୂତନ ଭାବେ ନିର୍ମାଣ ହୋଇଥିବା ଏକାଡ଼େମିକ୍ ବ୍ଲକ୍-୨ ଦୁଇମହଲା ବିଶିଷ୍ଟ ସୌଧଟିକୁ ସେ ବିଭାଗକୁ ପ୍ରଦାନ କରିବା ସହିତ ତାହାକୁ 'ଦକ୍ଷିଣ ଓଡ଼ିଶା ସାଂସ୍କୃତିକ ଗବେଷଣା କେନ୍ଦ୍ର' ଭାବରେ ନାମିତ କରି ଓଡ଼ିଆ ବିଭାଗ ତଥା ବିଶ୍ୱବିଦ୍ୟାଳୟ ଇତିହାସରେ ଅନ୍ୟ ଏକ ଅକ୍ଷୟ କୀର୍ତ୍ତିମାନ ସ୍ଥାପନ କରିଥିଲେ । ଏହା ସହିତ କୁଳପତି ପ୍ରଫେସର ବେହେରାଙ୍କ ଉପସ୍ଥିତିରେ ୨୧ ମାର୍ଚ୍ଚ, ୨୦୧୫ ମସିହାର ଏକ ପୁଣ୍ୟତିଥିରେ ଓଡ଼ିଶାର ତତ୍କାଳୀନ ଉଚ୍ଚଶିକ୍ଷାମନ୍ତ୍ରୀ ଡ. ପ୍ରଦୀପ କୁମାର ପାଣିଗ୍ରାହୀଙ୍କ ଦ୍ୱାରା ଏହି ଗବେଷଣା କେନ୍ଦ୍ରର ଶୁଭ ଉଦ୍‌ଘାଟନ ଉତ୍ସବ ଅନୁଷ୍ଠିତ ହୋଇଥିଲା । ସେହିଦିନଠାରୁ ବିଭାଗର ସ୍ୱତନ୍ତ୍ର ଅନୁଦାନ

ପ୍ରକଳ୍ପ ସହିତ ନୂତନ ହୋଇ ପ୍ରତିଷ୍ଠିତ ଦକ୍ଷିଣ ଓଡ଼ିଶା ସାଂସ୍କୃତିକ ଗବେଷଣା କେନ୍ଦ୍ର ଗୋଟିଏ ସୌଧରେ କାର୍ଯ୍ୟ କରୁଛି । ଗବେଷଣା କେନ୍ଦ୍ରର ବିକାଶ ସହିତ ଏହାକୁ ଅଧିକ ତ୍ୱରାନ୍ୱିତ କରିବା ପାଇଁ ବିଶ୍ୱବିଦ୍ୟାଳୟ ପକ୍ଷରୁ ପ୍ରଥମ ପର୍ଯ୍ୟାୟରେ ୭ଲକ୍ଷ ଟଙ୍କା ଅନୁଦାନ ଓ ପରବର୍ତ୍ତୀ କାଳରେ ବିଶ୍ୱବ୍ୟାଙ୍କ୍ ସହାୟତାରେ ଏହାର ଭିତ୍ତିଭୂମି ସହିତ ସାମଗ୍ରିକ ଉନ୍ନତି ପାଇଁ ୨ କୋଟି ୫୦ ଲକ୍ଷ ଟଙ୍କା ଅର୍ଥ ମଞ୍ଜୁର ହୋଇ ଏହାର ବିକାଶଧାରାକୁ ଅବ୍ୟାହତ ରଖିଛି । ସଂପ୍ରତି ଏହାର ନିର୍ଦ୍ଦେଶକ ରହିଛନ୍ତି ବିଭାଗର ବରିଷ୍ଠ ପ୍ରଫେସର ଦେବୀପ୍ରସନ୍ନ ପଟ୍ଟନାୟକ ।

ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରୁ ଓଡ଼ିଆ ଭାଷା ଓ ସାହିତ୍ୟରେ ଯେଉଁ ଗବେଷକମାନେ ଡି.ଲିଟ୍. କିମ୍ବା ପିଏଚ୍.ଡି. ଉପାଧି ଲାଭ କରିଛନ୍ତି ସେମାନଙ୍କମଧ୍ୟରୁ ଅଧିକାଂଶ ଏହି ବିଭାଗର ଅଧ୍ୟାପକମାନଙ୍କ ତତ୍ତ୍ୱାବଧାନରେ ହିଁ କାର୍ଯ୍ୟ କରିଛନ୍ତି । ଏ ପର୍ଯ୍ୟନ୍ତ ଏହି ବିଭାଗରୁ ୧୮ ଜଣ ଡ଼ି.ଲିଟ୍., ୩୦୦ରୁ ଊର୍ଦ୍ଧ୍ୱ ପିଏଚ୍.ଡି. ଓ ୪୫୦ରୁ ଊର୍ଦ୍ଧ୍ୱ ଏମ୍.ଫିଲ. ଡିଗ୍ରୀ ପ୍ରାପ୍ତ ହୋଇଛନ୍ତି । ବିଭିନ୍ନ ସମୟରେ ଗବେଷକମାନେ ବିଶ୍ୱବିଦ୍ୟାଳୟ, ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ ଏବଂ ଅନ୍ୟାନ୍ୟ ସରକାରୀ ଅନୁଷ୍ଠାନପକ୍ଷରୁ ଗବେଷଣା ବୃତ୍ତି ଲାଭ କରି ଏହି ବିଭାଗ ଅଧୀନରେ ଗବେଷଣା କରିଛନ୍ତି ଓ କରୁଛନ୍ତି । ଏହିମାନଙ୍କ ମଧ୍ୟରୁ କେତେଜଣଙ୍କ ନାମ ଏଠାରେ ଉଲ୍ଲେଖ କରାଯାଇପାରେ:

| | |
|---|---|
| ସ୍ୱରାଜ୍ୟଲକ୍ଷ୍ମୀ ବକ୍ସି | ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ବୃତ୍ତି |
| ରମେଶଚନ୍ଦ୍ର ତ୍ରିପାଠୀ | ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ବୃତ୍ତି |
| ସତ୍ୟନାରାୟଣ ଆଚାର୍ଯ୍ୟ | ୟୁ.ଜି.ସି. ବୃତ୍ତି |
| ବନମାଳୀ ବାରିକ | ୟୁ.ଜି.ସି. ବୃତ୍ତି |
| ଯୋଗାନନ୍ଦ ସାହୁ | ୟୁ.ଜି.ସି. ବୃତ୍ତି |
| ହରିହର ମିଶ୍ର | ଗବେଷକ ସହଯୋଗୀ, ୟୁ.ଜି.ସି. |
| ଅଶ୍ୱିନୀ କୁମାର ପଣ୍ଡା | ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ବୃତ୍ତି |
| ବ୍ରଜକିଶୋର ପାଣିଗ୍ରାହୀ | ୟୁ.ଜି.ସି. ବୃତ୍ତି |
| ସୀମାଞ୍ଚଳ ପ୍ରଧାନ | ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ବୃତ୍ତି |
| ଅଶୋକ କୁମାର ପଟ୍ଟନାୟକ | ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ବୃତ୍ତି |
| ବରଦା ଶଙ୍କର ପଣ୍ଡା | ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ବୃତ୍ତି |
| ବିପ୍ରଚରଣ ସେଠୀ | ୟୁ.ଜି.ସି. ବୃତ୍ତି |
| ମିନାକ୍ଷୀ ପାଢ଼ୀ | ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ବୃତ୍ତି |
| ସଂଘମିତ୍ରା ମହାପାତ୍ର | ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ବୃତ୍ତି |

| | |
|---|---|
| ରଂଜିତା ମହାପାତ୍ର | ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ବୃତ୍ତି |
| ଅଖିଳ ନାୟକ | ୟୁ.ଜି.ସି. ଜାତୀୟ ବୃତ୍ତି |
| ରବୀନ କୁମାର ପାଢ଼ୀ | ଶିକ୍ଷକ ଗବେଷକ |
| ଶରତ କୁମାରୀ ପଟ୍ଟନାୟକ | ଶିକ୍ଷକ ଗବେଷକ |
| ସିଦ୍ଧାର୍ଥ ଶଙ୍କର ପାଢ଼ୀ | ୟୁ.ଜି.ସି. ଜାତୀୟ ବୃତ୍ତି |
| ପୀତାମ୍ବର ସାହୁ | ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ବୃତ୍ତି |
| ପ୍ରତ୍ୟୁଷ କୁମାର ମିଶ୍ର | ୟୁ.ଜି.ସି. ଜାତୀୟ ବୃତ୍ତି |
| ସୁଜାତା ପାଢ଼ୀ | ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ବୃତ୍ତି |
| ରଂଜିତା ମିଶ୍ର | ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ବୃତ୍ତି |
| ରାଜେନ୍ଦ୍ର କୁମାର ତ୍ରିପାଠୀ | ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ବୃତ୍ତି |
| ଶରତ କୁମାର ଜେନା | ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ବୃତ୍ତି |
| ସୁଶାନ୍ତ କୁମାର ଦାଶ | ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ବୃତ୍ତି |
| ଚାରୁପ୍ରଭା ନାୟକ | ରାଜୀବ ଗାନ୍ଧୀ ଜାତୀୟ ବୃତ୍ତି |
| ରଣଜିତ କୁମାର ସେଠୀ | ରାଜୀବ ଗାନ୍ଧୀ ଜାତୀୟ ବୃତ୍ତି |
| ବାବୁଲା ବେହେରା | ରାଜୀବ ଗାନ୍ଧୀ ଜାତୀୟ ବୃତ୍ତି |
| ଜୟନ୍ତୀ ବେହେରା | ରାଜୀବ ଗାନ୍ଧୀ ଜାତୀୟ ବୃତ୍ତି |
| ଲଳିତା ବେହେରା | ରାଜୀବ ଗାନ୍ଧୀ ଜାତୀୟ ବୃତ୍ତି |
| ଡମ୍ବରୁଧର ଦାସ | ରାଜୀବ ଗାନ୍ଧୀ ଜାତୀୟ ବୃତ୍ତି |
| ସୁନିତା ବେହେରା | ରାଜୀବ ଗାନ୍ଧୀ ଜାତୀୟ ବୃତ୍ତି |
| ପ୍ରମୋଦ କୁମାର ପଧାନ | ୟୁ.ଜି.ସି. ଜାତୀୟ ବୃତ୍ତି |
| ରାମାରାଓ ମାଝି | ରାଜୀବ ଗାନ୍ଧୀ ଜାତୀୟ ବୃତ୍ତି |
| ସୁରଜା ସିଂ | ମୌଲାନା ଆବୁଲ କଲାମ ଆଜାଦ ଜାତୀୟ ବୃତ୍ତି |
| ସୁରେଶ୍ୱରୀ ବାଘ | ରାଜୀବ ଗାନ୍ଧୀ ଜାତୀୟ ବୃତ୍ତି |
| ବିଷ୍ଣୁପ୍ରିୟା ସେଠୀ | ରାଜୀବ ଗାନ୍ଧୀ ଜାତୀୟ ବୃତ୍ତି |
| ପ୍ରକାଶ ଚନ୍ଦ୍ର ସୂତାର | ୟୁ.ଜି.ସି. ଜାତୀୟ ବୃତ୍ତି |
| ସୁରେଶ କୁମାର ମାଝୀ | ରାଜୀବ ଗାନ୍ଧୀ ଜାତୀୟ ବୃତ୍ତି |
| ହିମାଂଶୁ ଶେଖର ନାୟକ | ରାଜୀବ ଗାନ୍ଧୀ ଜାତୀୟ ବୃତ୍ତି |
| ତାପସୀ କାଣ୍ଡି | ରାଜୀବ ଗାନ୍ଧୀ ଜାତୀୟ ବୃତ୍ତି |
| ରଶ୍ମିତା ସିଂହ | ରାଜୀବ ଗାନ୍ଧୀ ଜାତୀୟ ବୃତ୍ତି |

| | |
|---|---|
| ବସନ୍ତ କୁମାର ଦାସ | ରାଜୀବ ଗାନ୍ଧୀ ଜାତୀୟ ବୃତ୍ତି |
| ବାସନ୍ତୀ ନାୟକ | ରାଜୀବ ଗାନ୍ଧୀ ଜାତୀୟ ବୃତ୍ତି |
| ସୁରେନ୍ଦ୍ର ଶବର | ରାଜୀବ ଗାନ୍ଧୀ ଜାତୀୟ ବୃତ୍ତି |
| ନବକିଶୋର ନାୟକ | ରାଜୀବ ଗାନ୍ଧୀ ଜାତୀୟ ବୃତ୍ତି |
| ଭଗବତୀ ନାୟକ | ରାଜୀବ ଗାନ୍ଧୀ ଜାତୀୟ ବୃତ୍ତି |
| ରୁପାଲି ମଧୁସ୍ମିତା ମଲିକ | ରାଜୀବ ଗାନ୍ଧୀ ଜାତୀୟ ବୃତ୍ତି |
| ସୁଦର୍ଶନ ରଉତ | ଉଚ୍ଚଶିକ୍ଷା ଜାତୀୟ ବୃତ୍ତି |
| ଶଶିକାନ୍ତ ମଲିକ | ରାଜୀବ ଗାନ୍ଧୀ ଜାତୀୟ ବୃତ୍ତି |
| ବସନ୍ତ କୁମାର ସେଠୀ | ରାଜୀବ ଗାନ୍ଧୀ ଜାତୀୟ ବୃତ୍ତି |

ଛାତ୍ରଛାତ୍ରୀମାନେ ବିଭାଗର ଗର୍ବ ଓ ଗୌରବ । କେବଳ ଅଧ୍ୟାପନା କ୍ଷେତ୍ରରେ ନୁହେଁ, ବିଭିନ୍ନ କର୍ମ କ୍ଷେତ୍ରରେ ସେମାନଙ୍କର କାର୍ଯ୍ୟ ଦକ୍ଷତା ଓ ସଫଳତା ପାଇଁ ବିଭାଗ ଆଜି ଗୌରବାନ୍ୱିତ ।

ବିଶ୍ୱବିଦ୍ୟାଳୟର ସାହିତ୍ୟ, ସଂସ୍କୃତି ଓ କ୍ରୀଡ଼ା ପ୍ରଭୃତି କ୍ଷେତ୍ରରେ ଏ ବିଭାଗର ଛାତ୍ରଛାତ୍ରୀମାନଙ୍କ କୃତିତ୍ୱ ଅବଶ୍ୟ ସ୍ୱୀକାର୍ଯ୍ୟ । ଏହି ବିଭାଗରୁ ଉତ୍ତୀର୍ଣ୍ଣ ହୋଇ ଶିଳ୍ପ, ଚଳଚ୍ଚିତ୍ର, ନାଟକ, ସମ୍ବାଦପତ୍ର, ବୈଦ୍ୟୁତିକ ଗଣମାଧ୍ୟମ, ଶିକ୍ଷା, ପ୍ରଶାସନ ପ୍ରଭୃତି କ୍ଷେତ୍ରରେ ସ୍ୱର୍ଗତଃ ଶ୍ରୀନିବାସ ମହାନ୍ତି, ଡ. ଉପେନ୍ଦ୍ର ନାୟକ, ଡ. ମାଳବିକା ରାୟ, ଡ. ସୁରେନ୍ଦ୍ରନାଥ ମିଶ୍ର, ତାପସ ବୋଷ୍, ଡ. ସତ୍ୟ ରାୟ, ଡ. ଅଶ୍ୱିନୀ କୁମାର ପଣ୍ଡା, ଡ.ଦେବୀପ୍ରସନ୍ନ ପଟ୍ଟନାୟକ ପ୍ରମୁଖ ଯଥେଷ୍ଟ ସୁନାମ ଅର୍ଜନ କରିଛନ୍ତି । ବିଶ୍ୱବିଦ୍ୟାଳୟର ଛାତ୍ର ସଂସଦ, ନାଟ୍ୟ ସଂସଦ ପ୍ରଭୃତି କ୍ଷେତ୍ରରେ ଏ ବିଭାଗର ଛାତ୍ରଛାତ୍ରୀମାନେ ବିଭିନ୍ନ ପଦପଦବୀର ଅଧିକାରୀ ମଧ ହୋଇଛନ୍ତି । କୃତୀ ଛାତ୍ରମାନଙ୍କର ସଂଖ୍ୟା ଏତେ ଅଧିକ ଯେ ସମସ୍ତ ସଫଳ ଛାତ୍ରଛାତ୍ରୀମାନଙ୍କ ନାମ ଏଠାରେ ଉଲ୍ଲେଖ କରିବା ଅସମ୍ଭବ ।

ଓଡ଼ିଶାର ଏକ ଅନୁନ୍ନତ ଅଞ୍ଚଳରେ ପ୍ରତିଷ୍ଠିତ ବିଶ୍ୱବିଦ୍ୟାଳୟରେ ଗୋଟିଏ ବିଭାଗର ପ୍ରଥମ ୫୦ ବର୍ଷକୁ ତା'ର ସ୍ୱପ୍ନ ଓ ସଂକଳ୍ପର ପର୍ବ ବୋଲି କୁହାଯାଇପାରେ । ବହୁ ଘାତ-ପ୍ରତିଘାତ, ସୁବିଧା-ଅସୁବିଧା ତଥା ଉତ୍ଥାନ-ପତନ ମଧ୍ୟରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗ ଅଗ୍ରଗତି କରି ଚାଲିଛି । ଓଡ଼ିଶାର ଦକ୍ଷିଣ ଉପାନ୍ତରେ ଗଢ଼ି ଉଠିଥିବା ଏହି ବିଭାଗର ସାହିତ୍ୟ-ସମାଜ ପ୍ରତି ଦାୟିତ୍ୱ ଓ ଅଙ୍ଗୀକାରବଦ୍ଧତା ନିଶ୍ଚିତ ଭାବରେ ଖୁବ୍ ଗୁରୁତ୍ୱପୂର୍ଣ୍ଣ । ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିର ସୁରକ୍ଷା ଓ ପ୍ରସାର ଏହାର ପ୍ରଥମ ତଥା ପ୍ରଧାନ କର୍ତ୍ତବ୍ୟ । ଅଧ୍ୟୟନ, ଅଧ୍ୟାପନା ଓ ଗବେଷଣା ଦ୍ୱାରା ଏହି କର୍ତ୍ତବ୍ୟଟିକୁ ସୁସମ୍ପନ୍ନ କରିବାକୁ ହେବ । ଦକ୍ଷିଣ ଓଡ଼ିଶା ଥିଲା ଏକଦା ଉତ୍କଳ ଭାରତୀଙ୍କ

କ୍ରୀଡ଼ାସ୍ଥଳ । ଏକଦା ଅସଂଖ୍ୟ କବି ଓ ସଙ୍ଗୀତଜ୍ଞଙ୍କ କଳ-କୂଜନରେ ଏହି ଅଞ୍ଚଳ ମୁଖରିତ ହୋଇ ଉଠିଥିଲା । ସେମାନଙ୍କର ଉତ୍ତର ସାଧକ ଭାବେ ଏ ପର୍ଯ୍ୟନ୍ତ ପୁରପଲ୍ଲୀରେ ଅଗଣିତ ସାହିତ୍ୟ ସାଧକ ଓଡ଼ିଶାର ବାଣୀଭଣ୍ଡାରକୁ ସମୃଦ୍ଧ କରି ଚାଲିଛନ୍ତି । ସେମାନଙ୍କର ରଚନାଗୁଡ଼ିକୁ ସଂଗ୍ରହ କରିବାର ଗୁରୁଦାୟିତ୍ୱ ଏହି ବିଭାଗ ଉପରେ ନ୍ୟସ୍ତ ଓ ଏହା ବିଭାଗର ଜାତୀୟ କର୍ତ୍ତବ୍ୟ ।

ପୁନଶ୍ଚ ଦକ୍ଷିଣ ଓଡ଼ିଶା ଏକ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳ । ଆଧୁନିକ ସଭ୍ୟତାର ସଂସ୍ପର୍ଶରେ ଆସିବା ଫଳରେ ଆଦିବାସୀମାନଙ୍କର ସାଂସ୍କୃତିକ ପରମ୍ପରା ଧୀରେ ଧୀରେ ଲୋପ ପାଇବାକୁ ବସିଛି । ସେମାନଙ୍କର ବିଲୁପ୍ତ ପ୍ରାୟ ଏହି ପରମ୍ପରା ସମ୍ପର୍କରେ ତଥ୍ୟ ସଂଗ୍ରହ କରି ଉତ୍ତର ପୁରୁଷମାନଙ୍କ ହସ୍ତରେ ଅର୍ପଣ କରିବା ମଧ୍ୟ ଏ ବିଭାଗର ଅନ୍ୟତମ ଲକ୍ଷ୍ୟ । ତାହାକୁ ଦୃଷ୍ଟିରେ ରଖି ୟୁ.ଜି.ସି. ସହାୟତାରେ ବିଭାଗପକ୍ଷରୁ 'ଦକ୍ଷିଣ ଓଡ଼ିଶାର ଲୋକପରମ୍ପରା ଓ ଆଦିବାସୀ ସଂସ୍କୃତି' ଶୀର୍ଷକ ସ୍ୱତନ୍ତ୍ର ଅନୁଦାନ ପ୍ରକଳ୍ପ ୨୦୧୧ ମସିହାରେ ହାତକୁ ନିଆଯାଇଛି ।

ବିଭାଗ ଆନୁକୂଲ୍ୟରେ 'ଭଞ୍ଜଭାରତୀ' ନାମରେ ଗୋଟିଏ ଗବେଷଣାତ୍ମକ ପତ୍ରିକା ପ୍ରକାଶ ପାଇବାର ବ୍ୟବସ୍ଥା କରାଯାଇଥିଲା । ଏଥିପାଇଁ ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷ ବାର୍ଷିକ ୧୫୦୦୦ଟଙ୍କା ଅନୁଦାନ ବ୍ୟବସ୍ଥା କରି ଆମକୁ ଉତ୍ସାହିତ କରୁଥିଲେ । ଫଳସ୍ୱରୂପ ପ୍ରଥମ ଦୁଇଟି ସଂଖ୍ୟା ଦକ୍ଷିଣ ଓଡ଼ିଶାର ଦୁଇଜଣ ବିଶିଷ୍ଟ ସମାଲୋଚକ ଶ୍ରୀ ଶ୍ୟାମସୁନ୍ଦର ରାଜଗୁରୁ ଓ ଶ୍ରୀ ଗୋପୀନାଥ ନନ୍ଦଶର୍ମାଙ୍କ ବିଶେଷାଙ୍କ ଭାବରେ ପ୍ରକାଶ ପାଇଥିଲା ।

ଶିକ୍ଷକମାନଙ୍କ କର୍ତ୍ତବ୍ୟବୋଧ ଓ ନିରଳସ ଉଦ୍ୟମ, ଛାତ୍ରଛାତ୍ରୀଙ୍କ ଅଧ୍ୟୟନ ଲିପ୍ସା ଓ ଗବେଷଣା ମନୋବୃତ୍ତି ତଥା ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷଙ୍କ ସୁଦୃଷ୍ଟି ଓ ସହଯୋଗ ବଳରେ ଏହି ବିଭାଗ ପରବର୍ତ୍ତୀ କାଳରେ ସମଗ୍ର ଭାରତର ଦୃଷ୍ଟି ଆକର୍ଷଣ କରିବ । ବିଭାଗର ସୁବର୍ଣ୍ଣ ସମ୍ବତ୍ସର ଅବକାଶରେ ସମସ୍ତ ବିଜ୍ଞ ବିଚାରବନ୍ତ ଶିକ୍ଷକ, ଗବେଷକ, ପ୍ରାଜ୍ଞଜନ, ଛାତ୍ରଛାତ୍ରୀ, ପଣ୍ଡିତ, ବୁଦ୍ଧିଜୀବୀ ଏପରିକି ଓଡ଼ିଆ ବିଭାଗକୁ ଆପଣାର ପରି ଭଲ ପାଉଥିବା ସାଧାରଣ ଜନତାଙ୍କ ଠାରୁ ଏପରି ଆଶା ପୋଷଣ କରିବା ଯଥାର୍ଥ ମନେହୁଏ ।

ଜୟ ଭଞ୍ଜବିହାର ।

-୦-

